କପିରାଇଟ : ପ୍ରଗତିବାଦୀ ପବ୍ଲିକେସନ୍ସ

ପ୍ରକାଶକ : ପ୍ରଦ୍ୟୁମ୍ନ ବଳ ମେମୋରିଆଲ୍ ଟ୍ରଷ୍ଟ

୧୩, ଏକାମ୍ର ବିହାର, ନୟାପଲ୍ଲୀ, ଭୁବନେଶ୍ୱର - ୭୫୧୦୧୫

ପ୍ରଥମ ପ୍ରକାଶନ : ନଭେମ୍ବର ୨୦୦୦

ମୁଦ୍ରଣ : ଓରିପ୍ରିଣ୍ଟ ପ୍ରାଇଭେଟ ଲିମିଟେଡ୍

୧୭୮ - ବି, ମଞ୍ଚେଶ୍ୱର ଇଣ୍ଡଷ୍ଟ୍ରିଆଲ୍ ଇଷ୍ଟେଟ୍, ଭୁବନେଶ୍ୱର-୧୦

ମୂଲ୍ୟ : ଟ.୫୦/- (ପଚାଶ ଟଙ୍କା ମାତ୍ର)

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

# ମୁଖବନ୍ଧ

ଅଗଣିତ ଛୋଟବଡ଼ ଘଟଣା, ତିକ୍ତ ମଧୁର ଅନୁଭୂତି ଓ ଅସୁମାରୀ ସମସ୍ୟାକୁ ନେଇ ମଣିଷ ଜୀବନ । ସାଧାରଣ ଭାବରେ ହୁଏତ ମଣିଷ ପାଇଁ ଏ ସବୁର କେବଳ ତାତ୍କାଳୀକ ପ୍ରାଧାନ୍ୟ ବା ଉପାଦେୟତା ରହିଥାଏ । ମୁହୂର୍ତ୍ତଟି ପାର ହୋଇଗଲେ ତା' ସହିତ ଜଡ଼ିତ ଅନୁଭୂତିର ସ୍ମୃତି ବି ଧୂଆଁଳିଆ ହୋଇଯାଏ । କିନ୍ତୁ ଏକ ଅନୁଶାସିତ, ସମ୍ବେଦନଶୀଳ ବ୍ୟକ୍ତିତ୍ୱ ତାତ୍କାଳୀକତାର ପରିଧି ବାହାରେ ଏମିତି ଅନେକ ମୁହୂର୍ତ୍ତକୁ ଧରି ରଖେ, ଅନୁଧ୍ୟାନ କରେ ଏବଂ ଚିନ୍ତା ଓ ଚେତନାର ସ୍ପର୍ଶ ଦେଇ ପରିପ୍ରକାଶ କରେ । 'ଜୀବନ ଚର୍ଯ୍ୟା' ସଂକଳନଟି ଜୀବନ ପ୍ରତି ସର୍ବୋଚ ଭାବରେ ଉନ୍ମୁଖ ସେହିପରି ଏକ ଚିନ୍ତାଧାରାର ଗଭୀର ଅଭିବ୍ୟକ୍ତି ।

ଏହି ସଂକଳନରେ ସନ୍ନିବେଶିତ ପ୍ରତିଟି ଚର୍ଚ୍ଚିତ ବିଷୟ ଆମ ଦୈନନ୍ଦିନ ଜୀବନର କୌଣସି ଏକ ସତ୍ୟ ଉପରେ ଆଧାରିତ । 'ଜନ୍ମ'ଠାରୁ 'ଶୋକ'- 'ଲୁକାଓ୍ୱଟ'ଠାରୁ 'ଗଣେଶ ମ୍ୟାଜିକ' ଯାଏ ବିଷୟର ବସ୍ତୁର ବିବିଧତା ଏବଂ ପ୍ରତିଟି ବିଷୟର ସୂକ୍ଷ୍ମ ପର୍ଯ୍ୟାଲୋଚନା ଲେଖକଙ୍କର ଜୀବନ ପ୍ରତି ସମର୍ପିତ ଆଭିମୁଖ୍ୟକୁ ପ୍ରତିପାଦିତ କରିଛି । ଚିନ୍ତା, ଚେତନା ଓ ବାସ୍ତବତାର ଅପୂର୍ବ ସମନ୍ୱୟରେ ଋଦ୍ଧିମନ୍ତ ଏହି ଜୀବନଧର୍ମୀ ଲେଖା ଗୁଡ଼ିକ, ଭାଷାର ସରଳତା ଏବଂ ପ୍ରକାଶ ଭଙ୍ଗୀର ସ୍ୱଚ୍ଛତା ଓ ସାବଲୀଳତା ଯୋଗୁଁ ପ୍ରତ୍ୟେକ ମନକୁ ସ୍ପର୍ଶ କରିବ ।

- ଦେବଦୀପ୍ତି ଧଳ

# ଶୋକ

ଓଡିଆ ଅଭିଧାନ 'ତରୁଣ ଶବ୍ଦକୋଷ'ରେ 'ଶୋକ'ର ଅର୍ଥ ହେଲା ପ୍ରିୟ ବ୍ୟକ୍ତି ବା ବସ୍ତୁ ପ୍ରଭୃତି ହରାଇବା ଫଳରେ ଜାତ ମାନସିକ ଘୋର ଯନ୍ତ୍ରଣା ବା ଦୁଃଖ । ପ୍ରିୟ ବ୍ୟକ୍ତିଟିର ମୃତ୍ୟୁ ଯେଉଁ ଗଭୀର ଦୁଃଖ ଜନିତ ଯନ୍ତ୍ରଣା ସ୍ୱଭାବତଃ ଆଣିଦିଏ ତାହା ମଣିଷକୁ ଶୋକାତୁର କରେ । କିନ୍ତୁ ଯେଉଁମାନେ ଏହି ଦୁଃଖର ଲାଘବ ପାଇଁ ଲୌକିକ 'ସମବେଦନା' ପ୍ରକାଶ କରନ୍ତି, ତାହା ସେମାନଙ୍କର 'ସାମାଜିକତା' । ସାମାଜିକତାରେ କ'ଣ ଶୋକାତୁର ବ୍ୟକ୍ତି ମନରେ ଭୋଗୁଥିବା ଯନ୍ତ୍ରଣା କିମ୍ବା ଦୁଃଖର କୌଣସି ପ୍ରକୃତ ଅଂଶୀଦାର ପଣିଆ ଥାଏ ? କିନ୍ତୁ ଶୋକାଭିଭୂତ ହୋଇଥିବା ବ୍ୟକ୍ତି କିମ୍ବା ତା'ର ପରିବାର ନିକଟକୁ 'ସମବେଦନା' ଜ୍ଞାପନ କରି ପତ୍ର ଆସେ । ଏହି ପତ୍ରଟିରେ ସମଦୁଃଖୀ ହେବାର ଭାବ (Sentiment) କେବଳ ପ୍ରକାଶିତ ହୋଇଥାଏ ଭାଷା ମାଧ୍ୟମରେ । ଭାଷାର ଗାମ୍ଭୀର୍ଯ୍ୟ କିମ୍ବା ଐଶ୍ୱର୍ଯ୍ୟ ଥାଇପାରେ । କିନ୍ତୁ ଭାଷା କେବେ ଭାବର ସ୍ଥାନ ପୂରଣ କରିନପାରେ । ଭାଷା ଅନ୍ତଃସ୍ଥଳରେ ଅନୁଭବ କରି ହେଉଥିବା ଦୁଃଖ କିମ୍ବା ବେଦନାର ବିକଳ୍ପ (Substitiute) କିମ୍ବା ପରିପୂରକ ହୋଇପାରେନା । ଭାବ ମୌଳିକ । ବିକଳ୍ପଟି କେବେ ମୌଳିକ ନୁହେଁ । ବିକଳ୍ପଟି ମୌଳିକର ଏକ କାମଚଳା ସଂସ୍କରଣ । ଏପରିକି ଗୋଟିଏ ପରିବାରରେ ପ୍ରତ୍ୟେକ ସମାନ ଭାବରେ ଦୁଃଖ ଅନୁଭବ କରନ୍ତି ନାହିଁ । ସ୍ୱାମୀହରା ପତ୍ନୀର ଦୁଃଖର ମାତ୍ରା ପିତୃହରା ସନ୍ତାନଠାରୁ ଯଥେଷ୍ଟ ଅଧିକ ଏବଂ ସେହି କ୍ରମରେ ଦୁଃଖର ମାତ୍ରା କମି କମି ଯାଏ ଓ ପରିବାରର ଶେଷ ସଂପର୍କୀୟ ପାଇଁ ଦୁଃଖର ଭାରା ମଧ୍ୟ ଶେଷ ହୋଇଯାଇ ଦୁଃଖର କିଛିଟା ଛିଟା ମୁହଁରେ ପ୍ରଦର୍ଶିତ ହୁଏ ମାତ୍ର । ତାହା ଶୋକ ନୁହେଁ । ଶୋକର ବିକଳ୍ପ ମଧ୍ୟ ନୁହେଁ । ତାହା ଲୌକିକ ସାମାଜିକ ପ୍ରକାଶ କିମ୍ବା ପ୍ରଦର୍ଶନ । କିନ୍ତୁ ସାମାଜିକତା ରକ୍ଷା ପାଇଁ କାହାର ମୃତ୍ୟୁ ଘଟିଲେ ବନ୍ଧୁବାନ୍ଧବ ନିକଟ ଓ ଦୂର ସଂପର୍କୀୟ ଘରକୁ ଆସନ୍ତି । ସେହି ଆସିବାଟା ଏକ ସାମାଜିକ ଚଳଣି ବିଧି । ଆସିଲେ କିଛିଟା ସାନ୍ତ୍ୱନା ବୋଧହୁଏ ମିଳେ । ନଚେତ ମୃତ୍ୟୁ ପରେ ପ୍ରତ୍ୟାଶିତ ଲୋକମାନେ ସଂଖୋଳିବାକୁ ନ ଆସିଲେ ଲୋକେ ଆପସା କାହିଁକି ମାରନ୍ତି ? ତେଣୁ ପ୍ରକୃତ ଶୋକଠାରୁ ଶୋକ 'ପ୍ରକାଶ'ର ମାତ୍ରା ଓ ପରିଧି ଯଥେଷ୍ଟ ଅଧିକ । ଶୋକ ପ୍ରକାଶର ମାତ୍ରା ପରିଧି ଯେତିକି ଅଧିକ ଆନ୍ତରିକତାର ମାତ୍ରା ଓ ଠୋସ୍ ସେତିକି ମାତ୍ରାରେ କମ୍ ।

ସେଥିପାଇଁ ଶୋକ ପ୍ରକାଶ କରିବାକୁ ଆସିଥିବା ଲୋକେ ଘରକୁ ପଶିବା ପୂର୍ବରୁ ମୁହଁଟା କୃତ୍ରିମ ବିରସ କରି ଗମ୍ଭୀର ହୋଇ ଶୋକାତୁରତାର ଅଭିନୟ କରନ୍ତି । ଘରକୁ ପଶିବା ପୂର୍ବରୁ ଓ ଘରୁ ସଂଖୋଳି ସାରି ବାହାରିଯିବା ପରେ ସେମାନେ ସ୍ୱାଭାବିକ ଭାବରେ ପୁଣି ଗପସପ ଓ ହସାହସି ହୁଅନ୍ତି । ମହିଳାମାନେ

ବିଶେଷକରି ଶୋକପ୍ରକାଶ କରିବାକୁ ଘରୁ ବାହାରିବା ପୂର୍ବରୁ ରଙ୍ଗିନ କିମ୍ବା ଛିଟ ଶାଢୀ ବଦଳି ଧଳା ଶାଢୀ, ହାଲ୍କା ରଙ୍ଗର ଧଡି ଥିବା ଧୋବ ଲୁଗା ବଦଳି କରି ଆସନ୍ତି । କେତେକ ଅଭିନୟମୂଳକ ଆଖିରୁ କେଇ ଟୋପା ଲୁହ ଗଡାଇ ରୁମାଲରେ କିମ୍ବା ଶାଢୀ ପଣତରେ ଆଖି ପୋଛି ପକାନ୍ତି କିମ୍ବା ନାକରୁ ପାଣି ପୋଛନ୍ତି । ଏହି ଶୋକ ମଧ୍ୟ ସାମାଜିକତାର ଏକ ରୂପ । ଯିଏ ମୃତ୍ୟୁରେ ପ୍ରକୃତ ଦୁଃଖୀ ସେ କାଳକ୍ରମେ ସେଥିରୁ ମୁକ୍ତ ହୁଏ ।

'ଶୋକ' ଏହି ଦୃଷ୍ଟିରୁ ଦୁଃଖ ଓ ଯନ୍ତ୍ରଣା ସହିତ ତୁଳନା କରିବାର ନୁହେଁ । ଶୋକ ପ୍ରକାଶ ଓ ଶୋକ 'ପାଳନ' ଏକ ସାଧାରଣ ବିଧି (Formality) । କେହି ନେତା, ନେତୃସ୍ଥାନୀୟ ଅତୀତର (ଉଚ୍ଚ) ପଦବୀଧାରୀ ବ୍ୟକ୍ତି କିମ୍ବା ନେତା ପଦବାଚ୍ୟ ବ୍ୟକ୍ତିର ମୃତ୍ୟୁ ଘଟିଲେ ରାଷ୍ଟ୍ରୀୟ ବିଧି ଅନୁସାରେ ଶୋକପାଳନ ପାଇଁ ଘୋଷଣା ପ୍ରକାଶ ପାଏ । ଏହା ରାଷ୍ଟ୍ରୀୟ ଶୋକ । କେତେଦିନ ଶୋକପାଳନ କରାଯିବ ତାହାର ବିଜ୍ଞପ୍ତି ପ୍ରକାଶ ପାଏ । ଏଥିରେ ଆଦୌ ଆନ୍ତରିକତା ନଥାଏ । ରାଜ୍ୟ ଓ ରାଷ୍ଟ୍ରସ୍ତରରେ ଏହି ଶୋକ ଯନ୍ତ୍ରବତ୍ (Mechanically) ପାଳିତ ହୁଏ । ରାଷ୍ଟ୍ରୀୟ ପତାକା ଅର୍ଦ୍ଧନମିତ ହୁଏ । ରେଡିଓ ଏବଂ ଟେଲିଭିଜନରେ ଶୋକସଂଗୀତ କିମ୍ବା ଶୋକର ବାଦ୍ୟସ୍ୱର ପ୍ରଚାରିତ ହୁଏ । ରାଷ୍ଟ୍ରର ସମ୍ବର୍ଦ୍ଧନା ଓ ଉତ୍ସବ ଆଦି ସେହି ସମୟ ପାଇଁ ବାତିଲ ହୁଏ । ସମଗ୍ର ଦେଶ କମ୍ବା ରାଜ୍ୟ ଶୋକ ପ୍ରକାଶରେ ଆଉଟୁ ପାଉଟୁ ହୁଏ । ଭାରତରେ ଲୋକେ ଦୂରଦର୍ଶନ ଛାଡି ଅନ୍ୟ ଚ୍ୟାନେଲରେ ମନୋରଞ୍ଜନ କରନ୍ତି । ଏପରିକି ଶୋକପାଳନ ସମୟରେ ପ୍ରତିଯୋଗୀ ଟେଲିଭିଜନ ସଂସ୍ଥାମାନେ ଯେପରି ଦର୍ଶକଶ୍ରୋତା ଛଡାଇ ନେଇନଯାଆନ୍ତୁ ସେଥିପାଇଁ ଦୂରଦର୍ଶନ ମଧ୍ୟ ଏହି ରାଷ୍ଟ୍ରୀୟ ଶୋକପାଳନରେ ବ୍ୟତିକ୍ରମ ଘଟାଇବାକୁ ବାଧ୍ୟ ହେଉଛି । ରାଷ୍ଟ୍ରୀୟ ଶୋକ ସମୟରେ ପ୍ରାର୍ଥନା ସଭା, ଚିତାରେ ଶ୍ରଦ୍ଧାଞ୍ଜଳି ଦେବା ଏବଂ ଶୋକବାର୍ତ୍ତା ଆଦି ପ୍ରକାଶ କରିବାର ବିଧି ରହିଛି । ଏଥିରେ ଆନ୍ତରିକତାର ସ୍ପର୍ଶ ନାହିଁ । ୧୯୪୮ରେ ଯେତେବେଳେ ମହାତ୍ମାଗାନ୍ଧୀ ରାଷ୍ଟ୍ରୀୟ ସ୍ୱୟଂ ସେବକର ନାଥୁରାମ ଗଡସେର ଗୁଳିରେ ଅଚାନକ ଟଳି ପଡିଲେ ସମଗ୍ର ଦେଶରେ ଦୁଃଖ ଓ ଯନ୍ତ୍ରଣାର ଆନ୍ତରିକ ରୂପ ମୋର ମନେ ଅଛି । ଗାଁର ବିଧବା ଧାନ କୁଟୁଣୀ ଭୋ ଭୋ ହୋଇ କାନ୍ଦିବାର ଚିତ୍ର ମୋ ମନରେ ଛାପି ହୋଇରହିଛି । ମୋ ବୋଉ ସେ ଦିନ କାନ୍ଦି କାନ୍ଦି ଉପାସ ରହିଛନ୍ତି । ମୁଁ ଜଣେ ଦଶମ ଶ୍ରେଣୀର ଛାତ୍ର ସେତେବେଳେ । ମୋର ଓ ସହପାଠୀ ଛାତ୍ର, ଆମର ଶିକ୍ଷକମାନଙ୍କ ମନରେ ଗଭୀର ଦୁଃଖର ତୀବ୍ରତା ମଧ୍ୟ ଏବେ ଅନୁଭବ କରିପାରୁଛି । ଜବାହରଲାଲ ନେହରୁଙ୍କ ମୃତ୍ୟୁ ବେଳକୁ ଏହି ଦୁଃଖର ମାତ୍ରା ଗାନ୍ଧୀଜୀଙ୍କ ତୁଳନାରେ ଯଥେଷ୍ଟ କମ ଥିଲା । କିନ୍ତୁ ଥିଲା ନିଶ୍ଚୟ । କିନ୍ତୁ ତାପରେ ସେହି ମାତ୍ରା ନାହିଁ । ଇନ୍ଦିରା ଗାନ୍ଧୀଙ୍କ ହତ୍ୟାରେ ଦୁଃଖ ଠାରୁ ବୋଧହୁଏ କ୍ରୋଧର ମାତ୍ରା ଅଧିକ ଥିଲା । କାରଣ ଇନ୍ଦିରା ଗାନ୍ଧୀ ଯେପରି ମୃତ୍ୟୁବରଣ ନକରିଥିଲେ ୧୯୮୪-୮୫ର ନିର୍ବାଚନରେ ଲୋକସଭାରେ ସଂଖ୍ୟାଗରିଷ୍ଠତା ନପାଇବାର ଆଶଙ୍କା ରହିଥିଲା ।

ସବୁଠାରୁ ଅଧିକ ପ୍ରହସନମୂଳକ ପ୍ରବଞ୍ଚନାପୂର୍ଣ୍ଣ ଶୋକବାର୍ତ୍ତା ପ୍ରକାଶରେ । କେହି ନେତୃସ୍ଥାନୀୟ କିମ୍ବା ଜଣାଶୁଣା ଲୋକ ମରିଗଲେ ସମ୍ବାଦପତ୍ରମାନଙ୍କରେ ଶୋକବାର୍ତ୍ତାର ଢେଉ ପହଞ୍ଚେ । ଦେଶର କିମ୍ବା

ରାଜ୍ୟର କିମ୍ବା ଶିକ୍ଷା ଜଗତର ଏକ ଅପୂରଣୀୟ କ୍ଷତି ଘଟିଛି । ଶୋକାଭିଭୂତ ବାର୍ତ୍ତା ପ୍ରେରକମାନେ ବାର୍ତ୍ତାଟି କିପରି ଶୀଘ୍ର ପ୍ରକାଶ ପାଇବ ସେଥିପାଇଁ ସାମ୍ବାଦିକ ଓ ସଂପାଦକମାନଙ୍କୁ ବ୍ୟତିବ୍ୟସ୍ତ କରନ୍ତି । ଶୋକବାର୍ତ୍ତା ଛଳରେ ନିଜର ନାମଟି ସ୍ମୃତିଗର୍ଭରୁ ପୁଣି ଲୋକ ଲୋଚନକୁ ଫେରାଇ ଆଣିବାର ସ୍ୱାର୍ଥ ନିହିତ ଥାଏ । ଅପୂରଣୀୟ କ୍ଷତି ଛଡା ଖଣ୍ଡମଣ୍ଡଳରେ ଶୋକର ଛାୟା ଖେଳିଯାଇଛି ଆଦି କଥା ପ୍ରକାଶ ପାଏ । ଏହା ନିଛକ ଆତ୍ମପ୍ରଚାର । ନଚେତ୍ ଖବରକାଗଜରେ ପୃଷ୍ଠା ପୃଷ୍ଠା ଅଦରକାରୀ ଶୋକବାର୍ତ୍ତାର ପ୍ରକାଶ ପାଇଁ ଆବଶ୍ୟକତା ଓ ବ୍ୟଗ୍ରତା କ'ଣ ପାଇଁ ।

ତା ୧୨।୨।୯୫ରେ 'ପ୍ରଗତିବାଦୀ'ରେ ପ୍ରକାଶିତ



# ପଡୋଶୀ

ପଡୋଶୀ ସାଧାରଣ ଅର୍ଥରେ ପାଖ ଘରେ ରହୁଥିବା ଲୋକ କିମ୍ବା ପରିବାର । ପଡୋଶୀ ବୋଇଲେ ଏକ ଆପେକ୍ଷିକ ସମ୍ପର୍କର ସୂଚନା ଦିଏ । ସମାଜରେ ଏକ ନିକଟ କିମ୍ବା ପାଖାପାଖି ସମ୍ପର୍କର ଏକ ପ୍ରତୀକ । ଏହାକୁ ପ୍ରସାରିତ କଲେ ଗ୍ରାମ, ଜିଲ୍ଲା, ପ୍ରଦେଶ,ଦେଶ ଓ ଆନ୍ତର୍ଜାତିକ ସମ୍ପର୍କ ପର୍ଯ୍ୟନ୍ତ ନିଆଯାଇ ପାରିବ । ପଡୋଶୀ କିମ୍ବା ପଡ଼ିଶାର ଭାବ ହେଲା ଲଗାଲଗି ହୋଇ ରହିବା ଓ ଚଳିବାର ସୁନ୍ଦର ସମ୍ପର୍କ । ପାରସ୍ପରିକତାର ସ୍ତର ଯେତେ ଅଧିକ ସୌହାର୍ଦ୍ଦ୍ୟପୂର୍ଣ୍ଣ, ପଡୋଶୀପଣିଆର ସାର୍ଥକତା ସେତିକି ଗାଢ଼ ।

ପଡୋଶୀପଣିଆ ହେଲା ଦୁଇଟି ହାତର ତାଳି ପରି । ଜଣେ ଭଲ ହୋଇ ଅନ୍ୟ ଜଣ କିମ୍ବା ଅନ୍ୟମାନେ ଭଲ ନହେଲେ ପଡୋଶୀପଣିଆ ଜମେନାହିଁ । ଏପରି ବି ହୋଇପାରେ ଉଭୟ ପଡୋଶୀ ଭଲ ହୃଦୟର । କିନ୍ତୁ ସେମାନଙ୍କ ପିଲାମାନଙ୍କ ମଧ୍ୟରେ ପଡୋଶୀପଣିଆର ଆଦର ନାହିଁ । ତେଣୁ ବାପା ମା'ଙ୍କ ମଧ୍ୟରେ ଭଲ ସମ୍ପର୍କ ଥାଇ ମଧ୍ୟ ପାରିବାରିକ ସ୍ତରରେ ସମ୍ପର୍କ ଗାଢ଼ତର ହୁଏନାହିଁ । ତାହାହେଲେ ଦ୍ୱିତୀୟ ଧାଡ଼ିର ବଂଶଧରମାନଙ୍କ ମଧ୍ୟରେ ପଡୋଶୀର ଘନିଷ୍ଠତା ଜନ୍ମେନାହିଁ । ଏହା ନିଶ୍ଚୟ କ୍ରମେ ଅସ୍ୱାଭାବିକ ଓ ଅସହିଷ୍ଣୁ ଦୃଷ୍ଟିଭଙ୍ଗୀରେ ପରିଣତ ହୋଇଯିବାର ଆଶଙ୍କା ସୃଷ୍ଟିକରେ । ଏ ସମ୍ପର୍କରେ ଯୁବପୀଢ଼ୀ ସଚେତନ ହୋଇପାରନ୍ତି ନାହିଁ ।

ପଡୋଶୀ ସମ୍ପର୍କ ଏକପାଖିଆ ହୋଇନପାରେ । ଯଦି ପଡୋଶୀଙ୍କ ମଧ୍ୟରୁ ଜଣେ କେବଳ ଦେବାକୁ ପ୍ରସ୍ତୁତ ହୁଏ ଏବଂ ଅନ୍ୟ ଜଣକ କିଛି ପ୍ରତିଦାନ ଦେବାକୁ ଇଚ୍ଛା କରେନାହିଁ, ତେବେ ସମ୍ପର୍କରେ ତିକ୍ତତା ନଥାଇ ମଧ୍ୟ ଶୀତଳ କିମ୍ବା ଉଦାସୀନ ଦୃଷ୍ଟିଭଙ୍ଗୀ ଆପଣା ଆପେ ଆସିଯାଏ ସମୟକ୍ରମରେ । ଯିଏ ଦିଏନାହିଁ ଏବଂ ନେଇ ଚାଲୁଥାଏ, ସିଏ ପଡୋଶୀ ସମ୍ପର୍କର ମୂଳ ଉପାଦାନ ସମ୍ପର୍କରେ ସଚେତନ ନୁହେଁ । କିମ୍ବା ସେ ଭାବେ ଯେ, ପାଇବାଟା ତା'ର ପ୍ରାପ୍ୟ, ଦେବାଟା ତାର ଦାୟିତ୍ୱ ନୁହେଁ । ଏହି ସମ୍ପର୍କ କେବେ ସ୍ଥାୟୀ ହୋଇପାରିବ ନାହିଁ । ଯିଏ ନଦେଇ ପାଉଛି ସିଏ ବୋଧେ ନିଜର 'ଉଚ୍ଚ' ଷ୍ଟାଟସ କଥା ଭାବି ତଳ ଷ୍ଟାଟସରେ ଥିବା ପଡୋଶୀକୁ କିଛି ଫେରାଇବାର ଆବଶ୍ୟକତା ଉପଲବ୍ଧି କରୁନାହିଁ । ଏହାଫଳରେ ଦେଇ ଆସୁଥିବା ପଡୋଶୀଟି ଦିନେ ଚୁପ ହୋଇଯିବ କିମ୍ବା ତା' ମନରେ ପଡୋଶୀଟି ପ୍ରତି ଘୃଣା କିମ୍ବା ବିରକ୍ତି ଜାତହେବ । ଏହି ବିରକ୍ତି ସେ ପ୍ରକାଶ କରିବ ନାହିଁ । ଆଉ ଯିଏ ମୋଟେ ନଦେଇ ପାଇଆସୁଥିବ, ପାଇବାଟା ବନ୍ଦ ହୋଇଗଲେ, ତା' ମନରେ ମଧ୍ୟ ପାଇବା ଆଶା ନେଇ ବିରକ୍ତି ଜନ୍ମିବ । ପରସ୍ପରର ଅଜାଣତରେ ସେମାନେ ପ୍ରତିବାଦୀ ହୋଇପଡ଼ିବେ । ଗରମାଗରମି ଝଗଡ଼ା ନହେଲେ ମଧ୍ୟ ମନରେ

ଶୀତଳ ଯୁଦ୍ଧ ଅଙ୍କୁରିବ । ପଡୋଶୀଙ୍କ ମଧ୍ୟରେ ଏହି ଭାବ ଜନ୍ମିବା ଶୁଭ ନୁହେଁ । କାରଣ ସାମାନ୍ୟ ଚାପ ହେଲେ ଉଦ୍ଦେଶ୍ୟ ନଥାଇ ମଧ୍ୟ ସମ୍ପର୍କ ତିକ୍ତ ହେବାକୁ କିମ୍ବା ବିସ୍ଫୋରକ ଅବସ୍ଥାକୁ ହଠାତ୍ ଚାଲିଯିବ ।

ପଡୋଶୀମାନଙ୍କ ମଧ୍ୟରେ ଦିଆନିଆ ସମ୍ପର୍କ ବସ୍ତୁ ସ୍ତରରେ ଯେ ହେବ, ତାହା ନୁହେଁ; କିନ୍ତୁ ଚିଅଣ ବା ଚୂଣ ଦିଆନିଆର ଚଳନି ଘନିଷ୍ଠତାର ସୂଚକ । କେହି ବେମାର ପଡ଼ିଲେ ପଡୋଶୀ ଘରୁ ଦେଖାଶୁଣା କରିବାର କିମ୍ବା ହସ୍ପିଟାଲରେ ଡ୍ୟୁଟି ଦେବାର ସ୍ୱତଃସ୍ଫୂର୍ତ୍ତତା ଘନିଷ୍ଠତାର ପରିଚାୟକ । ପଡୋଶୀ ବିବାହ ବନ୍ଧନ ସୂତ୍ରରେ ବନ୍ଧୁବାନ୍ଧବ ନୁହନ୍ତି । କିନ୍ତୁ ପଡୋଶୀ ନିଜ ପରିବାରର ଉଦାସୀନ ସଭ୍ୟତାରୁ ଅଧିକ ନିଜର ହୋଇପଡ଼େ ଅବସ୍ଥାକ୍ରମେ । ନିଜର ପୁଅ ଯଦି ଘରର କାମ ପାଇଁ ଆଗ୍ରହୀ ନହୁଏ, ଅନେକ ସମୟରେ ପଡୋଶୀ ଘରର ପୁଅକୁ ସହଜରେ ବଜାର ସଉଦାଟି ଆଣିଦେବାକୁ କୁହାଯାଇପାରେ । ଗୋଟିଏ ଘରେ ଯଦି କୌଣସି ପିଠା କିମ୍ବା ତରକାରୀ ରନ୍ଧା ହୋଇଛି, ଯାହାକି ପଡ଼ିଶା ଘରର ବାବୁଙ୍କୁ ଭଲ ଲାଗେ ସେଦିନ ଖାଇବା ସମୟକୁ ଆଦରରେ ପାଖଘରକୁ ଗରମ ଗରମ ପଠାଇବାରେ ଆନନ୍ଦଥାଏ । ପାଇଲା ଘର ସେ ଜିନିଷ ପାଇ ସ୍ୱାଭାବିକ ଆନନ୍ଦ ପାଆନ୍ତି । ତାହାର ପ୍ରତିଦାନରେ ଆଉ କୋଉ ଦିନ ଆର ଘରର ପୁଅକୁ ଭଲ ଲାଗୁଥିବା ଜିନିଷ ଏ ଘରୁ ଯାଏ ।

ଏବେ ପଡୋଶୀପଣିଆ ଘୋର ସଂକଟରେ ସମ୍ମୁଖୀନ । ବନ୍ଧୁବାନ୍ଧବ ହୋଇଥିଲେ ଯଦି ପଡ଼ିଶାରେ ବସବାସ କଲ, ତେବେ ସମ୍ପର୍କ ତିକ୍ତ ହେବାର ଆଶଙ୍କା ଅଧିକ । ପଡ଼ିଶା ଘରେ, ନିଜେ ରହୁଥିବା ସହରରେ କିମ୍ବା ଏକା ସାହିରେ ବନ୍ଧୁବାନ୍ଧିବା ସ୍ପୃହଣୀୟ ନୁହେଁ । ଦୂରର ଲୋକ ପଡୋଶୀରେ ରହି ବନ୍ଧୁତ୍ୱ ବୃଦ୍ଧି କରିବା ବରଂ ଆବଶ୍ୟକ । କାରଣ ବହୁବର୍ଷ ଧରି କିମ୍ବା ବହୁ ପୁରୁଷ ଧରି ଏକାଠି ନିକଟତର ହୋଇ ରହିବା କିମ୍ବା ଚଳିବାର ଯାହା ଆବଶ୍ୟକତା ସେଥିପାଇଁ ପଡୋଶୀ ପଣିଆର ବନ୍ଧୁତା ଅପରିହାର୍ଯ୍ୟ । କିନ୍ତୁ ପଡ଼ିଶାରେ ବନ୍ଧୁବାନ୍ଧିବା ବିଜ୍ଞତା ନୁହେଁ । ବରଂ ସେଥିରୁ ନିଜକୁ ମୁକ୍ତ ରଖିଲେ, ବନ୍ଧୁବାନ୍ଧବ ସମ୍ପର୍କରେ ତିକ୍ତତାର ଆଶଙ୍କାକୁ ଦୂରେଇ ଦିଆଯାଇପାରେ ।

ପଡୋଶୀପଣିଆର ସମ୍ପର୍କ ସହରୀ ଜୀବନରେ ବନ୍ଧୁତ୍ୱପୂର୍ଣ୍ଣ ହେବା ସହଜ । କାରଣ ପାରସ୍ପରିକ ସ୍ୱାର୍ଥର ସଂଘର୍ଷ ହେବାର କାରଣ ନାହିଁ କିମ୍ବା ଅତି ସୀମିତ । ସହରରେ ପଡୋଶୀ ଭଲ ନହେଲେ ଚଳିବାରେ ଅଲଂଘନୀୟ ଅସୁବିଧା ହୋଇନପାରେ । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ପଡୋଶୀ ସମ୍ପର୍କ ଏକ ଉଦାହରଣ । ମୋଟାମୋଟି ଏଠାରେ ପଡୋଶୀ ସାମାଜିକତା ସେତେ ଦୃଢ଼ ନୁହେଁ । ପାଖ ଫ୍ଲାଟରେ କେହି ଶକ୍ତ ବେମାର ହେଲେ ଜାଣିବାକୁ ସୁଯୋଗ ନଥାଏ । କିମ୍ବା ଜାଣିଲା ବେଳକୁ ରୋଗୀ ହସ୍ପିଟାଲରୁ ଫେରିଥାଏ କିମ୍ବା ଉପରକୁ ଚାଲି ଯାଇଥାଏ । ପଡ଼ିଶାରେ କେଉଁମାନେ ରହନ୍ତି, ଜଣେ ଖୋଜିଲା ଲୋକକୁ ସହଜରେ ସେହି ସାହି କିମ୍ବା ମହଲର ଲୋକେ ଚିହ୍ନଟ କରିବା କଷ୍ଟକର । ପୁରୁଣା ସହରରେ ଗୋଟାଏ ସାହିକୁ ଗଲେ ଦେଖିବାକୁ ମିଳିବ ଯେ, ସମସ୍ତେ ସମସ୍ତଙ୍କୁ ଜାଣିଛନ୍ତି କିମ୍ବା ନିଶ୍ଚୟ କେହି ଜଣେ ନୂଆ ଆସି ଭଡ଼ା ନେଉଥିବା ଲୋକଟି ବିଷୟରେ ଖବର ଦେଇପାରିବ । କିନ୍ତୁ ଗ୍ରାମାଞ୍ଚଳରେ ପଡ଼ୋଶୀପଣିଆ ଏବେ ଘୋର ସମସ୍ୟାର ସମ୍ମୁଖୀନ । ଛୋଟିଆ ସ୍ୱାର୍ଥ ହାସଲ ହୋଇପାରିଲାନି କିମ୍ବା ଛୋଟିଆ ସ୍ୱାର୍ଥରେ

ବ୍ୟାଘାତ ଜନ୍ମିଲା । ଶତ୍ରୁତା ଜନ୍ମିବାକୁ ଅଧଘଣ୍ଟାଏ ମଧ୍ୟ ଲାଗୁନାହିଁ । ଗାଁ ମାନଙ୍କରେ ପଡୋଶୀ ପଣିଆର ସୁନ୍ଦର ସମ୍ପର୍କ ତ ନାହିଁ; ବରଂ ତିକ୍ତତାର ଚରମ ଅବସ୍ଥାକୁ ଚାଲିଗଲାଣି ।

ପଡୋଶୀପଣିଆର ଅଭାବ ଏବେ ସାମାଜିକ, ପ୍ରଶାସନିକ ଓ ଅର୍ଥନୈତିକ କ୍ଷେତ୍ରରେ ଘୋର ସଂଘର୍ଷ ସୃଷ୍ଟି କରିଛି । ରାଜ୍ୟ ଓ ରାଜ୍ୟ ମଧରେ ପଡୋଶୀପଣିଆ ଶୋଷଣର ଆଧାର ହୋଇପଡିଛି । ଦେଶର ପଡୋଶୀମାନଙ୍କ ସହିତ ସମ୍ପର୍କ ସମସ୍ତ କୂଟନୈତିକ ବ୍ୟବସ୍ଥା ସତ୍ତ୍ୱେ ସହଜ ଓ ସରଳ ନାହିଁ । ବ୍ୟକ୍ତିଗତ ଓ ପାରିବାରିକ ଜୀବନରେ ପଡ଼ୋଶୀପଣିଆ ଯେଉଁ ପ୍ରଶ୍ନର ସମ୍ମୁଖୀନ ହୋଇଛି, ତାହା କ୍ରମେ ଆନ୍ତର୍ଜାତିକ ସ୍ତରରେ ତିକ୍ତତା ଓ ଛକାପଞ୍ଝାର ମାତ୍ରା ବୃଦ୍ଧି କରିଛି । ତଥାପି ଖୁବ୍ କମ୍ ଲୋକେ ଦୈନନ୍ଦିନ ଜୀବନର ଏହି ଦିଗଟି ସମ୍ପର୍କରେ ସଚେତନ ଅଟନ୍ତି ।

୧୯.୨.୯୫



# ବାର୍ଦ୍ଧକ୍ୟ

ମଣିଷ ଜନ୍ମହେଲା ମୁହୂର୍ତ୍ତରୁ ମୃତ୍ୟୁ ଆଡକୁ ଧାଏଁ । ପ୍ରତି ମିନିଟ୍‌ରେ ତାର ମୋଟ ଜୀବନ ସମୟ ସଂକୁଚିତ ହୋଇଯାଇଥାଏ । କିନ୍ତୁ ସେ ସଂପର୍କରେ ସେ ସଚେତନ ଥାଏନା । ନହେବା ସ୍ୱାଭାବିକ । କାରଣ ହେବା ଓ ମରିବାକୁ କେହି ଭଲ ପାଏନା ।

ଶିଶୁ, କିଶୋର, ଯୁବକ, ପ୍ରୌଢ ଓ ବୃଦ୍ଧ- ଏହି ମଣିଷର କାଳର ଏକ ଗ୍ରାଫ୍ । ଏହି ପାଞ୍ଚଟି ସମୟ ନିଜ ନିଜ ଦୃଷ୍ଟିରୁ ଉପଭୋଗ୍ୟ । ଯୁବକ ଅବସ୍ଥା ଗତ ହୋଇଗଲେ ଶିଶୁକାଳ ସବୁଠାରୁ ଭଲ ବୋଲି ମଣିଷ ଉପଲବ୍ଧି କରିବା ଆରମ୍ଭ କରେ । କିଶୋରକାଳ ମଧ୍ୟ ମନ୍ଦ ନୁହେଁ । ଯଦିଓ ଗୁରୁଜନ ଅଭିଭାବକମାନଙ୍କ ତରଫରୁ ବହୁତ ପ୍ରକାର କଥା ଚାପି ଦିଆଯାଏ । ଯୁବକ ଅବସ୍ଥା ସର୍ବାଧିକ ଉପଭୋଗ୍ୟ । କାରଣ ପରିଣତ ବୟସ ପୂର୍ବରୁ ଏହା ଏକ ଅତ୍ୟନ୍ତ ସକ୍ରିୟ, ଗତିଶୀଳ ଏବଂ ତରଳ ଅବସ୍ଥା । ସମୟଟା ବଡ ଆଶା, ସମ୍ଭାବନା ଓ ଅଭିଳାଷ ବିଳାସ ଭିତରେ କଟେ । ଏଇଟା ପ୍ରେମର ସମୟ । ଏଇଟା ବିବାହର ସମୟ ମଧ୍ୟ । ଅନେକ ସ୍ୱପ୍ନ । ଅନେକ କଳ୍ପନା । ସବୁ ସମ୍ଭବ ବୋଲି ମଣିଷ ମଣୁଥାଏ । ଯୌବନରୁ ପ୍ରୌଢତ୍ୱର ସମୟଟା ଏତେଶୀଘ୍ର ଗଡିଯାଏ । କିନ୍ତୁ ମଣିଷଟା ଏହି ସମୟର ଉପଭୋଗ ବେଶୀ ସାଇତିବାକୁ ନିଜ ଅଜାଣତରେ ଚାହେଁ ।

ପ୍ରଥମ ସନ୍ତାନର ଆସନ୍ନ ଜନ୍ମର ସମୟରୁ ଉଭୟ ପତି ପତ୍ନୀ କ୍ରମେ ପରସ୍ପରକୁ ଅଧିକ ଭଲ ପାଇବା ଭିତରେ କେତେ ସମୟରେ ଜୀବନଟା ଘସରା ଓ ଗତାନୁଗତିକତାର ଏକ ବିରକ୍ତିକର ଅଧ୍ୟାୟ ପରି ବେଳେ ବେଳେ ମନେହୁଏ । ସନ୍ତାନ ପ୍ରତି ବେଶୀ ସମୟ ଓ ନିଘା ଦେଉଥିବାରୁ ପୁରୁଷ ସ୍ତ୍ରୀ ପ୍ରତି କମ୍ ସହାନୁଭୂତିଶୀଳ ହୁଏ । ବେଳେବେଳେ ସନ୍ତାନ ପ୍ରତି ଅଜାଣତରେ ଈର୍ଷା ହୁଏ । ଏହି ଈର୍ଷା ଇଂରାଜୀ ଭାଷାର ଜେଲସିଠାରୁ ଏକଭି ଅଧିକ ବୋଲି କୁହାଯାଇପାରେ ।

ଜୀବନ ପର୍ବରେ ଶୀର୍ଷକୁ ଯାଇ ତଳକୁ ଖସିବା ଆରମ୍ଭ କରେ ୪୦ ରୁ ୪୫ ମଧ୍ୟରେ । ୫୦ ବର୍ଷରେ ପହଞ୍ଚିଲା ବେଳକୁ ଗୁରୁଭାର ଓ ଗୁରୁ ଚିନ୍ତାରେ ମନ ଆନ୍ଦୋଳିତ ହୁଏ । ବାର୍ଦ୍ଧକ୍ୟର ପ୍ରବେଶ ଏକ ବିଚିତ୍ର ଭାବ ଆଣିଦିଏ । ବାର୍ଦ୍ଧକ୍ୟକୁ ହସିହସି ଗ୍ରହଣ କରିନେଇ ଉପଭୋଗ କରିବା ଲୋକ ଯଥେଷ୍ଟ କମ୍ । ସବୁ ଶେଷ ହୋଇଆସୁଛି ବୋଲି ମନ ଆନ୍ଦୋଳିତ ହୁଏ । ସ୍ୱାମୀ ଓ ପତ୍ନୀ ଏହି ସମୟରେ ତର୍କ, ଝଗଡା ଆଦିରେ ନିଜର ସମସ୍ତ ଭଲ ଇଚ୍ଛା ସବୁ ଫସି ଯାଆନ୍ତି । ପରସ୍ପରର ଆବଶ୍ୟକତା ଯଥେଷ୍ଟ ବେଶୀ ଅନୁଭବ କରି ମଧ୍ୟ ନିବିଡତାରେ ଆଞ୍ଚ ଆସେ । ପିଲାମାନେ ନିଜ

ଯୌବନର ପାହାଚରେ ବାପା ମା'ଙ୍କଠାରୁ ଦୂରେଇବା ଆରମ୍ଭ କରିଥାଆନ୍ତି । ପିଲାମାନଙ୍କ ପ୍ରତି ମୃଦୁ ଆକ୍ରୋଶ ଆସେ । ସେମାନେ ଯେ ବାପା ମା'ଙ୍କ ପ୍ରତି ସହାନୁଭୂତିଶୀଳ ନୁହଁନ୍ତି ଏବଂ କେବଳ ନିଜର ଚାହିଦା ପାଇଁ ବାପା ମା'ଙ୍କୁ ସୀମିତ ଭାବରେ ଆଦରି ଥାନ୍ତି ଏମିତି ମନେହୁଏ । କ୍ରମେ ସନ୍ତାନମାନେ ବାଟକାଟି ଚାଲିଯାଆନ୍ତି ବାପା ମା'ଙ୍କୁ ପଛରେ ପକାଇ । ରହିଯାଏ କେବଳ ଗୋଟାଏ ସାମାଜିକ କର୍ତ୍ତବ୍ୟର ବାଧ୍ୟତା । ତାହା ମଧ୍ୟ ଏକାଧିକ ସନ୍ତାନ(ପୁତ୍ର) ଥିଲେ ବାପା ମା' ଅବହେଳିତ ହେବା ଆରମ୍ଭ ହୁଏ । ଝିଅ ସନ୍ତାନ ବରଂ ବାପ ମା'ଙ୍କ ଦୁଃଖରେ ଅଧିକ ଦୁଃଖୀ ହୁଅନ୍ତି । ତାହା ହିଁ ଦୁନିଆର ଗତି, ନିୟମ । ଆଜିର ବାପା ମା' ଯେମିତି ନିଜ ଜୀବନ ଆରମ୍ଭ କରିଥିଲେ ବାପା ମା'ଙ୍କୁ ବାଦ ଦେଇ ତାହା ହିଁ ସେମାନଙ୍କ ପାଇଁ ଆରମ୍ଭ ହୁଏ । ତଥାପି ନିଜର ପୁରୁଣା କଥା ମନେ ପଡେନା ।

୬୦ ବର୍ଷ ଟପିଲେ ପୂରାପୂରି ଏକ ନୂଆ ଜୀବନ ଆରମ୍ଭ ହୁଏ । କେବଳ ପତି ଓ ପତ୍ନୀ ମଧ୍ୟରେ ଏକ ସ୍ୱତନ୍ତ୍ର ଐକାନ୍ତିକତାର ସୂତ୍ରପାତ ହୁଏ । ଏଥିରେ ବାପାଠାରୁ ମା' ସନ୍ତାନମାନଙ୍କର ବେଶୀ ଦରକାର ହୁଅନ୍ତି । କାରଣ ବାପାଙ୍କୁ ସେବା ଦେବାକୁ ପଡେ । ମା'ଙ୍କ ଠାରୁ ପୁଅ, ବୋହୂ କିମ୍ବା ଝିଅ, ଜ୍ୱାଇଁ ସେବା ଚାହାନ୍ତି । ମା'ଟି ଯେତିକି ଅଧିକ ସେବା ଦେଇପାରିବ ତା'ର ସେତିକି ଅଧିକ ଆଦର ଆଉ ଚାହିଦା । କିନ୍ତୁ ଏକଥା ନିଶ୍ଚିତ ସତ୍ୟ(ଅଧିକାଂଶତଃ) ଯେ ପୁଅ ବୋହୂଙ୍କ ଠାରୁ ଝିଅ-ଜ୍ୱାଇଁ ବେଶୀ ଦରଦି ହୁଅନ୍ତି । ଯୁବ ପତି-ପତ୍ନୀ ଯଥାକ୍ରମେ ସେମାନଙ୍କର ଶ୍ୱଶୁରଘରେ (ଓ ବାପଘରେ) ନିଜର ଘରଠାରୁ (ଓ ଶାଶୁଘରେ) ଅଧିକ ଆକର୍ଷଣର ସୂତ୍ର ପାଆନ୍ତି । ଏହା ମଧ୍ୟ ଏକ ଅଲିଖିତ ସାମାଜିକ ନିୟମ ।

୬୦ବର୍ଷ ବୟସ ଏକ ଘାଟି । ଏହି ଘାଟିରୁ ପ୍ରତ୍ୟେକ ଲୋକର ଜୀବନଧାରା ଶେଷ ପର୍ଯ୍ୟନ୍ତ ଏକ ମୋଡ ନିଏ । ଚାକିରି କରୁଥିବା (ବିଶେଷକରି ସରକାରୀ ଚାକିରି) ଲୋକଟିର ଅବ୍ୟାହତି ନେବାର ସମୟ ଆସିଗଲେ ଅନେକ ସମୟରେ ଏକ ବିଚିତ୍ର ନିଷ୍ପ୍ରଭ ଭାବ ଆସିଥାଏ । ଏତେଶୀଘ୍ର ଏକ ନିର୍ଦ୍ଦିଷ୍ଟ ନିରାପତ୍ତାର ଛାଉଣୀରୁ ବାହାରିଯିବାକୁ ପଡିଲା । ଯେଉଁମାନେ ନିଜର ପିଲାମାନଙ୍କୁ ଅଧିକ ଯୋଗ୍ୟ କରିବାକୁ ସମର୍ଥ ହୋଇଥାନ୍ତି, ସେମାନେ ହିଁ ସେତିକି ଅଧିକ ହତାଶା ଭୋଗ କରନ୍ତି । ପିଲା ବହୁତ ଯୋଗ୍ୟ ହେଲେ ବଡ ଥିଲାଘର ଶ୍ୱଶୁରଘର ପାଇଯାଏ । ପ୍ରଥମେ ବାପା ମା'ଙ୍କୁ ଖୁବ୍ ଭଲ ଲାଗେ । କିନ୍ତୁ କ୍ରମେ ପୁଅଟି ଦୂରେଇଯାଏ । କେବଳ ମାନସିକ ସ୍ତରରେ ନୁହେଁ; ଭୌଗୋଳିକ ଦୃଷ୍ଟିରୁ ମଧ୍ୟ । ନିଜ ଘରଠାରୁ ଦେଶର ଦୂର ସ୍ଥାନରେ କର୍ମକ୍ଷେତ୍ର ହୋଇଯାଏ । ଅନେକ ସମୟରେ ବିଦେଶକୁ ମଧ୍ୟ ପୁଅ ଚାଲିଯାଏ । ଅନେକ ଲୋକଙ୍କର ଏକାଧିକ ପୁତ୍ର ସନ୍ତାନ ବହୁତ ଉଚ୍ଚ ଷ୍ଟାଟସ୍‌କୁ ଚାଲିଯାଆନ୍ତି । ନାମ କରନ୍ତି । ଗର୍ବ ହୁଏ । କିନ୍ତୁ ନିଜର ବାର୍ଦ୍ଧକ୍ୟରେ ସେହି ପୁତ୍ର ସନ୍ତାନମାନଙ୍କର ସାନିଧ୍ୟ ଓ ସେବାରୁ ବାପା ମା' ବଂଚିତ ହୋଇଯାଆନ୍ତି । ଏହି ଭୁବନେଶ୍ୱରରେ ବହୁ ଅବସରପ୍ରାପ୍ତ ଉଚ୍ଚ ପଦାଧିକାରୀ ଅଛନ୍ତି । ବଡ ଘର ଅଛି । ପେନସନ, ମୋଟା ଫିକ୍ସଡ ଡିପୋଜିଟ ଅଛି । ଘରଭଡା ମଧ୍ୟ ବେଶ୍ ମିଳୁଛି । କନ୍ତୁ 'ବୁଢୀ'ଟି ନରାନ୍ଧିଲେ ପେଟକୁ କିଛି ପଠାଇବାର ଅବସ୍ଥା ନାହିଁ । 'ଚାକର' ମିଳୁନାହାନ୍ତି କିମ୍ବା ମିଳିଲେ ପୁଅ ପରି, ଝିଅ ପରି କିମ୍ବା ଭଲ ବୋହୂଟି  କ'ଣ ବୁଢାବୁଢୀଙ୍କୁ ଭଲ ରାନ୍ଧି ଖୁଆଇବାକୁ ଭାର୍ଜମାନ

ନୁହନ୍ତି । ବେମାର ପଡିଲେ ଡାକ୍ତର ଡାକିଆଣିବାକୁ କେହି ନାହିଁ । ଯଦି ଅଯୋଗ୍ୟ ପୁଅଟିଏ ଅଛି ତା'ର ଚାକିରି ନାହିଁ । ସେ ବାପର ସଂପତ୍ତି ଦେଖି କିଛି କରିବାକୁ ବିଶେଷ ତତ୍ପର ନୁହେଁ । ଝିଅ ଯଦି ବାହାହୋଇ ପାରିବ ନାହିଁ ତେବେ ବର ଖୋଜିବାକୁ କେହି ନାହିଁ । ଗାଁରେ ଜମିବାଡ଼ି କିଏ ଜବରଦଖଲ କଲାଣି କି ଭାଗଚାଷୀ ଯାହା ପ୍ରାପ୍ୟ ତାହା ଦେଉନାହିଁ । ବାର୍ଦ୍ଧକ୍ୟ ମଣିଷର ଶରୀରକୁ କେବଳ ନୁହେଁ ମନକୁ ମଧ୍ୟ ରୋଗଗ୍ରସ୍ତ କଲାଣି । ବାର୍ଦ୍ଧକ୍ୟ ହିଁ ନିଜେ ଏକ ରୋଗ ।

କିନ୍ତୁ ଏହିସବୁ ଭିତରେ ସବୁଠାରୁ ବଡ ସମସ୍ୟା ହେଲା ସ୍ୱାଧୀନତା । ବାର୍ଦ୍ଧକ୍ୟରେ ବୁଢାବୁଢୀ ଅଧିକ ସ୍ୱାଧୀନ ଜୀବନ ଯାପନ କରିବାକୁ ଚାହାନ୍ତି । ପୁଅ ଝିଅଙ୍କ ପାଖରେ ରହି ପୋଷିହେବାକୁ ପସନ୍ଦ କରନ୍ତି ନାହିଁ । ପୂର୍ବର ସମାଜ ଏବଂ ଏବର ସମାଜ ଭିତରେ ଯାହା ପରିବର୍ତ୍ତନ ଘଟିଛି ସେଥିରେ ପୁଅ ବୋହୂ ଆସି ଯଥାସମୟରେ ପହଞ୍ଚି ସେବା କରିବେ ସେ ଆଶା ନାହିଁ । କିଛି ଟଙ୍କା ପଠାଇ ପାରନ୍ତି । ବିଦେଶରେ ଥିଲେ ଅଳ୍ପ ଡଲାର ବହୁତ ଟଙ୍କାରେ ପରିଣତ ହେବ । ତଥାପି ତାହା ତ ବ୍ୟକ୍ତିଗତ ଉପସ୍ଥିତି ସହିତ ସମାନ ହେବନାହିଁ । ପିଲାମାନେ ଚାହାନ୍ତି ବାପ ମା' ଆସି ତାଙ୍କ ପାଖରେ ରହନ୍ତୁ । ବାପା ମା', ପୁଅ ବୋହୂ ପାଖରେ ରହି ପରାଧୀନ ଜୀବନ ଯାପନ କରିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । କାରଣ କାଲି ଯେ କର୍ତ୍ତା ଥିଲା ଆଜି ସେ ଅନ୍ୟର ନିର୍ଦ୍ଦେଶ ଅନୁସାରେ ଚଳିବ ଏକଥା ସହିବା କଷ୍ଟକର ହୁଏ । ନିହାତି ଜୀବନ ରକ୍ଷା ପାଇଁ ବାଧ୍ୟ ହୋଇ ପୁଅ ପାଖକୁ ବେଳେ ବେଳେ ଯିବାକୁ ପଡେ । କିନ୍ତୁ ସ୍ଥାୟୀ ଭାବରେ ଗଣ୍ଡିଏ ଖାଇପିଇ(ଯେତେ ଭଲ ଖାଇବା ଓ ହେପାଜତ ହେଲେ ମଧ୍ୟ) ଏକ ନିଃସଙ୍ଗ ଜୀବନ ପାଇଁ ମନ ବଳେନାହିଁ । ପୁଣି ଆଜିକାଲିର ନାତି ନାତୁଣୀଙ୍କ ସହିତ ସଂପର୍କ ସ୍ଥାପନ କେତେ କଷ୍ଟକର ବ୍ୟାପାର । ବୁଢାବୁଢୀଙ୍କ ଭିତରେ ଜଣେ ଆଗେ ଚାଲିଗଲେ(ତାହା ତ ଅବଶ୍ୟମ୍ଭାବୀ) ଅନ୍ୟ ଜଣକ ଜୀବନର ଶେଷ ପର୍ଯ୍ୟନ୍ତ ମୃତ୍ୟୁ ଅପେକ୍ଷାରେ ଏକ ଅତି ଦୟନୀୟ ଜୀବନ ଯାପନ କରେ । ଏଥିରୁ ଅବଶ୍ୟ କେତେକ ନିଜକୁ ଉର୍ଦ୍ଧ୍ୱକୁ ନେଇପାରନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା କେତେ ?

ତା୨୬।୨।୯୫

❑❑❑

# ମାଗଣା

ଆମ ଦେଶରେ ମାଗଣା ପାଇବାର, ମାଗଣା ପିଇବାର, ମାଗଣା ଯାତାୟାତ କରିବା ଆଉ ଯାହା କିଛି ଆବଶ୍ୟକ ମାଗଣା ମିଳିବା ପାଇଁ ସମସ୍ତେ ଇଚ୍ଛୁକ ଓ ଆଗ୍ରହୀ । ସମସ୍ତେ ଯଦି ଆକ୍ଷରିକ ଅର୍ଥରେ ନହୁଏ ତେବେ ଅଧିକାଂଶଙ୍କୁ ବୁଝାଯାଇପାରେ । ମାଗଣା ଯୌନଭୋଗ ପାଇଁ ମଧ୍ୟ କେତେକ ଆଶାୟୀ ।

ଆପଣ ଯଦି କହିବେ ଯେ ଆମ ଦେଶରେ ଗରିବ ଲୋକଙ୍କର ଏହି ଚାହିଦା ରହିବା ସ୍ୱାଭାବିକ ତେବେ ମୁଁ ଏକମତ ହୋଇପାରେ । କିନ୍ତୁ ପ୍ରକୃତରେ ଗରିବ ଲୋକ କିଛି ଦେଇ କିଛି ପାଇବାକୁ ଚାହାନ୍ତି । ଗରିବ ଲୋକଟିକୁ ଆପଣ କିଛି କାମ ଦେଲେ ସେ ତାହା କରିଦେବ ଏବଂ ଆପଣଙ୍କ ଠାରୁ କିଛି 'ମାଗଣା' ନେବ ବା ଆଶା କରିବ । କିନ୍ତୁ ସେଇଟା ତ ମାଗଣା ହେଲାନି । ସେ ଶ୍ରମ ଦେଲା; ହୁଏତ ଯେଉଁ ଶ୍ରମ ଆପଣ ନିଜେ କରିପାରିନଥାନ୍ତେ । ମୂଲ ଦେଇ କରାଇଥିଲେ ବହୁତ ଅଧିକ ମଜୁରି ଦେବାକୁ ପଡିଥାନ୍ତା । ଏ କ୍ଷେତ୍ରରେ ଆପଣ ବରଂ କିଛି ମାଗଣା ପାଇଲେ ।

ମୁଁ ବଡଲୋକ ଅର୍ଥାତ ପ୍ରଭାବଶାଳୀ, କ୍ଷମତାଶାଳୀ ଓ ଧନୀ ଲୋକଙ୍କ କଥା କହୁଛି । ମୋ ନିଜ ଅଙ୍ଗଭୋଗ । କଥା ହେଲା ଅନେକ ଲୋକ ଆମ ଦୈନିକଟି 'ମାଗଣା' 'ପଢିବାକୁ' ଚାହାନ୍ତି । ସେମାନଙ୍କର ଅସୁବିଧା ହେଲା ସେମାନେ 'ପ୍ରଗତିବାଦୀ' ପଢିବାକୁ ପାଉନାହାନ୍ତି । ସେମାନେ ପଇସା ଦେବାକୁ ପ୍ରସ୍ତୁତ ହେଲେ, ହକରକୁ କହିଲେ ସେ ଆଣିଦେବ । ଏଇମାନଙ୍କର କମ୍ପ୍ଲିମେଣ୍ଟାରୀ କିମ୍ବା ସୌଜନ୍ୟ କପି ଦରକାର । ଜଣାଗଲା କିଏ ପ୍ରଗତିବାଦୀ ପାଇଁ କିଛି ବିଜ୍ଞାପନ କରାଇ ଦେଉଛନ୍ତି ତାଙ୍କୁ ତ ଆମେ କମିଶନ ଦେଉନାହୁଁ ସୌଜନ୍ୟ କପି ଦେଇଦେବୁ । କିନ୍ତୁ ଯେଉଁମାନେ ପ୍ରଗତିବାଦୀକୁ କୌଣସି ସୌଜନ୍ୟ ଦେଉନାହାନ୍ତି, ସେମାନଙ୍କର ମଧ୍ୟ ମାଗଣା ପଢିବାର କି ପାଇବାରେ ଆଶା ରହୁଛି । ଏ କଥା ସତ୍ୟ ଯେ ଏହି ମାଗଣା ପାଇବାର ପ୍ରବୃତ୍ତି ଯୋଗୁଁ ଓଡିଆ ସମ୍ବାଦପତ୍ର ଓ ପତ୍ରିକା ପ୍ରସାର ବଢେ ନାହିଁ । ଓଡିଆ ବହି ମଧ୍ୟ ବିକ୍ରି ହୁଏ ନାହିଁ । ଅଥଚ ଏହି ସୌଜନ୍ୟ କପି ଆଶା କରୁଥିବା ଲୋକେ ଧନୀ । ସେମାନେ ଇଂରାଜୀ ଓ ବଙ୍ଗଳା ଦୈନିକ, ସାପ୍ତାହିକ, ପାକ୍ଷିକ ଓ ମାସିକ ପତ୍ରିକା ଯଥେଷ୍ଟ ଅଧିକ ପଇସା ଖର୍ଚ୍ଚ କରି କିଣନ୍ତି ।

ଏବେ ଆପଣ ବହୁତ ବିଜ୍ଞାପନ ପତ୍ରପତ୍ରିକାରେ ଓ ଟେଲିଭିଜନରେ ଦେଖିବାକୁ ପାଉଛନ୍ତି । ସେଥିରେ ଦେଖିବେ ଅମୁକ ଜିନିଷରେ ଏତେ ଛୁଟ୍, ଅର୍ଥାତ୍ ଦର କମିଲା; ତେଣୁ ଏତେ ପରିମାଣ, ଆପଣ 'ମାଗଣା' ପାଇବେ । କିମ୍ବା ଅମୁକ ଜିନିଷ ସହିତ ସମୁକ ଜିନିଷଟି ମାଗଣା କିମ୍ବା ଗୋଟାଏ ମୁହଁଇଗା

ପାଉଡର ଡବାର ଇମ୍ୟାଟା ଟିକେ ବଡ ହୋଇ ଲେଖାଯାଇଛି ୧୦ ପରସେଣ୍ଟ ମାଗଣା । ଦର ବଢାଇ ଦେଇ ରିବେଟ୍ ଦେବା ଛଳରେ ଖାଉଟିକୁ 'ମାଗଣା' ପାଇବାର ପ୍ରଲୋଭନ ଦେଖାଇବା ସହିତ ଠକିବା ମଧ ସେତିକି ସତ୍ୟ । ଆମେ 'ମାଗଣା' ପାଇଁ ଅଧିକ ପଇସା ଖର୍ଚ୍ଚ କରି ଠକିହେବା ପାଇଁ ବେଶ ଆଗ୍ରହୀ । ଟୁଥ୍‌ପେଷ୍ଟଗୁଡିକ ତଳଆଡୁ ଇଞ୍ଚେ କି ଦେଢଇଞ୍ଚ ପର୍ଯ୍ୟନ୍ତ ଚିପି ଚିପି ଆସିଲେ ବି ମୁହଁ ପଟେ ପେଷ୍ଟ ବାହାରିବାକୁ ନାରାଜ । ଏପରି ପ୍ୟାକିଂ କରାଯାଉଛି ଯେ ପେଷ୍ଟଟା ପେଟୁଆ ହୋଇ ଦେଖାଯାଉଛି । ଚିପିଲା ବେଳକୁ ସେଥିରେ ବହୁତ ଫାଙ୍କା ରହିଛି । ଉପରେ କିନ୍ତୁ ଷ୍ଟିକର ମରାଯାଇଛି ଏତେ ଗ୍ରାମ । ମାଲ ଅଛି ୨୦% କି ୨୫% କମ୍ । ତା ସହିତ ବି ଛୋଟ ଷ୍ଟେନ୍‌ଲେସ୍ ଷ୍ଟିଲ ଗିନାଟାଏ କିମ୍ବା ପ୍ଲାଷ୍ଟିକ୍ ପକେଟ୍ ପାନିଆଟାଏ 'ମାଗଣା' ମିଳୁଛି । ତାହା ବି ଅନେକ ସମୟରେ ଦୋକାନୀ ଫାଙ୍କିଦିଅନ୍ତି । କହନ୍ତି; ଆଜ୍ଞା ସେ 'ମାଗଣା' ଷ୍ଟକ୍ ଯାହା ଆସିଥିଲା ସରିଗଲାଣି ।

ମାଗଣା ଯୌନ; ଅଫିସର କି ମନ୍ତ୍ରୀ, ଯାହାଙ୍କର ଯୌନ ପିପାସା କେବଳ ପତ୍ନୀଙ୍କ ପାଖରେ ମେଣ୍ଟୁନି । ତାଙ୍କର ଏହି ଦୁର୍ବଳତାଟା ଯେଉଁ ବିଜିନେସ୍‌ମ୍ୟାନ ଜାଣିଲେ ସେ ଏହି ପ୍ରକାର ପଦାଧିକାରୀଙ୍କ ଠାରୁ କାମ ଆଦାୟ କରିବାକୁ କମ୍ପାନୀ ଗେଷ୍ଟ ହାଉସରେ ହେଉ କି ସହରର ବଡ ହୋଟେଲରେ ହେଉ ତାଙ୍କୁ 'ମାଗଣା' ଯୌନଭୋଗ ଯୋଗାଇଲେ । 'ମାଗଣା' ଯୌନଭୋଗ ପାଇଲା ପରେ ସେ ଅଧିକାରୀ ଆଉ ଯାଆନ୍ତି କୁଆଡେ । ସେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ମନ୍ତ୍ରୀ ହୁଅନ୍ତୁ, କି ଉଚ୍ଚ ନ୍ୟାୟାଳୟର ନ୍ୟାୟପତି ହୁଅନ୍ତୁ କି ବିଭାଗୀୟ ସଚିବ କି ଡାଇରେକ୍ଟର ହୁଅନ୍ତୁ ଏ ଦ୍ରବ୍ୟଟି ମାଗଣା ପାଇଲେ ସେମାନଙ୍କୁ ବହୁତ କିଛି ଫେରସ୍ତ ଦେବାକୁ ହୁଏ । କେତେକ ଜୀବନସାରା ବ୍ଲାକମେଲର ଶିକାର ହୁଅନ୍ତି ।

କେତେବର୍ଷ ତଳେ ମୁଁ ଥରେ ଦିଲ୍ଲୀରୁ ଭୁବନେଶ୍ୱର ଆସୁଥିଲି ବିମାନଯାତ୍ରାରେ । ପାଲାମ ବିମାନ ବନ୍ଦରରେ ଜଣେ ଚିହ୍ନା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅର ଦେଖାଦେଲେ । ତାଙ୍କ ହାତରେ ତିନି ଚାରିଟା ଓଜନିଆ ପ୍ଲାଷ୍ଟିକ୍ ଥଳି । ଓଜନିଆ ବୋଲି କାହିଁକି ଜାଣିଲି କି ଭଦ୍ରଲୋକ ସେଗୁଡିକ ବୋହିଲାବେଳକୁ ନଇଁ ପଡୁଥା'ନ୍ତି । ପଚାରିଲି- କ'ଣ ଏ ସବୁ ? ସେ କହିଲେ- ଆଜ୍ଞା, ଗ୍ରିନ୍ ପି'ଜ୍ । ଅର୍ଥାତ୍ କଞ୍ଚା ମଟର ମଞ୍ଜି । ଆଉ କ'ଣସବୁ ଅଛି ? କିଛି ଡ୍ରାଇ ଫ୍ରୁଟ । ଦାମିକା ଡ୍ରାଇ ଫ୍ରୁଟ୍ । ବାଦମ, ପିସ୍ତା, ଅଖରୋଟ୍, କାଜୁ, କିସ୍‌ମିସ୍ ଇତ୍ୟାଦି । ସେ ଆଙ୍ଗୁଠି ଦେଖାଇ ଆଉ ଜଣକୁ ଦେଖାଇଲେ । କହିଲେ: ସେ ଆମ ଚିଫ୍ ଇଞ୍ଜିନିଅର । ତାଙ୍କ ହାତରେ ଦେଖୁନାହାନ୍ତି କେତେଟା ବ୍ୟାଗ୍ । ପଚାରିଲି- କ'ଣ ସେ ସବୁ ? କହିଲେ: ଏମିତି ଆଜ୍ଞା କେତେ ବରାଦ । କାହାର ବରାଦ ? ସେକ୍ରେଟାରୀ, ଜଏଣ୍ଟ ସେକ୍ରେଟାରୀ, ସେକ୍‌ସନ ଅଫିସର ପର୍ଯ୍ୟନ୍ତ ।

ବିମାନରେ ଇଞ୍ଜିନିଅର ଭଦ୍ରଲୋକଙ୍କ ସିଟ୍ ମୋ ପାଖରେ ପଡିଥିଲା । ଯାତ୍ରାପଥରେ ଯାହା ବୁଝିଲି ତାଙ୍କ ବିଭାଗୀୟ ସେକ୍ରେଟାରୀଙ୍କ ଛଡା ଅନ୍ୟ ବିଭାଗର ସେକ୍ରେଟାରୀ, ଡେପୁଟି ସେକ୍ରେଟାରୀ, ଜଏଣ୍ଟ ସେକ୍ରେଟାରୀ, ସେକ୍‌ସନ ଅଫିସର ଓ ବିଭାଗୀୟ ସିନିଅର ଆସିଷ୍ଟାଣ୍ଟଙ୍କର ବରାଦ ସବୁ ଅଛି । କେତେ ପ୍ରକାର ଜିନିଷର । ପିଲା ପାଇଁ ଖେଳନା ଓ ପତ୍ନୀଙ୍କ ପାଇଁ ପ୍ରେସର କୁକର ପର୍ଯ୍ୟନ୍ତ । ପରିବା ମଧ୍ୟରେ

କାପ୍ସିକମ୍, ଗାଜର ଓ ସିଡଲେସ ଅଙ୍ଗୁର ଇତ୍ୟାଦି । ଏ ଇଞ୍ଜିନିଅରମାନେ ନିୟମିତ ଦିଲ୍ଲୀ ଗଲାବେଳେ ଏମିତି ବରାଦ ନିଅନ୍ତି । ପଚାରିଲି- କାହିଁକି ଆପଣମାନେ ଏତେ ପଇସା ଖର୍ଚ୍ଚ କରି ଏମାନଙ୍କୁ ତୁଷ୍ଟ କରୁଛନ୍ତି ? ଏତେ ପଇସା ଆଣୁଛନ୍ତି କେଉଁଠୁ ? କିଛି ଏମାନେ ଦିଲ୍ଲୀର ସପ୍ଲାୟରମାନଙ୍କ ଉପରେ ପକାଇ ଦିଅନ୍ତି । କିଛି ନିଜେ ଖର୍ଚ୍ଚ କରି କିଣିଆଣନ୍ତି । ଇଞ୍ଜିନିଅରମାନଙ୍କର କହିବାର କଥା ହେଲା: ଆଜ୍ଞା, ସେମାନଙ୍କ ଅଧୀନରେ ଚାକିରି କରିଛୁ । ପୋଷ୍ଟିଂ, ପ୍ରମୋଶନ, ବଦଳି ସବୁ ତ ସେଇମାନଙ୍କ ହାତରେ । ଏପରିକି ସିନିଅର ଆସିଷ୍ଟାଣ୍ଟ ବି ଫାଇଲରେ ବଙ୍କା କରି ଲେଖିଦେବ । ତେଣୁ ଏ ସବୁ 'ମାଗଣା' ଭରଣା କରିବାକୁ ହେବ । ଏହାର ଯଦି ଆପଣ ପ୍ରସାରଣ କରିବେ ତେବେ ଦେଖିବେ ପ୍ରତି ବିଭାଗରେ କେତେକ ସ୍ତରରେ କେତେ ଅର୍ଥ ଏହି 'ମାଗଣା' ବ୍ୟବସ୍ଥାରେ ଖର୍ଚ୍ଚ ହେଉଛି ।

କହିଲେ ରାତି ପାହିଯିବ । ଶେଷରେ ସାମ୍ବାଦିକ ସମ୍ପ୍ରଦାୟ କଥା । ସାମ୍ବାଦିକ ମାନଙ୍କର(ସମସ୍ତେ ନୁହନ୍ତି, ଅଧିକାଂଶ) ଅନେକ ଜିନିଷ ମାଗଣା ଦରକାର । କେତେକ ତାକୁ ନିୟମିତ ମାଗଣା ମିଳେ । ଗାଡି (ନିଜର ଘରୋଇ ବ୍ୟବହାର ପାଇଁ), ଘର କରିବା ପାଇଁ ବିଭିନ୍ନ ସାମଗ୍ରୀ ଓ ବିଶେଷ କରି 'ଖାଇବା' ଓ 'ପିଇବା'ଟା ବେଶ 'ମାଗଣା' ମିଳେ । ଏହା ଯେମିତି କି ସେମାନଙ୍କର ଜନ୍ମଗତ କି ବୃତ୍ତିଗତ କି ସାମ୍ବିଧାନିକ ଅଧିକାର । ଖାଇବା ସହିତ 'ପିଇବା' ନଥିଲେ କେତେକ ସାମ୍ବାଦିକ ସେ 'ମାଗଣା' କାମରେ ଯୋଗ ଦେବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ସରକାରଙ୍କ ସଙ୍ଗଠନମାନେ ମଧ ଅନ୍ୟ ଖର୍ଚ୍ଚ ଦେଖାଇ ସେମାନଙ୍କୁ 'ପିଇବା' ଯୋଗେଇ ଦିଅନ୍ତି । ପିଇସାରି ସେମାନେ ବାନ୍ତି କରିପାରନ୍ତି କିମ୍ବା ସ୍କୁଟରରୁ ଗଳିପଡି ରାସ୍ତାକଡରେ ରାତି ଅଧରେ ପଡିପାରନ୍ତି; କିନ୍ତୁ ମାଗଣା 'ପାନୀୟ'ର ଅନ୍ୟ କୌଣସି ସବ୍‌ଷ୍ଟିଚ୍ୟୁଟ ନାହିଁ । ଏବେ ଭାରତର ବୈଦେଶିକ ବ୍ୟାପାର ଖର୍ଚ୍ଚ ସମ୍ପର୍କରେ ଏକ ସମ୍ବାଦ ପ୍ରକାଶ ପାଇଛି । କୂଟନୀତିଜ୍ଞମାନଙ୍କୁ ପ୍ରତି ଭୋଜିରେ ମୁଣ୍ଡପିଛା ୨୪ ପେଗ୍ ଲେଖାଏଁ 'ପାନୀୟ' ଦିଆଯିବା କଥା ସେ ମନ୍ତ୍ରଣାଳୟର ବ୍ୟୟହିସାବ କହିପାରିବେ । ଏସବୁ 'ମାଗଣା' ଦେବାରେ ଖର୍ଚ୍ଚ ହୁଏ । କମ୍ପାନୀମାନେ 'ମାଗଣା' ଖିଆଇବା ଓ ପିଆଇବାରେ ଯାହା ଖର୍ଚ୍ଚ କରନ୍ତି ତାହାର ହିସାବ ଅନୁଶୀଳନ କଲେ ତାହା ବର୍ଷକୁ କେତେ ହଜାର କୋଟି ଟଙ୍କା ହେବ । ସମଗ୍ର ଭାରତ ବର୍ଷରେ କେବଳ ସାମ୍ବାଦିକମାନେ ଯେତିକି 'ମାଗଣା' ଖାଉଛନ୍ତି ଓ ପିଉଛନ୍ତି ତାହାର ମୂଲ୍ୟ କେତେ ଶହ କୋଟି ହୋଇପାରେ । ମାଗଣାରେ କେତେ ଝଲକ ଅଛି । ଆଜି ଏତିକିରେ ।

ତା୨।୪।୯୫

❑❑❑

# କାମ

କାମ । କାମ ନକଲେ ପେଟପୋଷା ସମ୍ଭବ ନୁହେଁ । ବସି ଖାଇଲେ ନଈବାଲି ଶେଷ । କାମରେ ପୁଣି ଅକାମ ବି ଅଛି । କିନ୍ତୁ ଆମେ ଯାହାକୁ ଅକାମ କହୁ ଏବେ ସେହିଗୁଡ଼ାକ ହିଁ କାମ । ଅସଲ କାମ । କାମ ଯାହା କାମନା ସେଇଆ । କାମନା ରହିତ କାମ କିଛି ନାହିଁ ବୋଧହୁଏ ଆଜିର ଜଗତରେ । ସେଥିପାଇଁ କାମନା ରହିତ କାମ ଯେଉଁମାନେ କରୁଥାନ୍ତି ସେମାନେ ଅଗାଡ଼ି ଚଷୁଥାନ୍ତି । ଏହି ପ୍ରକାର ଲୋକଙ୍କୁ ଏବେ କାମ କରୁଥିବା ଲୋକେ ନାପସନ୍ଦ କରନ୍ତି । କହନ୍ତି ତା' ଦ୍ୱାରା ଶାଗ ସିଝିବନି । କୁଟା ଖଣ୍ଡକ ଦି'ଖଣ୍ଡ ହେବନି । ତେଣୁ ଆଜିକାଲି ଯେଉଁମାନେ କାମ କରୁଛନ୍ତି ସେମାନେ ପାରଙ୍ଗମ ବୋଲି କୁହାଯିବ ।

ଏହି ପାରଙ୍ଗମ ଲୋକମାନେ ଆମେ ଯାହାକୁ ଅକାମ କହି ସେଥିରୁ ଦୂରରେ ରହୁଛୁ ସେହିଗୁଡ଼ାକୁ କାମରେ ପରିଣତ କରିପକାଇଛନ୍ତି । ସେମାନେ ଏଗୁଡ଼ାକ ଅକାମ ବୋଲି ଆଦୌ ଭାବୁନାହାନ୍ତି । ସେମାନଙ୍କ ପାଇଁ ଏହା ହିଁ ଆଜିର କାମ । ତାହା ନକଲେ ସେ କାମିକା ଲୋକ ବୋଲି ପ୍ରମାଣିତ ହୋଇପାରିବେନି । ଭଗବାନ କ'ଣ ସମସ୍ତଙ୍କୁ କାମ କରିବାର ଏହି ସରଞ୍ଜାମ ଦେଇଛନ୍ତି ? ଭଗବାନ କ'ଣ ସମସ୍ତଙ୍କୁ କାମ କରିବାର କଳା ଦେଇଛନ୍ତି ? ଆଜିର ଦୁନିଆରେ କାମ କରିବାର କ୍ଷମତା କେତେଜଣଙ୍କ ପାଖରେ ଅଛି ? ଯାହା ହାତରେ କ୍ଷମତା ଅଛି ତାହା ହାତରେ କାମ ଅଛି । ଅକାମୀ ଲୋକଙ୍କ ହାତରେ କ'ଣ କ୍ଷମତା ଦିଆଯାଏ ?

କାମ କରିବା ଲୋକଙ୍କ ପାଖକୁ ପହୁଁଚ ତ ସମସ୍ତଙ୍କର ନାହିଁ । ତେଣୁ କାମଟିଏ କରାଇବା ପାଇଁ ଲୋକଙ୍କର ପହୁଁଚ ଥିବା ଲୋକଙ୍କ ପାଖକୁ ପହୁଁଚ ଥିବା ଦରକାର । ଯେଉଁମାନଙ୍କ ହାତରେ କିଛି କ୍ଷମତା ନାହିଁ ସେମାନେ ହୁଏତ କ୍ଷମତାଧରଙ୍କୁ ଚିହ୍ନିଥିବେ । ତେଣୁ କାମଟିଏ କରାଇବା ପାଇଁ ସେମାନେ ପାହାଚ ହେବେ । ସିଡି ହେବେ । ଯେଉଁମାନେ ସିଡି ହେବେ ସେମାନେ ହୁଏତ ନିଜ ପାଇଁ କିଛି କାମ ନ କରାଇ ପାରନ୍ତି । କିନ୍ତୁ ଯେଉଁମାନେ କାମ କରାଇବାକୁ ଆସିବେ ତାଙ୍କ କାମ ତ କରାଇବାକୁ ପଡ଼ିବ ।

''ଦିନେ ନାହିଁ, କାଲେ ନାହିଁ ଗହ୍ମାପୁନିଅକୁ ମାଇଁ ମାଇଁ'' ଢାଞ୍ଚାରେ ହଠାତ୍ ଦିନେ ଦେଖିବେ ଜଣେ ଭଦ୍ରଲୋକ ଆସି ପହଞ୍ଚିବେ ଆପଣଙ୍କର ଜଣେ ଚିହ୍ନା ଲୋକଙ୍କୁ ନେଇ । କିମ୍ବା ଆପଣଙ୍କର ନିକଟତର ହୁଅନ୍ତୁ ବା ଲେଖାଯୋଖା ହିସାବରେ ମାମୁ କି ମାଉସୀ କି ଶଳା କି ଖୁଡୁତାଶୁର ହୋଇଥିବେ ତାଙ୍କ ସାଙ୍ଗରେ ଆସିଥିବେ । ହାତରେ ଗୋଟିଏ ମିଠା ପ୍ୟାକେଟ ରଙ୍ଗିନ ପ୍ଲାଷ୍ଟିକ ଜରିବ୍ୟାଗ ଭିତରୁ ଚିହ୍ନି ହେଉଥିବ । ସେମାନେ ମୁରୁକୁନ୍ଦି ହସ ମାରୁଥିବେ । ଶେଷରେ ନିଜର ଚିହ୍ନା ଦେବେ । ଯିଏ ଆଣିଥିବେ

ସାଙ୍ଗରେ ସିଏ କୃତକୃତ୍ୟ ହେଲାଭଳି ହସ ହସୁଥିବେ । ଲାଜରା ଲାଜରା ହୋଇ ମିଠା ପ୍ୟାକେଟଟି ଟେବୁଲ ଉପରେ ଥୋଇବେ । ଏଇଥିରୁ ଆପଣ ବୁଝିନେବା ଉଚିତ ଯେ ଏହା ପରେ ବିପଦ ଆସୁଛି । ଆପଣ ଯଦି କାମିକା ଲୋକ ହୋଇଥିବେ ତେବେ ତ ଅତି ଉତ୍ତମ ।

କିଛି ସମୟ ଏଣୁତେଣୁ ବାଆଁରା କଥାଗୁଡ଼ା ଚାଲିବ । ତା'ପରେ ଅବତରଣ କରିବ କାମ କଥାଟା । ସେ କାମ ଭିତରେ କେତେ ପ୍ରକାର କାମ ଥାଇପାରେ । କିଛିଟା ଝଲକ ଦେଉଛି । ବଦଳି ହୋଇଯାଇଛି ଅମୁକ ଜାଗାକୁ । ସେଇଟା ବନ୍ଦ ହେବା ଦରକାର । ନଚେତ୍ ସମୁକ ଜାଗାକୁ ବଦଳି ହେଲେ ଚଳିବ । ଯେଉଁଠି ଥିଲେ ଅର୍ଥାତ୍ ଯେଉଁ ଜିଲ୍ଲାରେ ଥିଲେ ସେଠାରେ ମାତ୍ର ୨ ୨ ବର୍ଷ ହୋଇଛି । ଏବେ ଯେଉଁ ନୂଆ ଉପରିସ୍ଥ ଅଫିସର ଆସିଛନ୍ତି ସେ ତାଙ୍କର 'ନିଜ ଲୋକ' ଜଣେ ସେହି ପୋଷ୍ଟକୁ ଆଣିବାକୁ ଚାହାନ୍ତି । ନଚେତ୍ ସ୍ବାମୀ ଅଛନ୍ତି କୋରାପୁଟରେ । ଝିଅ ଢେଙ୍କାନାଳରେ ଚାକିରି କରନ୍ତି । ଝିଅର ଛୋଟ ପିଲା; ଜଣେ ୧୨ ବର୍ଷର ଆଉ ଜଣେ ୧୦ ବର୍ଷର । ସେ ବଡ଼ ଅସୁବିଧାରେ ଅଛନ୍ତି । ସେ ଢେଙ୍କାନାଳରେ ପାଖାପାଖି ଅଢ଼େଇ ବର୍ଷ ରହିଲେଣି । ସ୍ବାମୀଙ୍କୁ ରାଗ ରଖି ଢେଙ୍କାନାଳରୁ ଦେଢ଼ବର୍ଷ ତଳେ କୋରାପୁଟ ବଦଳି କରିଦେଲେ ମନ୍ତ୍ରୀ । କାହିଁକି ପଚାରିଲେ ଉତ୍ତର ଆସିବ ବେଶୀ ଟଙ୍କା ମାସକୁ ମାଗିଲେ ଦେଇହେଲାନି । ଇଞ୍ଜିନିଅର ଲୋକ ବେଶୀ ଟଙ୍କା ଯଦି ମନ୍ତ୍ରୀଙ୍କୁ ଦେବେ ନିଜ ପାଇଁ ବଞ୍ଚିବ କେତେ ? ଏବେ ସ୍ବାମୀଙ୍କୁ କୋରାପୁଟରୁ ଭୁବନେଶ୍ବର ଏବଂ ଝିଅକୁ ଢେଙ୍କାନାଳରୁ ଭୁବନେଶ୍ବର ଆଣିବାକୁ ହେବ । ଆପଣ ଯଦି କାମିକା ଲୋକ ହୋଇଥିବେ ତେବେ ମୁଁଇଚାଲ କରିବେ । ଦୁଇଟା ବିଭାଗରେ କାମ ବିଭାଗ ଇଞ୍ଜିନିଅରଙ୍କର । ସ୍ବାମୀଙ୍କ ଝିଅଙ୍କର ଶିକ୍ଷା ବିଭାଗ । ଭୁବନେଶ୍ବରରେ ଯିଏ ଅଛନ୍ତି କଲେଜମାନଙ୍କରେ ସେମାନଙ୍କ ପହୁଁଚ ଅଛି ମନ୍ତ୍ରୀ, ସେକ୍ରେଟାରୀ, କିମ୍ବା ମୁଖ୍ୟମନ୍ତ୍ରୀଙ୍କ ପାଖରେ । ଏଠାରୁ କାହାକୁ ତଡ଼ିପାରିଲେ ତ ଝିଅକୁ ଆଣିବେ । ଇଞ୍ଜିନିଅରଙ୍କ କାମ କଷ୍ଟ ହେଲେ ବି ଅପେକ୍ଷାକୃତ ସହଜ । ଆଉ ଯଦି ଏହା ସବୁ ଅକାମ ବୋଲି ଭାବୁଥିବା ଲୋକ ଆପଣ ହୋଇଥିବେ ତେବେ କୁଟାଖଣ୍ଡକ ଦି'ଖଣ୍ଡ କରିପାରିବେନି । ଦୁଇ ଦୁଇଟା ବିଭାଗରେ ଏ ଚମତ୍କାରିତା ଦେଖାଇବେ କେମିତି । ଭଦ୍ରଲୋକ ଯାହା ଖର୍ଚ୍ଚ ହେବ ତୁଲାଇଲେ ମଧ୍ୟ ଆପଣ କ'ଣ କରିପାରିବେ । ଆପଣ ଯେତେ ବୁଝାଇଲେ ବି ଗହ୍ଲା ପୁନେଇର ସେ ମାଇଁ ବିଶ୍ବାସ କରିବାକୁ ନାରାଜ ଯେ ଆପଣ କରିପାରିବେନି । ଆପଣ ଚାହିଁଲେ ହୋଇପାରିବ । ଆପଣ ବିପଦଗ୍ରସ୍ତ । ତାଙ୍କର ମିଠା ପ୍ୟାକେଟଟା ମିଛରେ ଖର୍ଚ୍ଚ । କାମିକା ଲୋକ ହେଲେ ପଇସା ନେଇ କାମ କରିବେ । ମନ୍ତ୍ରୀଙ୍କୁ କି ସେକ୍ରେଟାରୀଙ୍କୁ ଆପଣ କେତେ ଦେବେ କି ନଦେବେ ଆପଣଙ୍କ ପାରିଲାପଣିଆ ଉପରେ ନିର୍ଭର କରେ ।

ଆଉ ଏପରି କାମ ମଧ୍ୟ ହୋଇପାରେ ଯେ, କଣ୍ଟ୍ରାକ୍ଟର ବାବୁ ଟେଣ୍ଡର ଦେଇଛନ୍ତି । ତାଙ୍କର ଥାର୍ଡ ହାୟେଷ୍ଟ କିମ୍ବା ଫୋର୍ଥ ଲୋଏଷ୍ଟ । କାମଟା ଦି' କୋଟି ଟଙ୍କାର । ଆପଣ କାମଟି କରାଇଦେଲେ ଯାହା ଖର୍ଚ୍ଚ ହେବ ସେ ଦେବେ । ସେହି ସମସ୍ୟା । ଆପଣଙ୍କର ମନ୍ତ୍ରୀଙ୍କ ପାଖରେ ସେତିକି କଦର ଅଛି କି ନାହିଁ । ଆଉ ହୋଇଥିବ ଡିପାର୍ଟମେଣ୍ଟାଲ ପ୍ରମୋସନ କମିଟି ବସିବ । ଭଦ୍ରଲୋକ ମାତ୍ର ଦୁଇଥର ସସ୍‌ପେଣ୍ଡ ହୋଇଛନ୍ତି । ପଇସା ଖାଇବାରେ ନିଶ୍ଚୟ କାମ ଥିବ ତାଙ୍କର । ଯିଏ ୩ ଥର ସସ୍‌ପେଣ୍ଡ ହୋଇଛନ୍ତି ଏବଂ

ଏବେ ମଧ୍ୟ ତାଙ୍କ ବିରୋଧରେ ଭିଜିଲାନ୍ସ ତଦନ୍ତ ଚାଲିଛି ସେ ମନ୍ତ୍ରୀଙ୍କୁ ଓ ସେକ୍ରେଟାରୀଙ୍କୁ ଧରିଛନ୍ତି ଏହି ଭଦ୍ରଲୋକଙ୍କୁ ସୁପରସିଡ କରି ପ୍ରମୋସନ ପାଇଯିବାକୁ । ଏଇଟା ଯେମିତି ନହେବ ।

କାମ ସବୁ ହେଲା ଏଇଆ । ଏହି ଧରଣର କାମ ଏବେ କାମରେ ଯାଉଛି । ଆପଣଙ୍କୁ ଅର୍ଥାତ୍ ପାଠକଙ୍କୁ ସୁଖ ନ ଲାଗିପାରେ । କିନ୍ତୁ ଏବେ ଭଲ ଲୋକଙ୍କୁ କେହି ବିଶେଷ ସୁଖ ପାଉନାହାନ୍ତି । ଭଲ ଲୋକଙ୍କ ଦ୍ୱାରା କିଛି କାମ ହେଉନି । ଭଲ ଲୋକଗୁଡ଼ାକ ଏବେ ଅଗାଡ଼ି ମଣିଷ ।

୯।୪।୯୫



# ଦାମ୍ପତ୍ୟ

ଠିକାରେ ବାସନ ମାଜୁଥିବା ସ୍ତ୍ରୀ ଲୋକଟି ପ୍ରବଳ ବର୍ଷା ଯୋଗୁଁ ହେଉ କିମ୍ବା ଅସୁସ୍ଥତାରୁ ହେଉ, କାଲିଠାରୁ ଆସି ନାହିଁ । ମୋ ପତ୍ନୀ ବାସନଗୁଡ଼ିକ ମାଜି ବସିଲେ । ମୁଁ କହିଲି ତାଙ୍କୁ ସାହାଯ୍ୟ କରିବି ବୋଲି । ସେ କହିଲେ, ତମେ ଭଲ କରି ଜାଣିଛ ଯେ, ମୁଁ ତୁମକୁ ବାସନ ମାଜିବାକୁ ଦେବିନି । କାହିଁକି ଖଚ ଖଚ ଲଗେଇଛ ? ମୋ ପତ୍ନୀ ମୋ ଠାରୁ ପାଠରେ କମ୍ ନୁହନ୍ତି । କାମରେ ତ ଯଥେଷ୍ଟ ବେଶୀ । ମୁଁ ଜୀବନରେ ଯେତିକି ଆୟ କରିଛି, ତାହାଠାରୁ ଯେ ବିଶେଷ କମ୍ ସେ କରିଛନ୍ତି, ତାହା ମଧ୍ୟ ନୁହେଁ । ଅଥଚ ସେ ଘର କାମରେ ମତେ ସାହାଯ୍ୟ କରିବାକୁ ଦେବେନି । ମୋ ଝିଅ, ଜ୍ୱାଇଁ ଓ ପୁଅ, ବୋହୂ ବମ୍ବେରେ ରହନ୍ତି । ଚାରି ଜଣ ଯାକ ମୋ ଠାରୁ ଅଧିକ ଯୋଗ୍ୟ ପାଠ ପଢ଼ାରେ । ଆୟରେ ଜ୍ୱାଇଁ ବହୁତ ଉପରେ । ପୁଅ ମଧ୍ୟ ମୋ ଠାରୁ ଅଧିକ ଯୋଗ୍ୟ ସାମ୍ବାଦିକତାରେ । ଆୟରେ ମଧ୍ୟ । କିନ୍ତୁ ଘର କାମରେ ଜ୍ୱାଇଁ ଓ ପୁଅ ସେମାନଙ୍କର ପତ୍ନୀମାନଙ୍କୁ ଯଥେଷ୍ଟ ସାହାଯ୍ୟ କରନ୍ତି । ଜ୍ୱାଇଁ ରୋଷେଇରେ ବେଶ ପାରଦର୍ଶୀ । ଟେବୁଲ ଲଗାଇବା, ଘରକୁ ଅଧିକ ଲୋକ ଆସିଲେ ବାସନ ଧୋଇବା ଆଦି କାମ କରି ଦିଅନ୍ତି ଅନାୟସରେ । ବିଛଣା ଝାଡ଼ିବା ମଧ୍ୟ ବେଳେ ବେଳେ ମୁଁ ଦେଖିଛି । ମୋର ଝିଅ ଏବଂ ବୋହୂ ଯେ ଏ ସବୁ କାମରେ ପାରଙ୍ଗମ ନୁହନ୍ତି ତାହା ନୁହେଁ । ପୁଅ ଟିକେ ରୋଷେଇରେ ବେଶୀ ପାରଙ୍ଗମ ନୁହେଁ । କିନ୍ତୁ ଚଳିବା ଭଳି ରୋଷେଇ କରି ଦେଇପାରିବ । କିନ୍ତୁ ରୋଷେଇରେ ବୋହୂକୁ ସାହାଯ୍ୟ କରିବା, ପିଲାକୁ ଗାଧୋଇ ଦେବା, ଛୋଟବେଳେ ବୋହୂ ରୋଷେଇ କଲାବେଳେ ଝିଅାକୁ କାଖେଇବା କିମ୍ବା ଖେଳେଇବା, ଖାଇ ସାରିଲେ ଟେବୁଲ ସଫା କରିବା ଆଦି କାମ ଅତି ସହଜରେ କରିଦିଏ । ଜ୍ୱାଇଁ ମଧ୍ୟ ପିଲାକୁ ଗାଧୋଇ ଦେବା, ଲୁଗା ପିନ୍ଧାଇ ସ୍କୁଲ ଯିବା ପାଇଁ ପ୍ରସ୍ତୁତ କରିବା ଇତ୍ୟାଦି କାମ କରି ଦେବାରେ କୁଣ୍ଠାବୋଧ କରନ୍ତି ନାହିଁ । ଏସବୁ କହିବାର କାରଣ ହେଲା ମୋ ପତ୍ନୀଙ୍କର ମୋ ପ୍ରତି ଦୟାଭାବ ହେଉ କିମ୍ବା ଭାରତୀୟ ନାରୀତ୍ୱର ମହିମା ହେଉ ମତେ ଘରର କାମ କରାଇ ଦେବାରେ କୁଣ୍ଠା ଥିଲା ବେଳେ ମୋ ନିଜ ଜ୍ୱାଇଁ ଏବଂ ପୁଅ ସେମାନଙ୍କର ପତ୍ନୀମାନଙ୍କୁ ଘର କାମରେ ସାହାଯ୍ୟ କରିବା ଏକ ନୂଆ ଯୁଗର ସ୍ପଷ୍ଟ ସୂଚନା ଦେଉଛି । ମୋ ଝିଅ ଏବଂ ବୋହୂ ମଧ୍ୟ ରୋଜଗାରୀ ନୁହନ୍ତି ତାହା ନୁହେଁ । ସେମାନଙ୍କର ସ୍ୱାମୀମାନେ ଘର କାମରେ ସେମାନଙ୍କୁ ସାହାଯ୍ୟ ନ କଲେ ଯେ ସେମାନେ କଜିଆ କରିବେ କିମ୍ବା ଛାଡ଼ପତ୍ର ଦେବା କଥା ଭାବିବେ, ଏହା ମଧ୍ୟ ନୁହେଁ । କିନ୍ତୁ କେତେକ ମହିଳା ମଧ୍ୟ ଏମିତି ଅଛନ୍ତି ଏହି ଓଡ଼ିଶାରେ ଯେଉଁମାନେ ଘରେ ବସି ମଧ୍ୟ ବାସନମଜାଳୀ ସ୍ତ୍ରୀ ଲୋକ ନ ଆସିଲେ ହୋଟେଲରୁ

ମଗାଇ ଆଣି ଖାଇବା କଥା ବିଚାରନ୍ତି କିମ୍ବା ରୋଷେଇ ବାସନ ସ୍ୱାମୀ ମାଜିବା ଚାହାନ୍ତି ।

ଏସବୁ କଥାର ଉଦାହରଣ ପଛରେ ରହିଛି ଦାମ୍ପତ୍ୟ ଜୀବନର ସଫଳତା । ମୁଁ ମୋ ପତ୍ନୀଙ୍କ ଉପରେ ଅନେକ କଥାରେ ନିର୍ଭର କରି ମଧ୍ୟ ଆମର ସଫଳ ଦାମ୍ପତ୍ୟ ଜୀବନ ପରି ଆଉ କାହାର ଅଛି ବୋଲି ମୁଁ ଭାବି ପାରେନା । ମୋ ପୁଅ ଓ ବୋହୂଙ୍କର ଦାମ୍ପତ୍ୟ ଜୀବନ ମଧ୍ୟ ସେହିପରି ସଫଳ ବୋଲି ମନେ ହୁଏ । କାହିଁକି ? ବୁଝାମଣାର ମଜବୁତ ମୂଳଦୁଆ ଉପରେ ଏପରି ଦାମ୍ପତ୍ୟ ଜୀବନ ପ୍ରତିଷ୍ଠିତ । ଆମ ଦେଶରେ ଲୋକେ ବାହା ହେଲା ପରେ ସବୁ କଥା ଆପଣା ଆପେ ଚାଲିବ ବୋଲି ଭାବି ଛାଡ଼ି ଦିଅନ୍ତି । କଥାଟି ଏତେ ସହଜ ନୁହେଁ । ଇଂରାଜୀରେ Spouse ବୋଲି ଶବ୍ଦଟିଏ ଅଛି । ଅର୍ଥାତ ପତି ପତ୍ନୀ ପରସ୍ପରର Spouse। ଭାରତୀୟ ଭାଷାରେ ବିଶେଷ କରି ଓଡ଼ିଆରେ Spouseର ପ୍ରତିଶବ୍ଦ କ'ଣ ଅଛି ମୁଁ ଜାଣେ ନାହିଁ । ଦମ୍ପତି ବୋଇଲେ ଦୁଇ ଜଣଙ୍କୁ ମିଶାଇ ବୁଝାଏ । ଏହି Spouse ଶବ୍ଦଟି ସ୍ୱାମୀ-ସ୍ତ୍ରୀ ମଧ୍ୟରେ ସମାନତାର ପ୍ରତୀକ । ବାସ୍ତବ ଜୀବନରେ ଯାହା ହେଉ ପଛକେ ଜଣେ ଜଣକର Spouse । ପତି ଓ ପତ୍ନୀ ମଧ୍ୟରେ ସମାନତା ପାଶ୍ଚାତ୍ୟ ଜୀବନରେ ଅନେକଟା ଆସିଗଲାଣି କାଳକ୍ରମେ । କିନ୍ତୁ ଭାରତରେ ଏହି ସମାନତା କିମ୍ବା ସମାନ ଅଧିକାରର ସମୟ ଆସିବାକୁ ବହୁତ ଡେରି ଅଛି । ସ୍ୱାମୀଟି ସ୍ତ୍ରୀକୁ ଖୁବ୍ ଭଲ ପାଇପାରେ । କିନ୍ତୁ ନିଜ ସହିତ ସମାନ କରି ଭାବିବା ସହଜାତ ପ୍ରବୃତ୍ତି ନୁହେଁ । ମନସ୍ତତ୍ତ୍ୱ ବିଜ୍ଞାନରେ ବିଶାରଦ ନିଜ ବିଦ୍ୱାନ ପଣିଆରେ ବହୁ ତତ୍ତ୍ୱ ଲେଖି ପାରନ୍ତି । ଶିକ୍ଷାଦାନରେ ନିଜର ପାଣ୍ଡିତ୍ୟ ପ୍ରମାଣିତ କରି ପାରନ୍ତି । କିନ୍ତୁ ପାରିବାରିକ ଜୀବନରେ ନିଜର ପତ୍ନୀକୁ ସମାନ ଅଧିକାର ଦେଇ ଦେଖିବା ଅନେକ କ୍ଷେତ୍ରରେ ସମ୍ଭବ ହୁଏନା ।

ପୁରୁଷ ନାରୀକୁ ତଳେଇ ଦେଖିବାର ଦୁଇଟି ମୁଖ୍ୟ କାରଣ ରହିଛି । ପୁରୁଷ ଦୈହିକ ଦୃଷ୍ଟିରୁ ଅଧିକ ଶକ୍ତିଶାଳୀ । ନାରୀ ଶାରୀରିକ ଦୃଷ୍ଟିରୁ ପୁରୁଷ ସହିତ ସମକକ୍ଷ ହେବା ସମ୍ଭବ ହୋଇ ନାହିଁ । ସେଥିପାଇଁ ନାରୀ ଉପରେ ପୁରୁଷ ବଳାତ୍କାର କରିପାରେ । ନାରୀ କେଉଁଠାରେ ପୁରୁଷ ଉପରେ ବଳାତ୍କାର କରିବା ଘଟଣା ଲୋକଲୋଚନକୁ ଆସେ ନାହିଁ । ସେହି ଦୃଷ୍ଟିରୁ ପତି ପତ୍ନୀ ଠାରୁ ଅଧିକ ବଳୁଆ । ଝଗଡ଼ାଝାଟି ହେଲେ ରୁଚି ନଥିବା ପୁରୁଷ (ଭଦ୍ର ଓ ସଭ୍ୟ ସମାଜରେ ମଧ୍ୟ) ସ୍ତ୍ରୀ ଉପରେ ହାତ ଉଠାଏ । ବେଶ ମାଡ଼ ଚଢ଼ାଏ । ତଳ ଆର୍ଥିକ ସ୍ତରର ପରିବାରରେ ପତି ପତ୍ନୀକୁ ପିଟିବା ନିତିଦିନିଆ ଘଟଣା । କେତେକ ଉଚ୍ଚଶିକ୍ଷା ପାଇଥିବା ପତିମାନେ ନିଜର ପତ୍ନୀମାନଙ୍କୁ ମାଡ଼ମାରି ଦବାଇ ରଖନ୍ତି । ଦ୍ୱିତୀୟ କାରଣ ହେଲା ଅଧିକାଂଶ କ୍ଷେତ୍ରରେ ପୁରୁଷ ରୋଜଗାର କରେ । ସ୍ତ୍ରୀର ଆୟ ନଥାଏ । କିନ୍ତୁ ସ୍ତ୍ରୀଟି ଘର ଭିତରେ ଯେତିକି କାମ କରେ, ତାହାର ଯଦି ଉଚିତ ମୂଲ୍ୟାୟନ କରାଯାଏ, ତେବେ ଏହି କାମର ମୂଲ୍ୟ କିମ୍ବା ମୂଲ ଆକାରରେ କମ୍ ନୁହେଁ । ଏପରିକି ଯେଉଁ ପରିବାରରେ ପତ୍ନୀ ମଧ୍ୟ କାମ କରି ରୋଜଗାର କରନ୍ତି (ଅନେକ ସମୟରେ ପତ୍ନୀଙ୍କ ଆୟ ପତିଙ୍କ ଠାରୁ ଅଧିକ) ସେଠାରେ ମଧ୍ୟ ପୁରୁଷର ଅଧିକାର ସ୍ତ୍ରୀ ଠାରୁ ଯଥେଷ୍ଟ ଅଧିକ । ପତ୍ନୀ ରୋଜଗାର କରି ସାରିଲେ ମଧ୍ୟ ଘରର ରୋଷେଇ କାମ, ବାସନମଜା, ବିଛଣା ପାରିବା, ମଶାରି ଟାଙ୍ଗିବା, ଛୁଆ ପାଳିବା ଆଦି ଯାବତୀୟ ଦାୟିତ୍ୱ ନିଅନ୍ତି । ତାହାର କୌଣସି

କ୍ଷତିପୂରଣ ନାହିଁ । ପୁରୁଷ ଦୃଷ୍ଟିଭଙ୍ଗୀ ଏପରି ଉପାଦାନରେ ପିଲାବେଳୁ ଗଢ଼ା ହୋଇଛି ଯେ, ସେ ନିଜର ପତ୍ନୀକୁ ପରିବାରରେ ସମାନ ଆସନ ଦେଇ ପାରେ ନାହିଁ । ଫଳରେ ପିଲାମାନେ ମଧ୍ୟ ମା'ଙ୍କୁ ତଳ ଦୃଷ୍ଟିରେ ଦେଖନ୍ତି । ରୋଜଗାର କରୁଥିବା ମହିଳାମାନେ ନିଜ ଆୟରୁ କିଛି ସ୍ୱାଧୀନ ଭାବରେ ଖର୍ଚ୍ଚ କରିବାର ଅଧିକାର ମଧ୍ୟ ନଥାଏ । ଯଦି ପତିମାନେ ଭାବନ୍ତି ଯେ, ପତ୍ନୀମାନଙ୍କ ମନରେ ଏଥିପାଇଁ କୌଣସି ବେଦନା ନାହିଁ ଏହା ନିତାନ୍ତ ଭୁଲ । ସେ ବେଦନା ବିଦ୍ରୋହରେ ପରିଣତ ହୁଏନା । ପତ୍ନୀ ଲୋକଲଜ୍ଜାକୁ ଡରି ହୁଏତ ମାଡ଼ି ଚାପି ଜୀବନସାରା କାଟି ଦିଅନ୍ତି । କିନ୍ତୁ ପ୍ରଭୁ ଓ ଦାସୀର ସଂପର୍କ ଯେ ଦାମ୍ପତ୍ୟର ସଂପର୍କ ନୁହେଁ, ଏହା ପତି ବୁଝି ପାରନ୍ତି ନାହିଁ ।

ଅବଶ୍ୟ କେତେକ କ୍ଷେତ୍ରରେ ଯେ ଏହା ବ୍ୟତିକ୍ରମ ନଘଟେ ତା' ନୁହେଁ । ଦୁଷ୍ଟ ଓ ଦୁର୍ଦ୍ଦାନ୍ତ ମହିଳାମାନେ କେତେକ କ୍ଷେତ୍ରରେ ପତିଙ୍କ ଜୀବନ ଦୁର୍ବିସହ କରି ଦିଅନ୍ତି । ପତିକୁ ଚାକିରି ଜୀବନରେ ଦୁର୍ନୀତି କରି ଅଧିକ 'ରୋଜଗାର' କରିବାକୁ ବାଧ୍ୟ କରନ୍ତି । ଅଳ୍ପ ରୋଜଗାରିଆ ପତିଙ୍କୁ ହୀନଦୃଷ୍ଟିରେ ଦେଖନ୍ତି । ପତିଙ୍କ ସାମାଜିକ ସ୍ଥିତି (Status) ଓ ଅଧିକ ଆୟ ହିଁ ଏପରି ପତ୍ନୀଙ୍କର ମୁଖ୍ୟ ଦୃଷ୍ଟିଭଙ୍ଗୀ ଥାଏ । ଘରେ କୁଣିଆ ପହଞ୍ଚିଲେ ରୋଷେଇ କରିବାକୁ ବିରକ୍ତ ହୁଅନ୍ତି କିମ୍ବା ଅତିଥିଙ୍କୁ ଏପରି ବ୍ୟବହାର ଦେଖାନ୍ତି ଯେ, ସେମାନେ ବେଶୀ ସମୟ ସେ ଘରେ କାଟିବାକୁ ପସନ୍ଦ କରନ୍ତି ନାହିଁ । ଶାଶୁ ଶ୍ୱଶୁରଙ୍କ ସହିତ ରହିବାକୁ ପସନ୍ଦ କରନ୍ତି ନାହିଁ କିମ୍ବା ଶାଶୁ ଶ୍ୱଶୁର ଘରକୁ ଆସିଲେ ସେମାନଙ୍କ ପ୍ରତି ସମୁଚିତ ବ୍ୟବହାର ଦେଖାନ୍ତି ନାହିଁ । ଏପରି ପତ୍ନୀମାନଙ୍କ ଯୋଗୁଁ ମଧ୍ୟ ଦାମ୍ପତ୍ୟ ଜୀବନ ପତି ପାଇଁ ଦୁର୍ବିସହ ହୁଏ । କିନ୍ତୁ ଏପରି ପତ୍ନୀ ଅପେକ୍ଷାକୃତ ଯଥେଷ୍ଟ କମ ସଂଖ୍ୟାର । ଏମାନେ ଭାରତୀୟ ସମାଜର ନାରୀର ମାପକ ନୁହଁନ୍ତି ।

ଗୋଟିଏ କଥା ବୁଝିବାକୁ ହେବ ଯେ ଦାମ୍ପତ୍ୟ ଜୀବନ ଆରମ୍ଭରୁ ଉଭୟ ପରସ୍ପରକୁ ବୁଝିବାକୁ ଚେଷ୍ଟା ଆରମ୍ଭ କରିବେ ସଚେତନ ଭାବରେ । ଯେପରି ଗଛଟିଏ ଲଗାଇଲେ ପାଣି ଦେବାକୁ ପଡ଼େ । ପୋକ ନ କାଟିବେ କିପରି ଦେଖିବାକୁ ପଡ଼େ, ଗାଈଗୋରୁ ଖାଇ ନ ଯାଆନ୍ତୁ ତାହା ଜଗିବାକୁ ପଡ଼େ, ସେହିପରି ପତି-ପତ୍ନୀ ପରସ୍ପରର ଇଚ୍ଛା, ଅଭ୍ୟାସ, ଭଲ ପାଇବା ମାନସିକ ସ୍ତରରେ ଚାପ ଆସିଲେ ତାହାର ମୁକାବିଲା କରିବା ଏବଂ ପରସ୍ପରର ପସନ୍ଦ କିମ୍ବା ନାପସନ୍ଦ କ'ଣ ଜାଣିବାକୁ ଉଦ୍ୟମ କରିବା ଦରକାର । ଘରଟିଏ ତୋଳିଲେ ଯେପରି ମିସ୍ତ୍ରୀ ଗୋଟିଏ ଗୋଟିଏ କରି ଇଟା ଥୁଏ ଏବଂ ସିମେଣ୍ଟରେ ଯୋଡ଼ି ଯୋଡ଼ି ଯାଏ, ଦାମ୍ପତ୍ୟ ଜୀବନ ସେହିପରି ସଚେତନ ଭାବରେ ପ୍ରତିଦିନ ଗଢ଼ିବାକୁ ପଡ଼େ । ଆପଣା ଆପେ ତାହା ଚାଲିବ (Taken for granted) ଦୃଷ୍ଟିଭଙ୍ଗୀ ନେଇ ଚାଲିଲେ ଦାମ୍ପତ୍ୟ ଜୀବନ ଛାଡ଼ପତ୍ରରେ ପରିଣତ ନ ହେଲେ ମଧ୍ୟ ସୁଖମୟ ହୁଏନା ।

ଜୀବନରେ ଯେ କୌଣସି ବୟସରେ ମଧ୍ୟ ପତି ଓ ପତ୍ନୀ ପରସ୍ପରର ପରିପୂରକ ଏ କଥା ମନରେ ସବୁବେଳେ ହେଜିବାକୁ ହେବ । ପୁରୁଷ ନିଜର ପରିବାର ଭିତରେ ଯଦି ତାର ପତ୍ନୀକୁ ସମ୍ମାନ ଦେଇ ନ ଜାଣିଲା, ତେବେ ସେ ନାରୀ ଜାତି ପ୍ରତି ଏକ ଇତରଭାବ କିମ୍ବା ନିଷ୍ଠୁରତା ଅବଲମ୍ବନ କରି ଚାଲିବ । ପରସ୍ପର ବିନା ଅଭାବ ଅନୁଭବ କରିବା, ଜଣକ ବିନା ଅନ୍ୟ ଜଣକ ଅଧୁରା ଏ କଥା ମନରେ ନ

ଆସିଲେ ଦାମ୍ପତ୍ୟ ଜୀବନ ସଫଳ ହେବ ନାହିଁ । ଆପଣ ଅବିବାହିତ ହୁଅନ୍ତୁ, ସଦ୍ୟ ବିବାହିତ ହୁଅନ୍ତୁ କିମ୍ବା ଦୁଇ ତିନି ଦଶକ ହେବ ଦାମ୍ପତ୍ୟ ଜୀବନଯାପନ କରୁଥାନ୍ତୁ, ଭାବିକରି ଦେଖନ୍ତୁ ମୋର ଏହି ଅଙ୍ଗାଳିଭା ଧାରଣାରେ କିଛି ସାରବସ୍ତୁ ଅଛି କି ନାହିଁ । ଖାଲି ଗୁଡ଼ାଏ ପଇସା ରୋଜଗାର, ଗହଣାଗାଣ୍ଠି, ଶାଢ଼ୀ, ଗାଡ଼ି ଆଉ ଘର ତୋଳି ଦେବା ଦାମ୍ପତ୍ୟ ସୁଖ ପାଇଁ ଯଥେଷ୍ଟ ନୁହେଁ । ସେଇଥିପାଇଁ ଇଂରାଜୀରେ କଥା ଅଛି- Behind every successful man there is a woman. ହଁ ଦାମ୍ପତ୍ୟ କଳହ ରହିବ । କିନ୍ତୁ ତାହା ତ ଶତ୍ରୁତାର କଳହ ନୁହେଁ ।

ତା୨୧.୫.୯୫



# ସଚ୍ଚୋଟପଣ

ଆମେ ଦେଶରେ ସଚ୍ଚୋଟ ବୋଇଲେ ସରକାରୀ କର୍ମଚାରୀ, ରାଜନୀତିଜ୍ଞ କିମ୍ବା କର୍ପୋରେସନ ଆଦିରେ ଚାକିରୀ କରି ଯେଉଁମାନେ 'ଦୁର୍ନୀତି' କରନ୍ତି ନାହିଁ, ସେଇମାନଙ୍କୁ ବୁଝାଏ । ସଚ୍ଚୋଟ ବୋଇଲେ ଯେଉଁମାନେ ଉତୋଚ ନିଅନ୍ତି ନାହିଁ କିମ୍ବା ଭ୍ରଷ୍ଟ ଉପାୟରେ ଉଦ୍ଦିଷ୍ଟ ଆୟ ବାହାରେ ଉପାର୍ଜନ କରନ୍ତି ନାହିଁ, ସେମାନଙ୍କୁ ବୁଝାଏ । ଏହା ସାଧାରଣ ଚଳନୀ ଅର୍ଥ । କିନ୍ତୁ ଉପରୋକ୍ତ ଗୋଷ୍ଠୀରେ ଉଚିତ ଆୟ ବାହାରେ ଅଧିକ ଅର୍ଥ ସଂଗ୍ରହ କରୁନଥିବା ଲୋକ ପାଇବା ଏବେ ପ୍ରାୟ ଦୁଃସାଧ୍ୟ ବ୍ୟାପାର । ତେଣୁ ସରାକରୀ କଳ ସହିତ ସଂପର୍କ ଥିବା ଲୋକମାନେ ଏବେ ସଚ୍ଚୋଟ ନାହାନ୍ତି ଏଇଆ ସାଧାରଣତଃ ଜୋର ଦେଇ କୁହାଯାଇପାରେ । କିନ୍ତୁ ସରକାରଙ୍କ ସହିତ ସଂପର୍କ ଥିବା କେହି ଲୋକ ଆଦୌ ସଚ୍ଚୋଟ ନୁହନ୍ତି କିମ୍ବା ନାହାନ୍ତି ମୁଁ କହୁନାହିଁ, ହୁଏତ କେହି କେହି ଅଛନ୍ତି । କିନ୍ତୁ ରାଜନୀତିରେ ନିର୍ବାଚନ ଲଢି ଜିତୁଥିବା ଏବଂ ଅନେକ ହାରୁଥିବା ଲୋକେ ସଚ୍ଚୋଟ ରହିବା ଏକରକମ ଦୁଃସାଧ୍ୟ ବ୍ୟାପାର । ନିର୍ବାଚନ ଆଇନ ଅନୁସାରେ ନିର୍ଦ୍ଧାରିତ ଅର୍ଥ ବ୍ୟୟ କରିବାର ଯେଉଁ ବାଧ୍ୟତା ଅଛି, ତାହା ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀମାନେ ଲଂଘନ କରୁଛନ୍ତି । ସେହିପରି କେହି ସରକାରୀ କର୍ମଚାରୀ ପୂରାପୂରି ସଚ୍ଚୋଟ ରହିବା ଦେଖାଯାଉନାହିଁ । ଯେଉଁମାନେ ଅଛନ୍ତି, ସେମାନେ ନିଜ ଚାକିରୀରେ ବହୁ ବାଧାବିଘ୍ନର ସମ୍ମୁଖୀନ ହେଉଛନ୍ତି । ଆପାତଃ ସଚ୍ଚୋଟପଣିଆକୁ ସାମାନ୍ୟ କୁଣ୍ଠାର ସହ ସଚ୍ଚୋଟପଣିଆ ଭାବରେ ଚଳିତ ପରିସ୍ଥିତିରେ ଗ୍ରହଣ କରାଯିବାର ବାଧ୍ୟତା ରହିଛି । ଉଦାହରଣ ସ୍ୱରୂପ କେହି ବିଧାୟକ କିମ୍ବା ମନ୍ତ୍ରୀ କିମ୍ବା ସରକାରୀ କର୍ମଚାରୀ ଯେଉଁ ସହରରେ କାମ କରୁଛନ୍ତି ଯଦି ସେଠାରେ ତାଙ୍କ ନିଜର ବାସଗୃହ ଥାଏ, ତେବେ ସେମାନେ ସରକାରୀ ବାସଗୃହ ଗ୍ରହଣ କରିବା ଉଚିତ ନୁହେଁ । କିନ୍ତୁ ବିଭିନ୍ନ ଆଳରେ ତାହା ଏଡାଇଦେଇ ଏପରି ବ୍ୟକ୍ତିମାନେ ନିଜ ଘର ଭଡା ଲଗାଇ ଶସ୍ତାରେ ସରକାରୀ ବାସଗୃହରେ ରହୁଛନ୍ତି । ସେମାନେ କହିପାରନ୍ତି ଯେ, ଋଣ ନେଇ ସେମାନେ ଘର ତିଆରି କରିଛନ୍ତି । ଋଣ ପରିଶୋଧ କରିବା ପାଇଁ ସେମାନେ ଘର ଭଡା ଲଗାଇବାକୁ ବାଧ୍ୟ । ଏହାର ଉତ୍ତର ହେଲା ଯେଉଁମାନେ ସରକାରୀ କର୍ମଚାରୀ ନୁହନ୍ତି, ସେମାନେ ମଧ୍ୟ ଋଣ ନେଇ ଘର କରିଛନ୍ତି ଓ ଯେପରି ହେଉ ଋଣ ପରିଶୋଧ କରୁଛନ୍ତି । ତଥାପି ଏହି ତ୍ରୁଟିଟି ଛଡା ଏପରି ରାଜନୀତିଜ୍ଞ ଓ ସରକାରୀ କର୍ମଚାରୀ ଯଦି ନିଜ ପଦବୀକୁ ବ୍ୟବହାର କରି ଦରମା ଭତ୍ତା ବାହାରେ ଅଧିକ ଅନୁଚିତ ଅର୍ଥ ଉପାର୍ଜନ କରୁନଥିବେ, ତେବେ ସେମାନଙ୍କୁ ଆଜିର ସମାଜରେ ସଚ୍ଚୋଟ ବୋଲି ଧରି ନିଆଯାଇପାରେ । ଏପରି ହୁଏତ କିଛି ଲୋକଥିବେ । ସେହି ମର୍ମରେ ଯଦି କେହି ଲୋକ ନିଜର କାମଟି

ହୋଇଗଲା ପରେ ଖୁସିରେ ଥରେ ମାଛଟାଏ କିମ୍ବା ମିଠା ପ୍ୟାକେଟଟାଏ ଆଣି ଦେଲା, ତାହା ଗ୍ରହଣ କରିବାରେ ଯେତିକି ଦୋଷ ରହିଲା, ତାହା ଗୁରୁତର ଦୁର୍ନୀତିଭୁକ୍ତ ନ ହୋଇପାରେ ।

କିନ୍ତୁ କେବଳ ଆର୍ଥିକ ବିଚାର ସଚ୍ଚୋଟପଣିଆର ଏକମାତ୍ର ମାପକାଠି ନୁହେଁ । ଜଣେ ଅସୁବିଧାରେ ପଡି ଜଣକ ପାଖକୁ ସାହାଯ୍ୟ ପାଇଁ ଯାଇଛି । ସାହାଯ୍ୟ ଭିକ୍ଷୁର ବିଶ୍ୱାସ ଯେ ଯାହାଙ୍କ ଦ୍ୱାରସ୍ଥ ହୋଇଛି, ସେ ସାହାଯ୍ୟ କରିପାରିବେ । ସାହାଯ୍ୟ କରିବା ଲୋକର ଯଦି ସେହି ସାମର୍ଥ୍ୟ ନାହିଁ ତେବେ ସେ ସିଧାସଳଖ ବୁଝାଇଦେବା ଦରକାର ସେ ପ୍ରକୃତରେ ସାହାଯ୍ୟ କରିପାରିବେ ନାହିଁ । କିମ୍ବା ଯଦି ତାଙ୍କର ସାହାଯ୍ୟ କରିବାର ଶକ୍ତି ଅଛି, କିନ୍ତୁ ସେ ଆସିଥିବା ବ୍ୟକ୍ତିଙ୍କୁ ସାହାଯ୍ୟ କରିବାକୁ ଚାହାନ୍ତି ନାହିଁ, ତେବେ ତାହା ମଧ୍ୟ ସ୍ପଷ୍ଟ କହିଦେବା ଦରକାର ଯେ ସେ ସାହାଯ୍ୟ କରିବେ ନାହିଁ ଏବଂ ଆବଶ୍ୟକ ହେଲେ କହିଦେବା ଉଚିତ ଯେ, କେଉଁ କାରଣ ପାଇଁ ସାହାଯ୍ୟ କରିବେ ନାହିଁ । କିନ୍ତୁ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇ ଦଉଡାଇବା ଏବଂ ଶେଷରେ ସାହାଯ୍ୟ ନ କରିବା ସଚ୍ଚୋଟପଣିଆ ନୁହେଁ ନିଶ୍ଚୟ ।

ବ୍ୟବସାୟୀମାନେ ସଚ୍ଚୋଟ ରହିପାରିବେ ନାହିଁ । କାରଣ ସଚ୍ଚୋଟ ରହିଲେ ସେମାନଙ୍କୁ ବହୁ ସମୟ ଲାଗିବ ବିପୁଳ ଧନର ଅଧିକାରୀ ହେବାକୁ ଯାହା ପ୍ରତ୍ୟେକ ବ୍ୟବସାୟୀର ଅଭିଳାଷ । ସଚ୍ଚୋଟପଣିଆ ରଖି ବ୍ୟବସାୟ କରିହେବ ନାହିଁ ଏହା ମଧ୍ୟ ନୁହେଁ । କିନ୍ତୁ ଭାରତବର୍ଷର ବର୍ତ୍ତମାନର ପରିସ୍ଥିତିରେ ବ୍ୟବସାୟୀ ସଚ୍ଚୋଟ ରହିବାକୁ ସୁଯୋଗ ପ୍ରାୟ ନାହିଁ । ସରକାରୀ ନିୟମ କାନୁନ ଏପରି ହୋଇଛି ଯେ, ବ୍ୟବସାୟୀ ସଚ୍ଚୋଟ ରହିବାକୁ ସୁଯୋଗ ମିଳିବ ନାହିଁ । ଜଣେ ସଚ୍ଚୋଟ ବ୍ୟବସାୟୀ ଅପେକ୍ଷାକୃତ ଅଳ୍ପ ଲାଭ ନେଇ ଅଳ୍ପ ଆୟରେ ଚଳିବାକୁ ପ୍ରସ୍ତୁତ ହେଲେ ମଧ୍ୟ ବିକ୍ରୟ କର, ଆୟକର, ଅବକାରୀ ଦେୟ ଆଦି ଦାୟିତ୍ୱରେ ଥିବା କର୍ମଚାରୀମାନେ ଏହି ସଚ୍ଚୋଟ ବ୍ୟବସାୟୀଙ୍କୁ ଏତେ ହଇରାଣ କରିଦେବେ ଏବଂ ନିୟମକାନୁନର ଫାଶରେ ତାକୁ ପକାଇ ଏପରି ଛଟପଟ କରିବେ, ଯଦ୍ୱାରା ସେ ସଳଖ ରହିପାରିବ ନାହିଁ । ତା'ଛଡା କ୍ୱଚିତ୍ କେହି ବ୍ୟବସାୟୀ ଅଛନ୍ତି, ଯେଉଁମାନେ କ୍ଷିପ୍ରଗତିରେ ଆୟକୁ ବହୁଗୁଣିତ ନକରି ଧୀରେ ଧୀରେ ନିଜର ବ୍ୟବସାୟ ବୃଦ୍ଧି କରିବାକୁ ପସନ୍ଦ କରୁଛନ୍ତି ।

କେତେକ ସରକାରୀ କର୍ମଚାରୀ ସଚ୍ଚୋଟ ରହିବାକୁ ଆଗ୍ରହୀ ଏବଂ ଉଦ୍ୟମ କରୁଛନ୍ତି । କିନ୍ତୁ ସେମାନଙ୍କର ଉପରେ ଓ ତଳେ ଥିବା କର୍ମଚାରୀମାନେ ଏପରି ସଚ୍ଚୋଟ କର୍ମଚାରୀ ବିରୋଧରେ ରହିବେ ଏବଂ ତାଙ୍କୁ ସଚ୍ଚୋଟ ଭାବରେ କାମ କରିବାକୁ ଦେବେନାହିଁ । ତାଙ୍କୁ ହଇରାଣରେ ପକାଇଦେବେ କିମ୍ବା ଉପରିସ୍ଥ କର୍ମଚାରୀ ଅଥବା ରାଜନୈତିକ ପଦାଧିକାରୀଙ୍କୁ ପ୍ରଭାବିତ କରି ଏପରି ସଚ୍ଚୋଟ କର୍ମଚାରୀଙ୍କୁ ସ୍ଥାନାନ୍ତରିତ କରିଦେବେ । ଫଳରେ କ୍ରମେ ଏହି ସଚ୍ଚୋଟ ଅଫିସରମାନେ ସଚ୍ଚୋଟପଣିଆ ପାଇଁ ଏତେ ଅଧିକ ଶରବ୍ୟ ହେବେ ଯେ, ବାଧ୍ୟହୋଇ ସେମାନଙ୍କର ସଚ୍ଚୋଟପଣିଆକୁ ପରିତ୍ୟାଗ କରିବେ । ନଚେତ୍ ଦୁର୍ନୀତିର ଅଭିଯୋଗରେ ନିଜେ ଅଭିଯୁକ୍ତ ହୋଇ ଯିବେ ଅନ୍ୟମାନଙ୍କର ଚକ୍ରାନ୍ତ ଫଳରେ । କିନ୍ତୁ ସଚ୍ଚୋଟ ରହିବା ପାଇଁ ଅଧିକାଂଶ ସରକାରୀ କର୍ମଚାରୀ ଆଗ୍ରହୀ ନୁହନ୍ତି । ଏହାସତ୍ତ୍ୱେ କେତେକ କର୍ମଚାରୀ ଶେଷ ଜୀବନ ପର୍ଯ୍ୟନ୍ତ ସଚ୍ଚୋଟ ରହିଯାନ୍ତି । ଅଉ କେତେକ କର୍ମଚାରୀ ଅଛନ୍ତି, ଯେଉଁମାନେ ଚାକିରୀ ଆରମ୍ଭରେ

ସଚ୍ଚୋଟ ଏବଂ କର୍ତ୍ତବ୍ୟନିଷ୍ଠ ଥାଆନ୍ତି । ଚାକିରୀରେ ପୁରୁଣା ହେଲେ ସହକର୍ମୀମାନଙ୍କର ଦୁର୍ନୀତି ଦେଖି ଏବଂ ନିଜର ସଚ୍ଚୋଟପଣିଆର ମର୍ଯ୍ୟାଦା ନ ପାଇ ବିରକ୍ତିରେ ସଚ୍ଚୋଟପଣିଆକୁ ବନ୍ଧ ଦେଇ ବହୁବାଟ ବିପରୀତ ଦିଗରେ ମାଡିଯାଆନ୍ତି । ଆଉ କେତେକ କିଛିଟା ସଚ୍ଚୋଟପଣିଆ ରକ୍ଷା କରନ୍ତି ବିପଥଗାମୀ ହୁଅନ୍ତି । ଆଉ କେତେକ ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପଦବୀର ଅଧିକାରକୁ ବ୍ୟବହାର କରି ଅନୁପାର୍ଜିତ ଆୟ ବିନା ଜୀବନ ସଫଳ ନୁହେଁ ବୋଲି ମନେ କରନ୍ତି । ଓଡ଼ିଆ ଢଗ ଅନୁସାରେ- ସେମାନଙ୍କୁ ଯଦି ଜବତ କରିବା ପାଇଁ ସମୁଦ୍ର କୂଳରେ ଅବସ୍ଥାପିତ କରି ଲହଡି ଗଣିବାର ଦାୟିତ୍ୱ ଦିଆଯାଏ, ସେମାନେ ସେଥିରୁ ମଧ ପଇସା କରିବାର ବାଟ ବାହାର କରିନିଅନ୍ତି । ଏହି ପ୍ରବୃତ୍ତିର ବ୍ୟକ୍ତିଙ୍କ ସଂଖ୍ୟା ଏବେ ଦ୍ରୁତଗତିରେ ବଢି ଚାଲିଛି ।

ସଚ୍ଚୋଟପଣ ଏକ ମାପକାଠି । ସମ୍ପୂର୍ଣ୍ଣ ସଚ୍ଚୋଟପଣିଆର(Absolute Honesty) ଆଦର୍ଶରେ ପହଞ୍ଚିବା କଷ୍ଟକର ହେଲେ ମଧ ସମ୍ଭବ । ତଥାପି ଆପାତତଃ- ସଚ୍ଚୋଟ ହେବାକୁ ମଧ ବହୁ କମ୍ ଲୋକ ଉଦ୍ୟମ କରୁଛନ୍ତି । ଭୋଗପ୍ରବଣ ଦୁନିଆରେ ଯେଉଁ ପ୍ରତିଯୋଗିତା ଚାଲିଛି, ସେଥିରେ ସଚ୍ଚୋଟପଣିଆ ଏବଂ ଅଭିନ୍ନ ସଚ୍ଚୋଟପଣ ଯାହାକୁ ଇଂରାଜୀରେ Integrity କୁହାଯାଏ, ତାହା ଖୁବ୍ କମ୍ ଲୋକ ରକ୍ଷା କରିପାରୁଛନ୍ତି । କାରଣ ସଚ୍ଚୋଟପଣିଆ ପାଇଁ ଯାହା ମୂଲ୍ୟ ଦେବାକୁ ପଡେ, ତା'ଠାରୁ ଢେର ଅଧିକ ମୂଲ୍ୟ ଦେବାକୁ ପଡେ ଅଭିନ୍ନ ସଚ୍ଚୋଟପଣ ପାଇଁ । ଏପରି ବ୍ୟକ୍ତି ଯେ ନାହାନ୍ତି, ତାହା ନୁହେଁ । କିନ୍ତୁ ସେମାନଙ୍କର ସମାଜରେ ସମ୍ମାନ, ସ୍ୱୀକୃତି ଓ ପୁରସ୍କାର ନାହିଁ । ଜଣେ ଅପାରଗ, ଅସମର୍ଥ ଏବଂ ଅଲୋଡା ବ୍ୟକ୍ତି ଭାବରେ ଜୀବନ କାଟିବାକୁ ପଡେ ସେମାନଙ୍କୁ ।

ଗୋଟିଏ ଶେଷ କଥା କହି ଏହି କ୍ଷୁଦ୍ର ନିବନ୍ଧଟିକୁ ସାରିବାକୁ ଚାହେଁ । ଆମେ ଏବେ ଏକ "ପବ୍ଲିକ ଅଡିଟ୍ କମିଟି" କଥା ଚିନ୍ତା କରୁଛୁ । ଯେଉଁମାନେ ଏହି କମିଟିରେ ସକ୍ରିୟ ସଭ୍ୟ-ହୋଇ କାମ କରିବେ, ସେମାନେ ଏକ ଶପଥ ଘୋଷଣା କରିବେ ନିଜ ସ୍ୱାକ୍ଷରରେ । 'ମୁଁ ନିଜକୁ ଜଣେ ସଚ୍ଚୋଟ ବ୍ୟକ୍ତି ବୋଲି ଘୋଷଣା କରୁଛି' ଏହା ସହଜରେ କେହି ଲେଖିପାରିବା ସମ୍ଭବ ହେଉନି । କାରଣ ନିଜକୁ ସଚ୍ଚୋଟ ଘୋଷଣା ନ କଲେ କେହି ଏହି ସଂଗଠନର ସଭ୍ୟ ହୋଇପାରିବେ ନାହିଁ । ନିଜକୁ ସଚ୍ଚୋଟ ବୋଲି ଘୋଷଣା କରିବା ମଧ ଏହି ସଂଗଠନରେ ଯୋଗଦେବାକୁ ବହୁ ଆଗ୍ରହୀ ବନ୍ଧୁଙ୍କ ପାଇଁ ସମସ୍ୟା ସୃଷ୍ଟି କରୁଛି ।

ତା୨୮।୫।୯୫



# ସୌନ୍ଦର୍ଯ୍ୟ

ବିବାହ ସମୟ ହେଲେ ବରଘର ଓ କନ୍ୟାଘର ସୁନ୍ଦର କନ୍ୟା ଓ ବର ଖୋଜନ୍ତି । କନ୍ୟାଟି ସୁନ୍ଦର ହେବା ଯେପରି ଏକ ଅପରିହାର୍ଯ୍ୟ କଥା, ବର ପାଇଁ ଠିକ୍ ସେହି ମାପକାଠି ପ୍ରୟୋଗ ନ ହେଲେ ମଧ୍ୟ 'ଯୋଡି (Match) ଠିକ୍ ହେବାପାଇଁ ସାଧାରଣତଃ ମନରେ ପ୍ରଶ୍ନ ଉଠେ । କଳା କିମ୍ବା ଶ୍ୟାମଳ ବର ହେଲେ ଚଳିବ କିନ୍ତୁ କନ୍ୟା 'ସୁନ୍ଦର' ହେଲେ ମଧ କାଳି କିମ୍ବା ଶ୍ୟାମଳୀ ହେଲେ ଶତକଡା ୫୦ରୁ ୭୫ ଭାଗ ନୟର ସୌନ୍ଦର୍ଯ୍ୟରୁ କଟିଯାଏ । ପୁରୁଷ ପ୍ରାଧାନ୍ୟ ସମାଜରେ ଏହା ଏ ପର୍ଯ୍ୟନ୍ତ ବଳବତର ରହିଛି । ସୁନ୍ଦରୀ କନ୍ୟାଟିଏ ଯଦି ତା'ର ମନପସନ୍ଦ ବରଟିଏ ପରିବର୍ତ୍ତେ ତତ୍ତୁଲ୍ୟ ସୁନ୍ଦର ବର ନପାଏ କିମ୍ବା ଅସୁନ୍ଦର ବର ପାଏ ତେବେ ଅନେକ ଦିନ ପର୍ଯ୍ୟନ୍ତ ତା'ମନରେ  ସେହି କଥାଟା ରୁନ୍ଧି ହୋଇ ରହିଯାଏ । ଯଦିଓ ବାହାରକୁ ସେ ସୁଖୀ ବୋଲି ଜଣାପଡ଼େ । ଶାରୀରିକ ବିଶେଷ କରି ମୁଖ ସୌନ୍ଦର୍ଯ୍ୟର ଗୁରୁତ୍ୱ ଅଧିକ । ମଣିଷର ମନ, ଗୁଣ, ସ୍ୱଭାବ ଓ ବ୍ୟବହାର ପ୍ରଭୃତି ଯେ ସୌନ୍ଦର୍ଯ୍ୟର ଏକ ଅବିଭାଜ୍ୟ ଉପାଦନ ଏହା ବିବାହ ବଜାରରେ ଏବେ ଗୌଣ ହୋଇପଡିଛି ।

ଧନୀ କିମ୍ବା ଉଚ୍ଚ ପଦବୀରେ  ଅଧିଷ୍ଠିତ ଯୁବକ ଅସୁନ୍ଦର ହେଲେ ମଧ୍ୟ ଗୋରା ଏବଂ ସୁନ୍ଦରୀ କନ୍ୟା ଖୋଜନ୍ତି ଏବଂ ପାଆନ୍ତି । ଧନୀ ଘରର ଲୋକେ ପ୍ରଥମେ କନ୍ୟାର ରୂପ ତଦାରଖ କରିଚାଲନ୍ତି । ଅନେକ ଗୁଡିଏ କନ୍ୟା ଦେଖିଲା ପରେ ଯେଉଁଠି ରୂପଟି ସବୁଠାରୁ  ଭଲ ବୋଲି ଜଣାପଡେ, ସେହି କନ୍ୟାଟିକୁ ପସନ୍ଦ କରନ୍ତି । ସାଧାରଣତଃ ଏହିପରି କନ୍ୟା କମ ଶିକ୍ଷିତ ଏବଂ ଅପେକ୍ଷାକୃତ  କମ୍ ଆର୍ଥିକ ସ୍ଥିତିର ପିତାମାତାଙ୍କର ସନ୍ତାନ ହୋଇଥାଏ ।  ଝିଅଟି  ସୁନ୍ଦରୀ ହୋଇଥିଲେ  ମଧ ଯୌତୁକ ଦେବାର ସାମର୍ଥ୍ୟ ନଥିବାରୁ କିମ୍ବା ପ୍ରସ୍ତାବିତ  ଜ୍ୱାଇଁ ଧନୀ ହୋଇଥିବାରୁ ପିତାମାତା ଝିଅ 'ଭଲରେ' ରହିବା ବିଚାର କରି ସେଠାରେ କନ୍ୟାଦାନ କରନ୍ତି । ବିଳାସିକତା ଓ ପ୍ରାଚୁର୍ଯ୍ୟର  ଚାରିକାନ୍ଥ ମଧରେ ସୁନ୍ଦରୀ ଯୁବତୀ ପତ୍ନୀ 'ସୁଖୀ' ହୋଇ ଖୁସିରେ ରହିଯାଏ । ଅନ୍ୟ କାହାରି ପ୍ରତି ଆକର୍ଷଣ  ହେଲେ ମଧ୍ୟ ଶାରୀରିକ  ସ୍ତରରେ ଧନୀ ସ୍ୱାମୀର  କଡା ଆବରଣ ଭେଦି ଏହି ଆକର୍ଷଣର ବିଦ୍ୟୁତିକୁ ଚରିତାର୍ଥ କରିବା ସହଜ କିମ୍ବା ସମ୍ଭବ ହୁଏନା ।

ସୌନ୍ଦର୍ଯ୍ୟ ପୁରୁଷ ଓ ନାରୀ ମଧ୍ୟରେ ସମ୍ପର୍କର ଯେ ଏକମାତ୍ର ବନ୍ଧନର ସୂତ୍ର ଏକଥା କୁହାଯାଇପାରେନା । ଏ କ୍ଷେତ୍ରରେ ବିବାହଗତ ସମ୍ପର୍କ ଓ ଅଧିକାର ଯେ ଆନୁଗତ୍ୟ ଓ ପାରସ୍ପରିକତାର ଦୃଢ  ମୂଳଦୁଆ ଏକଥା ମଧ ସବୁ କ୍ଷେତ୍ରରେ ସତ୍ୟ ନୁହେଁ । ତାହା ହୋଇଥିଲେ ସୁନ୍ଦର, ଧନୀ ଓ

ପ୍ରଭାବଶାଳୀ ସ୍ୱାମୀ ଏବଂ ସୁନ୍ଦରୀ ପତ୍ନୀ ପରକୀୟା ପ୍ରେମରେ ଜଡିତ ହୁଅନ୍ତେ ନାହିଁ । ଯେ ପର୍ଯ୍ୟନ୍ତ ସୌନ୍ଦର୍ଯ୍ୟ ଦୈହିକ ବିଚାର ଉପରେ ପ୍ରତିଷ୍ଠିତ, ତାହା ଆକର୍ଷଣ ଏବଂ ଅବିଚ୍ଛେଦ୍ୟ ଶାଶ୍ୱତ ବନ୍ଧନ ନୁହେଁ । ସେଥିପାଇଁ ଜଣେ ଧନୀ ସୁନ୍ଦରୀ, ସମାଜରେ ପ୍ରତିଷ୍ଠିତ ପରିବାରର ମହିଳା (ବୟସ ନିର୍ବିଶେଷରେ) ଜଣେ ସୁନ୍ଦର ସୁଠୋଳ ଶ୍ରମିକ ଯୁବକର ନଗ୍ନ ବକ୍ଷ ଓ ବାହୁ ଭିତରେ ଆବଦ୍ଧ ହେବାକୁ ମନ କରିବାରେ କୌଣସି ବାଧା ରହିବନାହିଁ ଯଦିଓ ତାହା ଫଳବତୀ ହେବାରେ ବହୁ ବାଧା ରହିଛି । ମାନସିକ ସ୍ତରରେ ସେ ଦୈହିକ ଆକର୍ଷଣ ପାଇଁ କୌଣସି ଉଚ୍ଚ ପାଚେରୀ ନାହିଁ । ସେହିପରି ଧନୀ ଓ ସମାଜର ପ୍ରତିଷ୍ଠିତ ପୁରୁଷ ଜଣେ ଯୌବନଭରା ସୁନ୍ଦରୀ ମୂଲିଆଣୀର ଦେହ ପ୍ରତି ଆକୃଷ୍ଟ ହେବାରେ ମାନସିକ ବାଧକ ମଧ୍ୟ ନାହିଁ । ତେଣୁ ସୌନ୍ଦର୍ଯ୍ୟର ଏହି ବାହ୍ୟିକ ରୂପେ କେତେ ଭଙ୍ଗପ୍ରବଣ, ତାହା ଭାବି ଦେଖିଲେ ପ୍ରତ୍ୟେକ ନାରୀ ଓ ପୁରୁଷ ପାଇଁ ତାହା ଅସହ୍ୟ ହୁଏ । ପୁଣି ଆଧୁନିକ ସମାଜରେ (Modren Society) ଏବେ ଏହିସବୁ ଦୃଷ୍ଟିଭଙ୍ଗୀ ବାଡ଼ ଡେଇଁ ଗଲାଣି । ତେଣୁ ବରକନ୍ୟା ଖୋଜିଲାବେଳେ ଦେହର ସୌନ୍ଦର୍ଯ୍ୟର ଭଙ୍ଗୁରତାକୁ ଗ୍ରହଣ କରି ଭଲ ମଣିଷ ଖୋଜିଲେ ଭବିଷ୍ୟତରେ ନାରୀ ଓ ପୁରୁଷ ସୁଖୀ ହେବେ । ଏହି ଦିଗ ପ୍ରତି କେହି ସନ୍ଧାନୀ ଦୃଷ୍ଟି ଦେଉନାହାନ୍ତି ।

ସୌନ୍ଦର୍ଯ୍ୟ କ'ଣ କେବଳ ମଣିଷ ମନରେ ଓ ଦେହରେ ଅଛି ? ପୃଥିବୀର ପ୍ରତିଟି ପଦାର୍ଥରେ, ପ୍ରାଣୀଠାରେ, ବୃକ୍ଷଲତାରେ, ଫୁଲରେଓ ଫଳରେ, ଟେବୁଲ ଚଉକିରେ, ପୁସ୍ତକରେ, ଗଳ୍ପରେ, କବିତାରେ, ଉପନ୍ୟାସରେ, ଏପରିକି ପ୍ରବନ୍ଧରେ, ସମୁଦ୍ର ଓ ପାହାଡରେ, ପ୍ରକୃତିର ଦୃଶ୍ୟ ସମ୍ଭାରରେ, ବନ୍ୟାରେ, ବର୍ଷାରେ ମେଘମୁକ୍ତ ଆକାଶରେ କିମ୍ବା ବାଦଲର ବିଭିନ୍ନ ଅଙ୍କନରେ, ମନ୍ଦିର ଗାତ୍ରରେ ନୃତ୍ୟରତା ଶିଳ୍ପୀର ପାଦ ଓ ଘୁଙ୍ଗୁରର ତାଳରେ ଓ ଛନ୍ଦରେ, ଶସ୍ୟକ୍ଷେତ୍ରରେ ସମୀରଣର ଲହରରେ, ପଶୁର ଦେହରେ । ପକ୍ଷୀ ଡେଣାର ରଂଗ ବିନ୍ୟାସ ଏବଂ କୁହୁତାନରେ କେତେ ଯେ ସୌନ୍ଦର୍ଯ୍ୟ ଭରିରହିଛି, ତାହା ଦେଖିବାକୁ , ଉପଭୋଗ କରିବାକୁ କେତେଜଣଙ୍କର ସମୟ ଅଛି ? ସମୟ ଠାରୁ ଆଖି, କାନ ଓ ମନର ଅଭାବ ବେଶୀ ଦୁଃଖଦାୟକ । ପୁଣି ପ୍ରତି ମଣିଷର ରୁଚି ମଧ୍ୟ ନାହିଁ । ପସନ୍ଦ ନାହିଁ । କିଏ ଭଲ ଖାଇବାରେ ଆନନ୍ଦ ପାଉଛି । କିଏ ଘଣ୍ଟା ଘଣ୍ଟା ଧରି ସମୁଦ୍ର କୂଳରେ ବସି ଅସଂଖ୍ୟ ଲହଡିର ଫେଣ ଓ ବେଳାଭୂମିରେ ଲହରୀର ଅବିଶ୍ରାନ୍ତ ନୃତ୍ୟରେ ବିଭୋର ହୋଇଯାଉଛି । ଆମ ଗାଈଟି କେତେ ସୁନ୍ଦର, କେତେଜଣ ଦେଖିବାକୁ ପାଆନ୍ତି ? ଗାଈର ପହ୍ନାରେ ଆମ ମନ । ରାସ୍ତାରେ ବୁଲୁଥିବା କୁକୁରଙ୍କ ମଧରେ କେତେଗୁଡା ଏତେ ସୁନ୍ଦର, ଯେଉଁମାନେ ଘରେ ରହିଥିଲେ, ସ୍ନେହ ଶ୍ରଦ୍ଧା ପାଇଥିଲେ ଆହୁରି କେତେ ସୁନ୍ଦର ହୋଇଥାନ୍ତେ ଆମେ କେବେ ଭାବିବାକୁ ସମୟ ପାଉନା । ଆମ ବଗିଚାର ଅଫଳନ୍ତି ଆମ୍ବ ଗଛଟି କେତେ ସୁନ୍ଦର ଆମେ ବିଚାର ନକରି ଗଛଟା ଏ ପର୍ଯ୍ୟନ୍ତ କାହିଁକି ଫଳ ଦେଉନାହିଁ, ସେ ନେଇ ସେ ଗଛଟି ଉପରେ ରାଗ ରୋଷ କରୁ । ଗୋଟିଏ ଗୋଟିଏ ଘର କେତେ ସୁନ୍ଦର । ୱାହିଦା ରହମନ ବକ୍ଷ ବା ଜାନୁ ପ୍ରଦର୍ଶନ ନକରି ଯେତିକି ସୁନ୍ଦର, ମାଧୁରୀ ଦୀକ୍ଷିତ କି ପରଭିନ୍ ବାବି ଦେହର ୧୦ ଭାଗରୁ ୯ ଭାଗ ଦେଖାଇଲେ କ'ଣ ସେତିକି ସୁନ୍ଦର ? ଅବଶ୍ୟ ଏଠାରେ ଯୁଗ ଓ ଯୁଗୋପଯୋଗୀ

ରୁଚିର ପାର୍ଥକ୍ୟ ରହିଛି । ତେଣୁ ମୀନା କୁମାରୀଙ୍କ ଠାରୁ ଶିଳ୍ପା ସିରୋଡକର କିମ୍ବା ମମତା କୁଲକର୍ଣ୍ଣି ହୁଏତ ଅଧିକ ସୁନ୍ଦର ।

ଆମ ଚାରିପଟେ ସୌନ୍ଦର୍ଯ୍ୟର ସମ୍ଭାର ଭରିରହିଛି । ଶିଶୁଟିକୁ ଅନାବିଳ ସ୍ନେହରେ ସ୍ତନ ଖୋଲି କ୍ଷୀର ଦେବାରେ ଯେଉଁ ସୌନ୍ଦର୍ଯ୍ୟ ଅଛି, ଯୌନଭୋଗର ଖୋଲା ସ୍ତନର ସେହି ସୌନ୍ଦର୍ଯ୍ୟ ନାହିଁ । ବଗିଚାରେ ପାଚିଲା ଆମ୍ବ ଗଛରେ ଝୁଲିବାରେ ଯେଉଁ ସୌନ୍ଦର୍ଯ୍ୟ, ଖାଇବା ଟେବୁଲ ଉପରେ ଡେମ୍ଫ ନଥିବା ସେହି ଆମ୍ବ ସେତିକି ସୁନ୍ଦର ନୁହେଁ । ବଗିଚାରେ ଗୋଲାପ ଫୁଲର ସୌନ୍ଦର୍ଯ୍ୟ ଏବଂ ଫୁଲ ଦାନୀରେ ଡ୍ରଇଂ ରୁମ୍‌ରେ ଥୁଆ ହୋଇଥିବା ଗୋଲାପର ସେହି ସୌନ୍ଦର୍ଯ୍ୟ ଉପଭୋଗ କରିହୁଏ, ହାତରେ ଧରି ସେହି ସୌନ୍ଦର୍ଯ୍ୟର ମହକ ନଥାଏ । ତଥାପି ବ୍ୟବହାରିକତାର ସୌନ୍ଦର୍ଯ୍ୟର ପ୍ରାଧାନ୍ୟ ଅଧିକ । ଯେପରି ପତ୍ନୀଠାରୁ ପରକୀୟା ଅଧିକ ଉପଭୋଗ୍ୟ । ଯେପରି ପତିଠାରୁ ଅନ୍ୟ ପୁରୁଷ ଅଧିକ ଆକର୍ଷଣୀୟ ।

ତା୪।୬।୯୫



# ସାଲିସ୍

ସାଲିସ ଶବ୍ଦର ତାତ୍ତ୍ୱିକ ଅର୍ଥ, ବ୍ୟବହାରିକ ଅର୍ଥ ଏବଂ ପ୍ରୟୋଗାତ୍ମକ ଅର୍ଥରେ ଭିନ୍ନତା ଅଛି । ରାଜନୀତି କୁଆଡେ ସାଲିସ୍ କରିବାର କଳା(Politics is an art of making Compromise)ବୋଲି କିଏ ପଣ୍ଡିତ କହିଥିଲେ । ଏହାକୁ ଟିକେ ବଦଳାଇ ବିଶ୍ୱନାଥ ପ୍ରତାପ ସିଂହ ରାଜନୀତି ପରସ୍ପର ପରିପନ୍ଥୀ ବିଷୟକୁ (କିମ୍ବା ଲୋକଙ୍କୁ) ଚଲାଇବାର ଏକ କଳା (Politics is the art of managing Contradiction) ବୋଲି କହିଥିଲେ । କିନ୍ତୁ ରାଜନୀତିରେ ହିଁ ସମସ୍ତ ପ୍ରକାର ଆଦର୍ଶର ଅବତାରଣା କରାଯାଇଥାଏ । ବୋଧହୁଏ ଆଦର୍ଶର ଲକ୍ଷ୍ୟ ହାସଲ କରିବାକୁ ଗଲେ ବାଟସାରା ସାଲିସ୍ କରିଯିବାକୁ ହୁଏ । ଆଦର୍ଶର ଲକ୍ଷ୍ୟ ସ୍ଥଳରେ ହୁଏତ ଶେଷରେ ପହଞ୍ଚିବା ସମ୍ଭବ ହୁଏନା । କାରଣ ସାଲିସ୍ କରୁ କରୁ ବାଟ ସରିଯାଏ କିମ୍ବା ସମୟ ଶେଷ ହୋଇଯାଏ । ସାଲିସ୍ ବିନା ରାଜନୀତି ସମ୍ଭବ ନୁହେଁ ବୋଲି ଏକ ଧାରଣା ରହିଛି । ଯିଏ ସାଲିସ୍ କରିବ ନାହିଁ ସେ ଅନନ୍ତକାଳ ପର୍ଯ୍ୟନ୍ତ ସାଲିସ୍‌ହୀନ ସଂଗ୍ରାମ ଚଲାଇ ରଖିବ । ଆଦର୍ଶର ଲକ୍ଷ୍ୟରେ ହୁଏତ ପହଞ୍ଚିବା ସମ୍ଭବ ହେବନାହିଁ । ଏଠାରେ ବାସ୍ତବବାଦୀ ରାଜନେତା ବଳିଷ୍ଠ ଯୁକ୍ତି କରିବେ ଯେ ସାଲିସ୍‌ହୀନ ସଂଗ୍ରାମ କରିଚାଲିଲେ ମଧ୍ୟ ଲକ୍ଷ୍ୟରେ ପହଞ୍ଚିବ ନାହିଁ; କେବଳ ଜୀବନ ଯନ୍ତ୍ରଣା ହିଁ ସାର ହେବ । ଗନ୍ତବ୍ୟରେ ପହଂଚିବାକୁ ହେଲେ ଟିକେ ଟିକେ ସାଲିସ୍ କରିଚାଲିଲେ ଟିକିଏ କ୍ଷମତା ମିଳିପାରେ; କିଛିଟା ସୁଖ ସମ୍ଭୋଗ ମଧ୍ୟ ମିଳିପାରେ, ସ୍ତ୍ରୀ ପିଲାଙ୍କ ଭବିଷ୍ୟତ ପାଇଁ କିଛିଟା ବ୍ୟବସ୍ଥା ହୋଇପାରେ । ହୁଏତ ଆଦର୍ଶ ପଥରେ କିଛି ଲୋକଙ୍କର କିଛି ଉପକାର ମଧ୍ୟ ହୋଇପାରେ । ଆଦର୍ଶ ପାଇଁ ସାଲିସ୍‌ହୀନ ସଂଗ୍ରାମ କରି କରି ହାଡ଼ ପଞ୍ଜରା ଧରି ନିଃଶେଷ ହୋଇଯିବାରେ ଫାଇଦା କ'ଣ ? ଅଧିକାଂଶ ଲୋକଙ୍କ ମନକୁ କଥାଟା ନିଶ୍ଚୟ ଛୁଇଁବ ।

ଏଇ ନକ୍ସଲପନ୍ଥୀଙ୍କ କଥା ଦେଖାଯାଉ । କାନୁ ସାନାଲ, ଚାରୁ ମଜୁମଦାର କି ସୀତା ରାମାୟା କୋଉ ଆଦର୍ଶରେ ପହଞ୍ଚିପାରିଲେ ଯେ, ବିନୋଦ ମିଶ୍ର କି ନାଗଭୂଷଣ ପଟ୍ଟନାୟକ ପୂର୍ବପଥ ତ୍ୟାଗ କରି ହେଲେ କିଛିଟା ସଫଳତା ପାଇଛନ୍ତି । ଶିବଦାସ ଘୋଷ ଯେଉଁଠିଥିଲେ ତାଙ୍କର ଶିଷ୍ୟମାନେ ଯଦି ଠିକ୍ ସେଇଠି ଥାନ୍ତେ ତେବେ ଏସ୍.ୟୁ.ସି.ଆଇ. ଯେଉଁଠି ପହଞ୍ଚିଛି କ'ଣ ଠିକ୍ ସେଇଠି ପହଞ୍ଚିଥାଆନ୍ତା ? ୪୦ ଦଶକର ଶେଷ ଓ ୫୦ ଦଶକର ପ୍ରଥମ ଭାଗରେ ଯେଉଁ କମ୍ୟୁନିଷ୍ଟମାନେ ତେଲେଙ୍ଗାନା ବିପ୍ଳବରେ ଅସ୍ତ୍ରଧାରଣ କରିଥିଲେ ପରେ ସେହି ମତବାଦୀମାନେ ସି.ପି.ଆଇ (ଏମ୍) ସଙ୍ଗଠନରେ ତ କ୍ଷମତା ହାସଲ କରିପାରିଲେ । ଜ୍ୟୋତିବସୁ ଯଦି ବିଦେଶୀ ପୁଞ୍ଜିପତି ଓ ପୁଞ୍ଜି ସହିତ ସାଲିସ୍ ନକରିବେ ତେବେ କ'ଣ ପଶ୍ଚିମବଙ୍ଗରେ ଯେଉଁ ଶିଳ୍ପ ବିକାଶର ଜୁଆର ଏବେ ଛୁଟିଲାଣି ତାହା ସମ୍ଭବ ହୋଇଥାନ୍ତା ? ନେହରୁ ଯଦି ଗାନ୍ଧୀଙ୍କ ପରି ଜିଦ୍ ଧରି ବସିଥାନ୍ତେ, ତେବେ ଦେଶ ବିଭାଜନ ହୁଏତ ହୋଇନଥାଆନ୍ତା କି ନେହରୁ

ତାଙ୍କ ଜୀବଦ୍ଦଶାରେ ପ୍ରଧାନମନ୍ତ୍ରୀ ହୋଇନଥାନ୍ତେ । ଇନ୍ଦିରାଗାନ୍ଧୀ, ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ସ୍ୱପ୍ନରେ ମଧ୍ୟ ସମ୍ଭବ ହୋଇନଥାଆନ୍ତା । ବିଶ୍ୱନାଥ ପ୍ରତାପ ସିଂହ ଯଦି ପରସ୍ପର ବିରୋଧୀ ଦଳ ଓ ନେତାଙ୍କୁ ଚଳାଇ ନପାରିଥାନ୍ତେ ତେବେ କ'ଣ ପ୍ରଧାନମନ୍ତ୍ରୀ ହୋଇପାରିଥାନ୍ତେ ? ବ୍ୟୁରୋକ୍ରାଟମାନେ ଯଦି 'ହଁ ସାର' କିମ୍ବା 'ୟେସ୍ ମିନିଷ୍ଟର ' ଆଚରଣ ନକରୁଥାନ୍ତେ ତେବେ କ'ଣ ଯେଉଁ ଭାବରେ ପ୍ରକୃତ କ୍ଷମତା ଜାହିର କରୁଛନ୍ତି ତାହା କରିପାରୁଥାନ୍ତେ ? ପୋଲିସବାଲା ଯଦି ଧର କହିଲେ ମାର, ମାର କହିଲେ ମର୍ଦ୍ଦନ କରିବାକୁ ପ୍ରସ୍ତୁତ ହେଉନଥାନ୍ତେ ତେବେ କ'ଣ ନିଜପଦବୀ ରକ୍ଷା କରିବା ସମ୍ଭବ ହେଉଥାଆନ୍ତା ?

ଏସବୁ ବଡ଼ବଡ଼ିଆଙ୍କ କଥା ଛାଡନ୍ତୁ । ଆମର ପାରିବାରିକ ଜୀବନରେ ବାପା, ମା, ସ୍ୱାମୀ, ସ୍ତ୍ରୀ, ସନ୍ତାନ ଓ ବନ୍ଧୁବାନ୍ଧବଙ୍କ ସହିତ ସାଲିସ୍ ନକରୁଥିଲେ କ'ଣ ଜୀବନ ହାରାଣ ହୋଇଯାଆନ୍ତା ନି ? ମଦୁଆ ସ୍ୱାମୀକୁ ତାଙ୍କ ସ୍ତ୍ରୀମାନେ ଯଦି ବରଦାସ୍ତ ନକରି ଛାଡପତ୍ର ଦେବାକୁ ବାହାରନ୍ତେ, ତେବେ ଭାରତୀୟ ପରିବାରଙ୍କ ମଧ୍ୟରେ ନିହାତ କମରେ ଶତକଡ଼ା ୧୦ ଭାଗ ପରିବାର ସିଧା ନଷ୍ଟ ହୋଇଯାଆନ୍ତେ । ଉଦଣ୍ଡୀ ପତ୍ନୀ ପାଖରେ ଯଦି ନିରୀହ ପତି ମୁଣ୍ଡ ନ ନୁଆଉଥାନ୍ତେ, ତେବେ କ'ଣ ରାତିରେ ଭଲରେ ଶୋଇପାରୁଥାନ୍ତେ ? ଉପର ଅଫିସରଙ୍କ ମରଜି ନ ଜଗିଲେ କ'ଣ ଭଲ ସି.ସି.ଆର. ମିଳିବା ସମ୍ଭବ ହେଉଥାଆନ୍ତା ? ଏପରିକି ସ୍ୱାମୀ ଓ ସ୍ତ୍ରୀ ଯଦି ପରକୀୟା ପ୍ରେମରେ ଲିପ୍ତ ତେବେ କେତେବେଳେ କେମିତି ଝଗଡା ହେଉଥାଆନ୍ତା । କିନ୍ତୁ ଲୋକଲଜ୍ଜାକୁ ଭୟ କରି କଥାଟା କେମିତି ଘର ଭିତରେ ରହିଯାଉ ଏଥିପାଇଁ ସାଲିସ୍ କରିବା ଛଡା କିଛି ଉପାୟ ନଥାଏ । ଅବଶ୍ୟ ଏପରି ପରକୀୟା ପ୍ରେମ କଥାଟା ଅନେକ ସମୟରେ ସଂପୃକ୍ତ ସ୍ୱାମୀ କିମ୍ବା ପତ୍ନୀଙ୍କ ଛଡା ସାହିପଡିଶା ବନ୍ଧୁବାନ୍ଧବ ସମସ୍ତଙ୍କୁ ଗୋଚର ହୋଇଥାଏ । ବାପ ମା ବୁଢାବୁଢୀ ହେଲେ ସେମାନଙ୍କର ଦାବି ବଢେ । ଆଶା ଓ ପ୍ରତ୍ୟାଶା ମଧ୍ୟ ବଢେ । ପୂରଣ ନହେଲେ ପରିବାରରେ ଅଶାନ୍ତ ବାତାବରଣ ସୃଷ୍ଟି ହୋଇପାରେ । ତେଣୁ କିଛିଟା ସାଲିସ୍ କରିବା ଛଡା ଅନ୍ୟଗତି ନାହିଁ । ସେହିପରି ପିଲାଙ୍କର ଆଜିକାଲି ଯାହା ଦାବି ବଢିଲାଣି ତାହା ପୂରଣ ନକଲେ ବାପାମା'ଙ୍କର ଜୀବନ ହାରାମ ହେଲାଣି । ସାଙ୍ଗ ପିଲା ସାର୍ଟ କିଣିଛି ଛ' ଶହ ଟଙ୍କାର, ଯୋତା କିଣିଛି ଏଗାରଶହ ଟଙ୍କାର । ଆରେ ! ତା'ର ବାପ ବଡ଼ ଅଫିସର ଦରମା ଛଡା ଲକ୍ଷ ଲକ୍ଷ ଟଙ୍କା ଉପର ଆୟ କି କାହାର ବାପ ବଡ଼ ବ୍ୟବସାୟୀ । ତାଙ୍କ ପାଇଁ ପଇସା ବଡ଼ ଶସ୍ତା ହୋଇଯାଇଛି । କିମ୍ବା କେଉଁ କିରାଣି ଏମିତି ଘାଟି ଜାଗାରେ ଅଛି ଯେ, ଦିନକୁ ତା'ର ପାଞ୍ଚଶରୁ ହଜାରେ ରୋଜଗାର ଅଲଗା । ତମେ ମଧ୍ୟ ଅଫିସର । ତମେ ମଧ୍ୟ କିରାଣି । କିନ୍ତୁ ତମ ପାଖରେ ଏତେ ଆୟ କାହିଁ, ଯେଉଁଥିରେ ପୁଅକୁ ଏଗାରଶ ଟଙ୍କିଆ ଯୋତା, ଛ'ଶହ ଟଙ୍କିଆ ସାର୍ଟ କି ହଜାରେ ପନ୍ଦର ଶହ ଟଙ୍କିଆ ଜିନ୍ ପ୍ୟାଣ୍ଟ ଆଣିଦେବ ? ଯଦି ନଦେଇ ପାରିବ, ତେବେ ପିଲା ଯାଇ ତମର ସ୍ମଗଲିଂ କରିବ । ଚୋରା ଡ୍ରଗ ବେପାର କରିବ କିମ୍ବା ଆଉ କ'ଣ ସେମିତି କରିବ । କିଛି ନହେଲେ କୋଉ ରାଜନୈତିକ ଦଳର ବାହୁବଳି ସେନାରେ ଯୋଗ ଦେଇଦେବ । ତାହା ଯଦି ସେ ନକରୁ ବୋଲି ଆପଣ ଚାହାନ୍ତି, ତେବେ ଗୃହିଣୀଙ୍କ ଚାପରେ ଅଫିସ କାମରେ କିଛି ଫାଇଲରେ ଓଲଟା ମୋଲଟା କଲମ ବୁଲେଇ ଅନ୍ୟ ଅଫିସର କି କିରାଣିଙ୍କ ପରି ଉପର ରୋଜଗାର କରିବାକୁ ପଡିବ । ସଚ୍ଚୋଟ ରହିବା ଆଉ ଆଦର୍ଶ ହୋଇ ରହିପାରୁନାହିଁ । ସିଧା ଆଙ୍ଗୁଠିରେ ପରା ଘିଅ

ଉଠେନାହିଁ । ସାଲିସ୍ ନକରିଲେ ତୁମେ ଜଣେ ବୋକା, ନିପାରିଲା ଲୋକ ବୋଲି ପ୍ରମାଣିତ ହେବ । ତମେ ଜଣେ ଆଦର୍ଶବାଦୀ ହେବାମାନେ 'ୟୁସ୍‌ଲେସ' କିମ୍ବା 'ଗୁଡ୍ ଫର ନଥିଙ୍ଗ' ଲୋକ ବିଦ୍ରୂପର ଦୟନୀୟ ଜୀବ ହେବ । ଏବେ ତ ମୋକଦ୍ଦମା ଜିତିବାକୁ ହେଲେ କେବଳ ଆଇନ ଆପଣଙ୍କ ପକ୍ଷରେ ଟାଣୁଆ ହେଲେ ଚଳିବନାହିଁ । ପେସ୍କାରକୁ ଖୁସ୍ ମିଜାଜ୍‌ରେ ନ ରଖିଲେ ହାକିମଙ୍କ ଅନୁଗ୍ରହ ଉପରେ ନିର୍ଭର କରିହେବ ନାହିଁ । ଜଜ୍‌ମାନଙ୍କୁ ମଧ୍ୟ କେଉଁବାଟେ ଧରିବ କିମ୍ବା କେଉଁ ଜଜ୍ ପାଖରେ କେଉଁ ଓକିଲ ଠିଆ ହେଲେ 'ନ୍ୟାୟ' ମିଳିବ ଏହାର ବିଚାର ଏବେ ହେଲାଣି । ସତ୍ୟର ଜୟ ସବୁବେଳେ ହେବା ସମ୍ଭବ ନୁହେଁ । ବିଚାରାଳୟର ନିକିତିକୁ ଟିକେ ନିଜ ଆଡ଼କୁ ନେବା ପାଇଁ କିଛି କୌଶଳ ପ୍ରୟୋଗ କରିବାକୁ ପଡିବ । ମତାଦର୍ଶ ସହିତ ସାଲିସ୍ କରିବାକୁ ହିଁ ହେବ । କିନ୍ତୁ ତଥାପି ମଧ୍ୟ କିଛି ଲୋକ ଏବେ ଅଛନ୍ତି, ଯିଏ ସାଲିସ୍ କରୁନାହାନ୍ତି । ସାଲିସ୍ ନ କରିବା ପାଇଁ ଯେଉଁ ମୂଲ୍ୟ ଦେବାକୁ ପଡୁଛି ବରଂ ତାହା କରିବାକୁ ପଡିବ । ଅନେକ ବର୍ଷ ତଳର ଗୋଟିଏ କଥା ମୋର ଏବେ ମନେ ପଡୁଛି । ମୁଁ ସେତେବେଳେ ରାଜନୈତିକ ଜୀବନରେ ଥିଲି । ଏପରି ଏକ ପରିସ୍ଥିତି ସୃଷ୍ଟି ହେଲା ଯେ ରାଜ୍ୟସ୍ତରୀୟ କମିଟି ଓ କାର୍ଯ୍ୟକାରୀ କମିଟିରେ ଆଗତ ହୋଇଥିବା ଗୋଟିଏ ପ୍ରସ୍ତାବ ସହିତ ମୁଁ ଏକମତ ହୋଇପାରିଲି ନାହିଁ । ତେଣୁ ଯେତେବେଳେ ପ୍ରସ୍ତାବଟି ସର୍ବସମ୍ମତ ଭାବରେ ଗୃହୀତ ହେବାକୁ ବସିଲା, ମୁଁ ମୋର ଭିନ୍ନମତ ଯୋଗୁଁ ସେଥିରେ ସାମିଲ ହେବାକୁ ରାଜି ହୋଇପାରିଲି ନାହିଁ । ତେଣୁ ସେହି ବୈଠକରେ କେତେକ ସହଯୋଗୀ ମୋ ପାଖକୁ ଆସି ମତେ ପ୍ରସ୍ତାବଟିକୁ ସର୍ବସମ୍ମତ କରିବାପାଇଁ ପ୍ରବର୍ତ୍ତାଇବାକୁ ବସିଲେ । ମୁଁ ସେମାନଙ୍କୁ କହିଲି ଯେ, ସେମାନେ ଘରୋଇ ଭାବରେ ମୋ ମତ ସହିତ ଏକମତ ହେଲେ ମଧ୍ୟ ଏହି ବୈଠକରେ ମୋ ସହିତ ସମାନ ମତ କାହିଁକି ପେଶ୍ କରୁନାହାନ୍ତି । ସେମାନେ ରାଜନୈତିକ ବାଧ୍ୟତା ଥିବାରୁ ତାହା କରିପାରୁନାହାନ୍ତି ବୋଲି ଅସହାୟତା ପ୍ରକାଶ କଲେ । ଜଣେ ସହଯୋଗୀ କହିଲେ ଦେଖନ୍ତୁ ସହି ସୁନାରେ ୬ ପଇସାଏ ଖାଦ ନ ମିଶିଲେ ଅଳଙ୍କାର ମଧ୍ୟ ହୋଇପାରୁନାହିଁ । ତେଣୁ କିଛିଟା ସାଲିସ୍ କରିବାକୁ ହେବ । ମୁଁ ଉତ୍ତର ଦେଲି ମୁଁ ଗହଣା ହୋଇ କାହାକୁ ଅଳଙ୍କୃତ କରିବାକୁ ଆଗ୍ରହୀ ନୁହେଁ । ମୁଁ କହିଲି ୨୦୦ରୁ ଉର୍ଦ୍ଧ୍ୱ ସଭ୍ୟ ତ ପ୍ରସ୍ତାବ ଗ୍ରହଣରେ ରାଜି । କେବଳ ମତେ ଜଣକୁ ଛାଡିଦିଅ । ପ୍ରସ୍ତାବଟି ବହୁ ମତରେ ଗୃହୀତ ହେଲା ବୋଲି କୁହାଯାଉ । ପ୍ରସ୍ତାବଟି ସର୍ବସମ୍ମତ କୁହାଯାଉ । ପ୍ରସ୍ତାବଟି ସର୍ବସମ୍ମତ ହେଲା ବୋଲି କୁହାଯାଇ ପାରିଲା ନାହିଁ । ସେହି ଦିନର ସାଲିସ୍ କରିଥିବା ସବୁ ସଭ୍ୟ କିଛି ନା କିଛି ହେଲେ ଓ ପାଇଲେ । କେତେକ ବହୁତ 'ଉପରକୁ' ଚାଲିଯାଇଛନ୍ତି । ମୁଁ ତଳେ ମାଟିରେ ରହିଛି । ମୋର କିଛି ପଶ୍ଚାତାପ କେବେ ଆସିନାହିଁ । ବରଂ ସାଲିସ୍ କରିବା ଅପେକ୍ଷା ରାଜନୀତିରୁ ନିଜକୁ ଅପସାରିତ କରି ଏକ ସୁସ୍ଥ ଏବଂ ସ୍ୱାଧୀନ ଜୀବନଯାପନ କରୁଛି ।

ମୋ ଜୀବନରେ ସାଲିସ୍ ନ କରୁଥିବା କତିପୟ ସରକାରୀ ଅଫିସର ମଧ୍ୟ ମୁଁ ଦେଖିଛି । ରାଜନୀତିଜ୍ଞ ଦେଖିନାହିଁ, ଯେଉଁମାନେ କୌଣସି ନା କୌଣସି ସାଲିସ୍ କରିନାହାନ୍ତି । ସମାଜ ଠାରୁ କିଛି ପାଇବାକୁ ଆଶା କଲେ କିଛି ସାଲିସ୍ ନିଶ୍ଚୟ କରିବାକୁ ହେବ । ତଥାପି କେତେକ ରାଜନୀତିଜ୍ଞ ମୋଟାମୋଟି ସଚ୍ଚୋଟ ଅଛନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା କେତେ ?

୧୮।୬।୯୫

❑❑❑

# କାମ (୧)

କାମ କରିବା ପାଇଁ ସମସ୍ତଙ୍କର ଜନ୍ମ । ଅବଶ୍ୟ କାମ ନକରି ମଧ୍ୟ କେତେକ ଲୋକ ଜୀବନ କାଟି ଦିଅନ୍ତି । ଧରିନିଆଯାଇପାରେ ଯେ, ସେମାନେ କାମ କରିବାକୁ ଜନ୍ମ ହୋଇନାହାନ୍ତି କିମ୍ବା କାମ ନକରିବାକୁ ଜନ୍ମ ହୋଇଛନ୍ତି । ଏପରି ଲୋକଙ୍କ ଅନୁପାତ କମ୍ । ଏହି ଗୋଷ୍ଠୀର ଲୋକଙ୍କୁ ନିକମା ବୋଲି କୁହାଯାଇପାରେ । ନିକମାଙ୍କ ସମ୍ପର୍କରେ ଏକ ପୃଥକ୍ ଆଲୋଚନା କରାଯାଇପାରେ । ଏବେ କାମ କରୁଥିବା ଏବଂ କାମିକା ଲୋକଙ୍କ ସମ୍ପର୍କରେ କିଛିଟା ଆଲୋଚନା କରାଯାଉ ।

ଅନେକଙ୍କୁ ଜନ୍ମ ହେବାର ମାତ୍ର ୩/୪ ବର୍ଷ ମଧ୍ୟରେ କାମ କରିବାକୁ ପଡେ । ଏମାନେ ଖୁବ୍ ଦରିଦ୍ର ଶ୍ରେଣୀର ପରିବାରରେ ଜନ୍ମ ନିଅନ୍ତି । ଦରିଦ୍ର ପରିବାରରେ ସାଧାରଣତଃ ଅଳ୍ପ ବ୍ୟବଧାନରେ ଛୁଆ ଜନ୍ମ ହୁଅନ୍ତି । ତେଣୁ ଛୁଆଟି ତିନିବର୍ଷ କି ଚାରିବର୍ଷ ହେଲେ ସାନ ଛୁଆକୁ ଜଗିବା କାମ ପ୍ରଥମେ ପଡିଥାଏ । ଏହି ଶିଶୁଟି ତିନିବର୍ଷରୁ କାମ କରିବା ଆରମ୍ଭ କରିବା ଦ୍ୱାରା କାମ କରି ବଞ୍ଚିବାକୁ ହେବ, ଏହି ମାନସିକତା ତାହାଠାରେ ମୂଳରୁ ବେଶ୍ ଜମିଯାଏ । ସେ ଅନାୟାସରେ ସ୍ୱଭାବସୁଲଭ ଢଙ୍ଗରେ କାମ ଆଦରି ନିଏ । ଯେତିକି ବଡ ହେଉଥାଏ, ସେତିକି ମାତ୍ରାରେ ତା' ଉପରେ କାମର ମାତ୍ରା ବଢୁଥାଏ । ଏହି କ୍ରମରେ ବାସନ ମାଜିବା, ଘର ଝାଡୁ କରିବା, ବଡ (ଧନୀ) ଲୋକଙ୍କ ଛୁଆ ଜଗିବା କିମ୍ବା କାଖେଇବା; ଗାଈ ଚରେଇବା, ଘାସ କାଟିବା, ଟ୍ରଲି ରିକ୍ସା ଟାଣିବା, ଟହଲଟୁକର କରିବା, ଗ୍ୟାରେଜରେ ବଡ ମିସ୍ତ୍ରୀ ପାଖରେ ସାହାଯ୍ୟ କରିବା, ହାଟରେ ବସି ବାପାକୁ ପରିବା ବିକିବାରେ ସାହାଯ୍ୟ କରିବା ଓ ଚାଷକାମ ଆଦି ଯାବତୀୟ ଗଠନମୂଳକ ଉତ୍ପାଦନମୁଖୀ କାମରେ ଏମାନେ ନିଜକୁ ନିୟୋଜିତ କରନ୍ତି । ୮/୧୦ ବର୍ଷ ବେଳକୁ ଏହିମାନଙ୍କର କାମର ଶକ୍ତି ଓ ଆବଶ୍ୟକତା ବଢିଯାଏ ଏବଂ ଏମାନେ କୁଟୀରଶିଳ୍ପ, କ୍ଷୁଦ୍ରଶିଳ୍ପ ଏବଂ ଅନ୍ୟାନ୍ୟ ଶିଳ୍ପରେ କାମରେ ନିଯୁକ୍ତ ହୋଇଯାଆନ୍ତି । ଯଦି ସାମାଜିକ, ମନସ୍ତାତ୍ତ୍ୱିକ ଓ ଅର୍ଥନୈତିକ ସ୍ତରରେ ଏମାନଙ୍କର ଉତ୍ପାଦନମୁଖୀ କାମର ସର୍ବେକ୍ଷଣ ଏବଂ ଅନୁଶୀଳନ କରାଯାଏ, ତେବେ ଜଣାପଡିବ ଯେ, ଦେଶର ସମଗ୍ର ଉତ୍ପାଦନର ଅନ୍ୟୁନ ୧୦ ପ୍ରତିଶତ ଏମାନଙ୍କ ଦ୍ୱାରା ହେଉଛି । କିନ୍ତୁ ଅଧିକାଂଶଙ୍କୁ ମଜୁରି ଆକାରରେ କିଛି ମିଳୁନାହିଁ କିମ୍ବା ଯାହା ମିଳୁଛି, ତାହା ସେମାନଙ୍କର ଉଚିତ୍ ପ୍ରାପ୍ୟ ଠାରୁ ଯଥେଷ୍ଟ କମ୍ । ଏମାନଙ୍କୁ ଶିଶୁ ଶ୍ରମିକ ଆଖ୍ୟା ଦିଆଯାଉଛି । ମିଳିତ ଜାତିସଂଘ, ବିଶ୍ୱବ୍ୟାଙ୍କ, ଜାତୀୟ ସରକାରମାନେ ଆନ୍ତର୍ଜାତିକ ଶିଶୁବର୍ଷ ଆଦି ପାଳନ କରନ୍ତି । ଏହି ଶିଶୁ ଶ୍ରମିକ 'ଲୋପ' କରିବା ପାଇଁ ପଞ୍ଚତାରକା ହୋଟେଲମାନଙ୍କରେ 'ବିଶାରଦ'ମାନଙ୍କର ସମ୍ମିଳନୀ ଓ ସେମିନାର ହୁଏ । ଆଇନ ପାସ୍ ହୁଏ ଏବଂ

ଆଇନରେ ସଂଶୋଧନ ମଧ୍ୟ ହୁଏ । କିନ୍ତୁ ଏହି ଶିଶୁମାନଙ୍କୁ କାମରୁ ନିବୃତ କରିବା ପାଇଁ ସେମାନଙ୍କର ପିତାମାତା, ଭାଇଭଉଣୀ ପ୍ରଭୃତିଙ୍କର ଆର୍ଥିକ ସଂସ୍ଥାନ କିପରି ହେବ, ତାହାର କୌଣସି ନିର୍ଦ୍ଦିଷ୍ଟ ସୂତ୍ର କଥା କେହି କହନ୍ତି ନାହିଁ । ତେଣୁ ଏହି ଶିଶୁମାନଙ୍କୁ କାମ କରିବାକୁ ହେବ । ନଚେତ୍ ସେମାନେ ଉପାସ ରହିବେ । ଭାରତୀୟ ସମାଜରେ ଅର୍ଥନୈତିକ ବ୍ୟବସ୍ଥାରେ ଏହି ଶିଶୁମାନଙ୍କୁ କାମରୁ ବଞ୍ଚିତ କରିବା ଅର୍ଥ ସେମାନଙ୍କୁ ଭୋକିଲା ଛାଡିଦେବା । ସେମାନଙ୍କୁ କାମର ଅଧିକାର ଦେବାକୁ ହେବ । କାରଣ ସେମାନଙ୍କୁ ଗ୍ରାସାଚ୍ଛାଦନ ଯୋଗାଇ ସ୍କୁଲକୁ ଆଣିବାର କୌଣସି ବିକଳ୍ପ ପନ୍ଥା କିମ୍ବା ସଠିକ୍ କାର୍ଯ୍ୟକ୍ରମ ନାହିଁ । ଏହିମାନେ ହିଁ ଜନ୍ମରୁ କାମ କରିବାକୁ ଜନ୍ମ ହୋଇଛନ୍ତି ।

କାମ ଯେଉଁମାନେ କରୁଛନ୍ତି ବୋଲି କୁହାଯାଉଛି, ସେମାନଙ୍କ ମଧ୍ୟରେ ବହୁ କିସମର ଲୋକ ଅଛନ୍ତି । କିନ୍ତୁ ଏମାନଙ୍କ ମଧ୍ୟରେ ଗୋଟିଏ କିସମର ଲୋକ ଅଛନ୍ତି, ଯେଉଁମାନେ ବିଶେଷ କିଛି କାମ ନକରି ରୋଜଗାର କରୁଛନ୍ତି । ଶତକଡା ୫୦ ଭାଗ ସରକାରୀ କର୍ମଚାରୀ ଏହି କିସମରେ ଯିବେ । ଆମ ଓଡ଼ିଶା ସେକ୍ରେଟାରିଏଟ୍‌ରେ କେବଳ ଅନ୍ୟୂନ ୪ ହଜାର କର୍ମଚାରୀ ଅଛନ୍ତି ଯେଉଁମାନେ କିଛି କାମ କରନ୍ତି ନାହିଁ । କାମ ନକରିବା ଯେପରି ସେମାନଙ୍କର ଜନ୍ମଗତ ଅଧିକାର । ଆଉ ଯେଉଁ ଶତକଡା ୫୦ ଭାଗ ଅଛନ୍ତି, ସେମାନଙ୍କ ମଧ୍ୟରୁ ଶତକଡା ୯୦ ଭାଗ ଉଦ୍ଦିଷ୍ଟ କାମ ନକରି 'ଅକାମ' ଗୁଡିଏ କରନ୍ତି । ଫାଇଲରେ ନୋଟ ଲେଖିଲାବେଳେ କେତେ ଅଧିକ ନାସ୍ତିବାଚକ ଯୁକ୍ତି ବାଢିହେବ, ତାହା ହିଁ ସେମାନଙ୍କର କାମ । କାମଟି କାହିଁକି ନହୋଇପାରିବ, ସେଥିପାଇଁ ବଳିଷ୍ଠ ଯୁକ୍ତି ବାଢିବା, ପୁରୁଣା ଫାଇଲରୁ ଛିଣ୍ଡା ସର୍କୁଲାର କାଢି ତାହାର ନଜିର ଦେବା ଆଦି 'କାମ' ତାଙ୍କର । ଅଫିସରମାନେ ଅନେକ ସମୟରେ ଏହି ଅଫିସ ନୋଟରେ ଭୂଆଁ ବୁଲାନ୍ତି । ଏହି କାମ ପାଇଁ ସେମାନେ ଉତ୍କୋଚକୁ ଅପେକ୍ଷା ରଖିଥାନ୍ତି । 'ପାର୍ଟି' ବା ସଂପୃକ୍ତ ଆବେଦନକାରୀ କିମ୍ବା ହିତାଧିକାରୀ ଆସି ଏମାନଙ୍କୁ 'ଖୁସି' କଲେ ପୁଣି ଫାଇଲ ନୋଟଟି ହସିବା ଆରମ୍ଭ କରେ । ହସ ହସ ମୁହଁରେ ସେ ଫାଇଲଟି ଉପରକୁ ଉଠିଲା ବେଳେ ଡେପୁଟି ସେକ୍ରେଟାରୀ କିମ୍ବା ଡାଇରେକ୍ଟରଙ୍କ ପାଖରେ ପୁଣି 'କ୍ୱେରି'(Query) ହୋଇ ଫାଇଲ ଫେରିଆସେ । ଇଂରାଜୀ ଶବ୍ଦ 'କ୍ୱେରି'ର ଅଭିଧାନିକ ଅର୍ଥ ହେଲା ପ୍ରଶ୍ନ । ସାଧାରଣତଃ ଆପତ୍ତିଜନକ କିମ୍ବା ସଂଦେହମୂଳକ ପ୍ରଶ୍ନ । ଏବେ 'କାମ'ଟି କରିବାକୁ ଡେପୁଟି ସେକ୍ରେଟାରୀ ସ୍ତରରେ ମଧ୍ୟ ପଇସା ଦେବାକୁ ପଡିଲାଣି । ମୁଁ ତିନି ଚାରିଟି ଘଟଣା ଜାଣିଛି; ଯେଉଁଥିରେ ଡେପୁଟି ସେକ୍ରେଟାରୀ ତିନି ଚାରି ହଜାର ନେଲେ ଯାଇ କାମ କରୁଛନ୍ତି । ଯେଉଁ କାମଟିକୁ ମାସ ମାସ ଧରି ଅବଜେକ୍‌ସନ କରି ଆସିଥିଲେ, ପଇସା ପାଇବାର ପରଦିନ 'କାମ'ଟି କରି ଫାଇଲ ଛାଡିଦେଲେ । ପ୍ରମାଣ କରିବାକୁ କହିଲେ ମୁଁ ପ୍ରମାଣ କରିପାରିବିନି । କିନ୍ତୁ ଫାଇଲଟିକୁ ଅନୁଧ୍ୟାନ କଲେ କଥାର ସତ୍ୟତାଟି ଉପଲବ୍ଧି କରିହେବ । ସରକାରୀ କଳରେ କାମ କରାଇବାକୁ 'ଦାମ୍' ଦେବାକୁ ପଡୁଛି । ପ୍ରତିଦିନ ଏପରି ଘଟଣା ସମଗ୍ର ରାଜ୍ୟରେ ହଜାର ହଜାର ସଂଖ୍ୟାରେ ଘଟୁଛି । ଆଉ କେତେକ ଜାଗାରେ ଏହି 'ଦାମ୍' ଦେବା ବ୍ୟବସ୍ଥାଟି ଅତି ସ୍ୱୀକୃତ । ଥାନା, ସବ୍‌ରେଜିଷ୍ଟ୍ରିଖାନା, କୋର୍ଟ, କଚେରୀ, ତହସିଲଦାର, ଆର୍.ଆଇ. ଅଫିସ, ସେଲଟ୍ୟାକ୍ସ ଅଫିସ, ଆର୍.ଟି.ଓ. ଆଦି ବହୁ ସ୍ଥାନରେ

'କାମ' କରାଇବାକୁ 'ଦାମ୍' ଦେବାକୁ ପଡେ । କେହି ଆଉ ସେ କଥା ବିଶେଷ ମନକୁ ଘେନୁନାହାନ୍ତି । ରେଳଯାତ୍ରା ପାଇଁ ରିଜର୍ଭେସନ ନଥିଲେ ମଧ ବର୍ଥଟି ପାଇଁ ଭଲ କିଛି ଦେବାକୁ ପଡେ । ଏବେ ଡାକ୍ତରଖାନା ମାନଙ୍କରେ ଡାକ୍ତର, ନର୍ସ, ବେହେରା, ଏକ୍ସ-ରେ ଟେକ୍‌ନିସିଆନ୍ ଆଦିମାନଙ୍କୁ ନଦେଲେ 'କାମ'ଟି ହେଉନାହିଁ ।

କାମ କରିବାକୁ ଏବେ ଟରଣୀ, ମିଡଲମ୍ୟାନ୍, କନସଲ୍‌ଟାଣ୍ଟ, ଏଜେଣ୍ଟମାନେ ରହିଲେଣି । କେଉଁ ମନ୍ତ୍ରୀଙ୍କ ପାଖରେ କାହାକୁ 'ଧରିଲେ' କାମଟି ହେବ, ଜାଣିବା କଥା । କେଉଁ ଅଫିସରଙ୍କୁ କାହାକୁ 'ଧରିଲେ' କାମଟି ହେବ, ତାହାର ଟେର ବାହାର କରିବାକୁ ହେବ । କିନ୍ତୁ ଏମାନେ ସମସ୍ତେ କାମ କରିବାକୁ ନିଯୁକ୍ତ ହୋଇଛନ୍ତି । ଟିକସଦାତାର ପଇସାରେ ଦରମା, ଭତ୍ତା, ପେନସନ ଆଦି ଯାବତୀୟ ଖର୍ଚ୍ଚ ପାଉଛନ୍ତି । ଅର୍ଥାତ୍ ଏମାନେ 'କାମ' କରୁନାହାନ୍ତି ।

ଆଉ ଗୋଟିଏ ଦିଗକୁ ଆଖି ଫେରାଇଲେ ଦେଖିବେ, କାମ ନକରି ଗୁଡାଏ ଲୋକ 'ଧାରଣା'ରେ ବସିଛନ୍ତି । ଅଧିକ ଦରମା, ମହଙ୍ଗା ଭତ୍ତା, ଆଉ କେତେ କ'ଣ ଦାବି ପୂରଣ କରିବାକୁ କାମ ଛାଡିଦେଇ 'ଧର୍ମଘଟ' କରିବା ଓ ଧାରଣା ଦେବା ମଧ ଏକ ଦୈନନ୍ଦିନ ଘଟଣା ହୋଇଗଲାଣି । ଏଥିରେ ଅନ୍ୟମାନଙ୍କ ମଧରେ ଆମ ସ୍କୁଲ ଶିକ୍ଷକମାନେ ଅଗ୍ରଗାମୀ ଭୂମିକାରେ ଅଛନ୍ତି । ପ୍ରତିବର୍ଷ ଏମାନେ କୌଣସି ନା କୌଣସି ଦାବିପତ୍ର ଉପସ୍ଥାପିତ କରି ଦାବି ପୂରଣ ଆଳରେ କାମ ନକରି ଏଠି ସେଠି ବସି ରହୁଛନ୍ତି । କିଛି ଲୋକ ବସୁଛନ୍ତି । ଅନ୍ୟମାନେ କାମଦାମ ଛାଡି 'ଷ୍ଟ୍ରାଇକ୍'ରେ ମାତୁଛନ୍ତି । କାମ ନକରିବା ହେଲା ଏମାନଙ୍କର ଅସଲ ମତଲବ । ଏମାନଙ୍କୁ ହିନ୍ଦିରେ କାମଚୋର ବୋଲି କୁହାଯାଏ । ମୋ ଘର ସାମ୍ନାରେ ଗୋଟାଏ ବିଶାଳ ସରକାରୀ ଉଦ୍ୟାନ । ଏଠାରେ କେତେଶହ ଶ୍ରମିକ କାମ କରନ୍ତି । ଏହି ଲେଖାଟି ଲେଖିଲା ବେଳକୁ ମୋ ଝରକା ବାଟେ ଦେଖୁଛି ପ୍ରାୟ ୫୦ ଜଣ ପୁରୁଷ ଓ ମହିଳା ଶ୍ରମିକ ଟ୍ରାକ୍ଟରରେ ଚାଷ ହୋଇଥିବା ଏକ ଜମିରେ ଧାଡିଟିଏ କରି ବସି ରହିଥିଲେ । ପ୍ରାୟ ଘଣ୍ଟାଏ ବସିବା ପରେ ସାମାନ୍ୟ ଝିପିଝିପି ବର୍ଷା ପଡିଲା । ସେମାନେ ହଠାତ୍ ଉଠି ଚାଲିଗଲେ । ଝିପିଝିପି ବର୍ଷା ମଧ ଛାଡିଗଲା । ସେମାନେ କିନ୍ତୁ ଆଉ ଫେରିଲେ ନାହିଁ । ଏହି ଏକାମ୍ରକାନନର ଆନୁଷ୍ଠାନିକ ନାମ ହେଲା ଆଞ୍ଚଳିକ ଉଦ୍ଭିଦ ସମ୍ବଳ କେନ୍ଦ୍ର । ଏଠାରେ ମୁଖ୍ୟତଃ ଆଦିବାସୀ ଶ୍ରମିକ କାମ କରନ୍ତି । ଏମାନଙ୍କୁ ଦଳୀୟ ଟ୍ରେଡ ୟୁନିଅନ ସଂଗଠନ ତରଫରୁ ସଂଗଠିତ କରାଯାଉଛି । ଅଧିକାଂଶ ସମୟରେ ଏମାନେ କାମ ନକରି ସ୍ଲୋଗାନ ଦେଇ ଶୋଭାଯାତ୍ରାରେ ବାହାରୁଛନ୍ତି । ପ୍ରତିଷ୍ଠାନର ନିର୍ଦ୍ଦେଶକ ଏହାର କୌଣସି ସଫଳ ପ୍ରତିକାର କରିବା ପରି ଜଣାପଡୁନାହିଁ । ଅଥଚ ଏହି ଆଦିବାସୀମାନେ ନିଜ ଗାଁରେ କେଉଁ ଅବସ୍ଥାରେ ଥିଲେ ଏବଂ ଅନ୍ୟମାନେ ଏବେ ମଧ କିପରି ଅବସ୍ଥାରେ ଅଛନ୍ତି ? କିଏ କହିପାରେ ମୁଁ ସେମାନଙ୍କର ଦାବି ପ୍ରତି ସହାନୁଭୂତିଶୀଳ ନୁହେଁ । ଭୁଲ କଥା । ସେମାନେ ଯଦି ଶୋଷିତ ହେଉଛନ୍ତି ତେବେ ନିଜର ଦାବି ପାଇଁ ଲଢିବେ । କିନ୍ତୁ ନିଜର ନିର୍ଦ୍ଧାରିତ କାମ ନକରି ମଜୁରି କିମ୍ବା ଦରମା ନେବାର ଦୃଶ୍ୟ ମୁଁ ଦେଖୁଛି । ଶ୍ରମିକ

ନେତାମାନେ ଏମାନଙ୍କୁ କାମ କରିବା ପାଇଁ ଜୋର ଦେବା ପରିବର୍ତ୍ତେ କାମ ନକରି ମଜୁରି ନେବାର ପ୍ରବୃତ୍ତିରେ ଦୀକ୍ଷିତ କରିଛନ୍ତି ।

ଶତକଡା ଯେଉଁ ୧୦ ଭାଗ ଲୋକ ନିଷ୍ଠାର ସହିତ କାମ କରୁଛନ୍ତି, ସେମାନଙ୍କ ଯୋଗୁଁ ଏ ଦେଶ ଚାଲିଛି । ଯଦି ଶତକଡା ୧୦୦ ଲୋକ ଶତକଡା ୧୦୦ ନିଷ୍ଠାର ସହିତ କାମ କରିବେ, ତେବେ ଆମର କ'ଣ ଏ ବୁଭୁକ୍ଷୁ ଅବସ୍ଥା ରହିବ ? ଭାବନ୍ତୁ । କାମ କରିବା ଓ ନକରିବା ମଧ୍ୟରେ ଫରକ କ'ଣ ବୁଝିବାକୁ ଚେଷ୍ଟା କରନ୍ତୁ ।

ଆଉ ଏକ ଗୋଷ୍ଠୀ କଥା କହି ଏ ବିଷୟଟି ଶେଷକରେ । ଏମାନେ ହେଲେ ବେକାର ଗୋଷ୍ଠୀ । ଏବେ ବିଭିନ୍ନ ବେକାର ଗୋଷ୍ଠୀଙ୍କର ସଂଗଠନ ସବୁ ହେଲାଣି । ଏମାନେ 'କାମ' ପାଇବା ପାଇଁ ଦାବିପତ୍ର ରଖୁଚନ୍ତି । ଧାରଣା ଦେଉଛନ୍ତି । ଶୋଭାଯାତ୍ରା କରୁଛନ୍ତି । ଅସଲରେ ଏମାନେ 'ଚାକିରି' ଖୋଜୁଛନ୍ତି; କାମ ନୁହେଁ । ଚାକିରିର ଅଭାବ ଅଛି । କାମର ନୁହେଁ । କିନ୍ତୁ ଚାକିରି ଓ କାମ ଭିତରେ ପ୍ରଭେଦ କ'ଣ ସେକଥା ବୁଝାଇବାକୁ କାହାକୁ ଫୁରସତ ଅଛି ?

ତା୨୫।୬।୯୫



# ଜନ୍ମ

ମୁଁ ଜ୍ୟୋତିଷଙ୍କ ଉପରେ ବିଶ୍ୱାସ କରେନାହିଁ । ତେଣୁ ଜ୍ୟୋତିଷୀ ଉପରେ ନିର୍ଭର କରେ ନାହିଁ । ଜ୍ୟୋତିଷୀ ବିଜ୍ଞାନସିଦ୍ଧ ବୋଲି କେତେକ କହନ୍ତି । ଯେହେତୁ ମୁଁ ସେ ପଥର ପଥିକ ନୁହେଁ, ସେ ବିତର୍କ ଭିତରକୁ ପଶିବାକୁ ଚାହେଁନା । ଜନ୍ମ ଶୁଭ କି ଅଶୁଭ ମୁଁ କହିପାରିବିନି । କିନ୍ତୁ ଯାହା ପୃଥିବୀରେ ଦେଖୁଛି ଜନ୍ମଟା ଗୋଟାଏ ଅଶୁଭ କିମ୍ବା ଅନାକାଂକ୍ଷିତ ପରି ମନେହେଉଛି । ଏଇ ଆମ ଭାରତ ବର୍ଷ କଥା ଦେଖାଯାଉ । ଏଠାରେ ଏତେ ଜନ୍ମସଂଖ୍ୟା ବଢୁଛି ଯେ, ଆମେ ସବୁ ଊର୍ଦ୍ଧ୍ୱଶ୍ୱାସ ଭୋଗ କରୁଛୁ । ଆମ ସରକାର ଲୋକସଂଖ୍ୟା ଅର୍ଥାତ୍ ଲୋକଶକ୍ତିକୁ ବଡ ଅଲୋଡା ଏବଂ ଅଦରକାରୀ ବୋଲି ଭାବୁଛନ୍ତି । ସ୍ୱାସ୍ଥ୍ୟ ସହିତ 'ପରିବାର ନିୟନ୍ତ୍ରଣ' ଯୋଜନା ଏବେ ସ୍ୱାସ୍ଥ୍ୟ ଓ 'ପରିବାର କଲ୍ୟାଣ' ଯୋଜନାରେ ପରିଣତ ହୋଇଛି । ପରିବାର ନିୟନ୍ତ୍ରଣ ଯେପରି ଅସଫଳ ହେଲା ପରିବାର କଲ୍ୟାଣ ତା'ଠାରୁ ଅଧିକ ଅସଫଳ ହେଲା । ଏସବୁ ମୂଳରେ ଜନ୍ମ ହିଁ ଅସଲ ସମସ୍ୟା । ଜନ୍ମ ବଢିଛି ଓ ମୃତ୍ୟୁ କମିଛି । ପ୍ରତିବର୍ଷ ଭାରତର ଲୋକସଂଖ୍ୟା ଦେଢ କୋଟିରୁ ଅଧିକ ବଢୁଛି । ଅର୍ଥାତ୍ ଯେତିକି ଜନ୍ମ ହେଉଛନ୍ତି ତାହାକୁ ଯେତିକି ମରୁଛନ୍ତି ସାଙ୍ଗରେ ମଜୁରା କରିସାରିଲା ପରେ ବର୍ଷକୁ ଦେଢ କୋଟି ଲୋକସଂଖ୍ୟା ବଢୁଛି । ଲୋକସଂଖ୍ୟା ଦୃଷ୍ଟିରୁ ପ୍ରତିବର୍ଷ ଆମ ଦେଶରେ ଆଉ ଗୋଟିଏ ଶ୍ରୀଲଙ୍କା, କି ଅଷ୍ଟ୍ରେଲିଆ, କି ଇରାକ, କି କାନାଡା, କି ଚେକୋସ୍ଲୋଭାକିଆ, କି ଦୁଇଟି ବୁଲଗେରିଆ ଯୋଡି ହୋଇଯାଉଛି । ତଥାପି ଜନ୍ମ ପାଇଁ ପ୍ରବଳ ଆଗ୍ରହ ରହିଛି ଏଠାରେ । ଭାରତବର୍ଷରେ ପୁଣି ଶିଶୁ ମୃତ୍ୟୁହାର ଅନ୍ୟ ଦେଶମାନଙ୍କଠାରୁ ଯଥେଷ୍ଟ ଅଧିକ । ତାହାଛଡା ପ୍ରସବ ମୃତ୍ୟୁହାର ଭାରତୀୟ ମହିଳାମାନଙ୍କ ମଧ୍ୟରେ ଅନେକ ଦେଶଠାରୁ ଅଧିକ । ତଥାପି ଆମର ଜନ୍ମସଂଖ୍ୟା ଆମ ପାଇଁ ଏତେ ବିପଦ ସୃଷ୍ଟି କରିଛି । ଜନ୍ମ ସେଥିପାଇଁ ସମୁଦାୟିକ ସ୍ତରରେ ଅଶୁଭ କିମ୍ବା ଅନାକାଂକ୍ଷିତ । ଏହେଲା ଜନ୍ମର ଗୋଟିଏ ଦିଗ ।

ଆଉ ଗୋଟାଏ ଦିଗ ହେଲା ନିଃସନ୍ତାନମାନଙ୍କ ପାଇଁ ଜନ୍ମ କେତେ ଆକାଂକ୍ଷିତ । ଯେଉଁ ଦମ୍ପତିଙ୍କର ସନ୍ତାନଟିଏ ନାହିଁ ସେ ଡାକ୍ତରଙ୍କ ପିଛା ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଛନ୍ତି । ଠାକୁର ଠାକୁରାଣୀଙ୍କ ପାଖରେ ପୂଜା ଆଉ ମାନସିକ କରୁଛନ୍ତି । ଜନ୍ମଟିଏ ପାଇଁ ବାବା, ମାତା, ଜ୍ୟୋତିଷ ଆଦିଙ୍କ ପାଖକୁ ଦଉଡୁଛନ୍ତି । ଏବେ ଆଧୁନିକ ଚିକିତ୍ସା ବିଜ୍ଞାନରେ ସନ୍ତାନ ଜନ୍ମ (Fertility clinic) କ୍ଲିନିକକୁ ଦଉଡୁଛନ୍ତି । ଜନ୍ମଟା ସେମାନଙ୍କ ପାଇଁ ଅତ୍ୟନ୍ତ ଆବଶ୍ୟକ । ପୁଣି ଥୋଡାଏ ଲୋକ ପୁତ୍ର ସନ୍ତାନ ନପାଇ ପାଞ୍ଚ କି ସାତ ଝିଅ ହେଲାପରେ ମଧ୍ୟ ସନ୍ତୁଷ୍ଟ ନହୋଇ ପତ୍ନୀଙ୍କ ଜରାୟୁକୁ ଫୁରସତ ଦେବାକୁ ରାଜି

ନୁହଁନ୍ତି । ଆଉ କେତେକ ଗୋଟିଏ ସ୍ତ୍ରୀଠାରୁ ସନ୍ତାନ ନପାଇ ଆଉ ଗୋଟିଏ ପତ୍ନୀ ଯୋଗାଡ କରୁଛନ୍ତି ସେହି ଜନ୍ମ ଆଶାରେ । ଗୋଟିଏ ପତ୍ନୀଙ୍କଠାରୁ ଚାରିଟି କନ୍ୟା ଜନ୍ମ ହେବା ପରେ ଆଉ ଗୋଟିଏ ପତ୍ନୀ ଦରକାର ପଡୁଛି ପୁତ୍ରସନ୍ତାନପାଇଁ । ଅବଶ୍ୟ ଏପରି ଦମ୍ପତି ଏବେ ବାହାରିଲେଣି ଯେଉଁମାନେ ଗୋଟିଏ କିମ୍ବା ଦୁଇଟି ଝିଅ ପାଇଲାପରେ ପୁତ୍ର ସନ୍ତାନ ଆଶାରେ ଆଉ ଚେଷ୍ଟା ନକରି ସନ୍ତୁଷ୍ଟ ଜୀବନଯାପନ କରୁଛନ୍ତି । ଜନ୍ମ ଏକ ଘାଟୀସ୍ଥଳ ।

ଜନ୍ମର ଆଉ ଏକ ଦିଗହେଲା । ଶିଶୁଟି କେଉଁଠି ଜନ୍ମ ନେଲା । ଏଇଠି ମୋର ନିଜର ଏକ ଜୀବନ ଘଟଣା ମନେପଡୁଛି । ମୋର ସାନପୁଅ ଟିକେ ତାଜା ବୁଦ୍ଧିଆ ପିଲା । ସାନପିଲା ଭାବରେ ପରିବାରରେ କେବଳ ଗେହ୍ଲା ନୁହେଁ, ବନ୍ଧୁବାନ୍ଧବ ଓ ସଂପର୍କୀୟମାନେ ମଧ୍ୟ ତାର ଚହଟ ବୁଦ୍ଧି ପାଇଁ ତାକୁ ଭଲ ପାଆନ୍ତି । ବେଶୀ ଗେହ୍ଲା ହେଲେ ଯେମିତି ପିଲା ବିଗିଡି ଯାଆନ୍ତି ସେପରି ଆଶଙ୍କା କରି ତାକୁ ମୁଁ ଦିନେ କହିଲି, ତୁ ବେଶି ଅୟସିଆ ହୋଇଗଲୁଣି । ଆଚ୍ଛା ତୁ ଯଦି ଏଠି ଜନ୍ମ ନହୋଇ କୋଉ ଗରିବ ଚାଷୀଘରେ କି ରିକ୍ସାବାଲା ଘରେ ଜନ୍ମ ହୋଇଥାନ୍ତୁ ତେବେ ତୁ କେଉଁ ଅବସ୍ଥାରେ ଥାଆନ୍ତୁ ? ସେ ସେତେବେଳେ କଲେଜରେ ପାଦ ଦେଲାଣି । ବୟସ ବୋଧହୁଏ ଷୋହଳ କି କ'ଣ ହେବ । ସେ ଚଟକରି ଉତ୍ତର ଦେଲା: ବାବା ଆପଣ କାହିଁକି ମତେ ଭାବିବାକୁ କହୁଛନ୍ତି ଯେ ମୁଁ ଗୋଟିଏ ମୂଲିଆ କି ରିକ୍ସାବାଲା ଘରେ ଜନ୍ମ ହୋଇଥାନ୍ତି ? ମୁଁ କାହିଁକି ରାଜୀବ ଗାନ୍ଧୀର ପୁଅ ହୋଇନଥାନ୍ତି ? ମୁଁ ଧୀରୁଭାଇ ଅମ୍ବାନୀର ପୁଅ ଭାବରେ ବି ଜନ୍ମ ହୋଇପାରିଥାନ୍ତି । ତାହା ହେଲେ ମୁଁ ଏଠିକାଠୁ ଆଉ କେତେ ଅୟସରେ ଥା'ନ୍ତି ଆପଣ ଭାବିଲେ । ମୁଁ ଆଉ କିଛି ଉତ୍ତର ଦେଇପାରିବା ଅବସ୍ଥାରେ ନଥିଲି । ମୋର କହିବାର କଥା ଜନ୍ମ ଗୋଟାଏ ଅପ୍ରତ୍ୟାଶିତ ଘଟଣା । ଯାହାକୁ ଇଂରାଜୀରେ କହନ୍ତି Birth is an Accident . Accidentର ଅର୍ଥ ସାଧାରଣତଃ ଦୁର୍ଘଟଣା ବୋଲି ବୁଝାଯାଏ । କିନ୍ତୁ ଏହାର ପ୍ରକୃତ ଅର୍ଥ ଏକ ଅପ୍ରତ୍ୟାଶିତ ଘଟଣା । ଯାହା ଘଟିବାବେଳେ କିମ୍ବା ଘଟିବା ପୂର୍ବରୁ ଜାଣିହୁଏନା । କିମ୍ବା ଏପରି ଘଟିବା ଆଗରୁ ଭାବିହୁଏନା କିମ୍ବା କହିହୁଏନା । ଜନ୍ମ ଏହିପରି ଏକ ଅପ୍ରତ୍ୟାଶିତ ଅସମ୍ଭାବ୍ୟ ଘଟଣା । ଯେଉଁ ଶିଶୁଟି ଦରିଦ୍ର କାରଖାନା ଶ୍ରମିକ ଘରେ ଜନ୍ମ ହୁଏ, ସେହି ଶିଶୁଟି ହୁଏତ (ଏବଂ ଯଦି) ସେହି କାରଖାନା ମାଲିକର ଘରେ ମଧ୍ୟ ଜନ୍ମ ହୋଇପାରିଥାନ୍ତା, ତେବେ ଏହି ଦୁଇପ୍ରକାର ଜନ୍ମ ମଧ୍ୟରେ ମୂଳରୁ କେତେ ପ୍ରଭେଦ ରହିଯାଆନ୍ତା । ତଥାପି ଜନ୍ମ ଏକ ଘଟଣା ଅଥବା ଦୁର୍ଘଟଣା ଆକ୍ସିଡେଣ୍ଟ ଅର୍ଥରେ । ଏଇଠି ଆସୁଛି କୌଳିକତା ଓ କୂଳକଥା । ଯେଉଁ କୁଳରେ କିଏ ଜନ୍ମ ଲଭିଛି, ସେହି କୁଳରେ ହିଁ ସେ ରହିବାକୁ ବାଧ୍ୟ । ସେ କର୍ମବଳରେ ଅନ୍ୟ କୁଳରେ ପହଂଚିପାରନ୍ତା । କିନ୍ତୁ ଅନ୍ୟ କୁଳବାଲା ତାକୁ ସେଠାରେ ଲାଗିବାକୁ ଦେବାକୁ ନାରାଜ । କୁଳ ଲଂଘିବା ବଡ କଷ୍ଟକର ବ୍ୟାପାର । କୁଳୀନ ବୋଲାଉଥିବା ଲୋକେ ଅକୁଳରେ ଜନ୍ମ ହୋଇଥିବା ଲୋକଙ୍କୁ କୁଳୀନ ହେବାକୁ କେବଳ ଚାହାଁନ୍ତି ନାହିଁ, ତାହାନୁହେଁ । ଅକୁଳରେ ଜନ୍ମ ହୋଇଥିବା ଶିଶୁଟି କିମ୍ବା ଲୋକଟିକୁ ତାର ବୁଦ୍ଧି ଓ ବିଦ୍ୟାବଳରେ 'କୁଳୀନ' ହେବାକୁ ସୁଯୋଗ ଦେବାକୁ କୁଳୀନମାନେ ପ୍ରସ୍ତୁତ ନୁହଁନ୍ତି । ଏହି ନ୍ୟାୟରେ ମୋତିଲାଲ ନେହରୁଙ୍କ ପୁଅ ଜବାହରଲାଲ ନେହରୁ, ଜବାହରଙ୍କ କନ୍ୟା ଇନ୍ଦିରା ଗାନ୍ଧୀ ଓ ଇନ୍ଦିରାଙ୍କ ପୁଅ ସଞ୍ଜୟ ଓ

ରାଜୀବ ଗାନ୍ଧୀ ହୋଇଛନ୍ତି । ସେହି କ୍ରମରେ ରାହୁଲ ଗାନ୍ଧୀ ଓ ପ୍ରିୟଙ୍କା କୁଳୀନ ହୋଇ ଚାଲିବେ । ଉଚ୍ଚସ୍ତରରର ବୌଦ୍ଧିକତା ନଥାଇ ରାଜୀବ କାମ୍ବ୍ରିଜରେ ପାଠ ପଢିବାକୁ ଯାଇ କିଛି ପାଶ୍ ନକରି ଫେରି ଆସିବେ ଏବଂ ତାଙ୍କ ପୁଅ ହାରଭର୍ଡ ଯାଇ କିଛି ପାଶ୍ ନକରି ଫେରି ଆସି ପ୍ରଧାନମନ୍ତ୍ରିତ୍ୱ ପାଇଁ ସିଧାସଳଖ ଆଶାୟୀ ଏବଂ ଉଦ୍ୟମୀ ହୋଇପାରିବେ । ସେହି ନ୍ୟାୟରେ ଜ୍ୟୋତି ବସୁଙ୍କ ପୁଅ ଚନ୍ଦନ ବସୁ ବିନା ପୁଞ୍ଜିରେ ଶିଳ୍ପପତି ହୋଇପାରିବେ । କୁଳୀନ ସ୍ଥାନରେ ଜନ୍ମ ନେବା ଚାହି ।

କିନ୍ତୁ ଏହାର କତିପୟଃ ବ୍ୟତିକ୍ରମ ମଧ୍ୟ ଅଛନ୍ତି । ବାବା ସାହେବ ଆମ୍ବେଦକର ନିଜର ବୌଦ୍ଧିକତା ପାଇଁ ସୁଯୋଗ ପାଇଲେ । କିନ୍ତୁ ସେହି ବୌଦ୍ଧିକତାଟି ନଥିଲେ ବରୋଦାରେ ରାଜପରିବାରର ସାହାଯ୍ୟ ମିଳିବା କଷ୍ଟକର ହୋଇଥାନ୍ତା । ଧୀରୁଭାଇ ଅମ୍ବାନୀ (କେବଳ ବିମଳ Only Vimal) ରିଲାୟନ୍ସ ଇଣ୍ଡଷ୍ଟ୍ରିଜର ମାଲିକ । କେତେ ଲୋକ ଜାଣନ୍ତି ଯେ ୧୯୬୦ ଦଶକରେ ଧୀରୁଭାଇ ଆରବ ଦେଶକୁ ଯାଇଥିଲେ ୧୫ ହଜାର ଟଙ୍କା ମାତ୍ର ଯୋଗାଡ କରି । ସେଠାରୁ ଫେରି ୭୦ ଦଶକରେ ସୂତା କିଣି ବିକ୍ରି କରିବା, ନିଜେ ସୂତାକୁ ରଂଗ କରି ବିକ୍ରି କରିବା, ସୂତା ବିକ୍ରି କରୁ କରୁ ପାଓ୍ୱାରଲୁମ୍ ପକାଇ କିଛି କପଡା ବୁଣି ବିକ୍ରି କରିବାରେ ସତୁରୀ ଦଶକ ଶେଷ ହୋଇଗଲା ପ୍ରାୟ । ଏଇଟା ଜନ୍ମ ନୁହେଁ, କର୍ମର କଥା । ୮୦ ଦଶକରେ ଅମ୍ବାନୀ ଟାଟାଓ ବିର୍ଲା ସାମ୍ରାଜ୍ୟ ସହିତ ଟକ୍କର ଦେବା ଆରମ୍ଭ କଲେ । ଏବେ ସେ ସର୍ବାଧିକ ଧନୀ ତିନିଟି ଭାରତୀୟ କଂପାନୀମାନଙ୍କ ମଧ୍ୟରୁ ଜଣେ । ଜ୍ୟୋତିଷର ଗଣନା ବଳରେ ଅମ୍ବାନୀ ଏହି ଆର୍ଥିକ କ୍ଷମତାର ଅଧିକାରୀ ହେଲେ କି ? ଅବଶ୍ୟ ତାଙ୍କର ବ୍ୟବସାୟିକ ଟେକିନିକ୍ କୌଳିକ ସ୍ତରର ନୁହେଁ । ସେ ଭାରତ ସରକାରଙ୍କର ମନ୍ତ୍ରୀମାନଙ୍କୁ ଆୟତ୍ତରେ ରଖିବାକୁ ସମର୍ଥ ହୋଇଛନ୍ତି । ତାଙ୍କ ଇଚ୍ଛାନୁସାରେ ଶିଳ୍ପନୀତି, ରପ୍ତାନୀ ଓ ଆମଦାନୀ ନୀତି ପ୍ରଣୟନ ହୁଏ । କେନ୍ଦ୍ରମନ୍ତ୍ରୀ ପ୍ରଣବମୁଖାର୍ଜୀ ଅମ୍ବାନୀଙ୍କର ପୃଷ୍ଠପୋଷକ । ଅମ୍ବାନୀ ଯେ ପ୍ରଣବଙ୍କର ପୃଷ୍ଠପୋଷକ ନୁହଁନ୍ତି, ଏକଥା କ'ଣ ଜୋର ଦେଇ କହିହେବ ? ଏହି ପ୍ରଣବ ମୁଖାର୍ଜୀଙ୍କ କଥା ବିଚାର କରାଯାଉ । ସେ କଣ ଗୋଟାଏ ସେପରି ଉଚ୍ଚ ପରିବାରରେ ଜନ୍ମ ହୋଇଥିଲେ ? ମେଦିନପୁର ଜିଲ୍ଲାର ଛୋଟ ତମଲୁକ ସହରରେ ଏକ ଘରୋଇ କଲେଜରେ ଅଧ୍ୟାପକ ପ୍ରଣବ ମୁଖାର୍ଜୀ ଆଜି କେଉଁଠି ପହଞ୍ଚିଛନ୍ତି । ଭାରତର ଅର୍ଥମନ୍ତ୍ରୀ ମନମୋହନ ସିଂହ ମଧ୍ୟ ପଛୁଆ ବର୍ଗରେ ଜନ୍ମ ନେଇଥିଲେ । ସେ କେଉଁଠି ପହଞ୍ଚିଛନ୍ତି ? ଜ୍ଞାନୀ ଜୈଲ ସିଂହ, କେନ୍ଦ୍ରମନ୍ତ୍ରୀ ବୁଟା ସିଂହ ପ୍ରଭୃତି ଅନେକ 'କୁଳୀନ' ଭାବରେ ଜନ୍ମ ହୋଇନଥିଲେ । କିନ୍ତୁ ଏହା ସବୁ ବ୍ୟତିକ୍ରମ । ଜନ୍ମ ହେଲାପରେ ଅକୁଳରେ ଜନ୍ମ ହୋଇଥିବା ଲକ୍ଷ ଲକ୍ଷ ଶିଶୁଙ୍କର ଜାତକ ଯଦି ଧୀରୁଭାଇ ଅମ୍ବାନୀଙ୍କ ପୁତ୍ର କିମ୍ବା ରାହୁଲ ଗାନ୍ଧୀଙ୍କ ଜାତକ ସହିତ ମିଳାଯାଏ, ତେବେ ଦେଖାଯିବ ଯେ ଅକୁଳରେ ଜନ୍ମ ହୋଇଥିବା ଅନେକ ଶିଶୁଙ୍କର ଜନ୍ମପତ୍ରିକା ଅଧିକ ଶକ୍ତିଶାଳୀ । କିନ୍ତୁ ସେମାନେ ରିଲାୟନ୍ସ ଇଣ୍ଡଷ୍ଟ୍ରିଜର ମ୍ୟାନେଜିଂ ଡାଇରେକ୍ଟର ହୋଇ ପାରିବେନି କି ହାରଭର୍ଡରେ ଭାବମୂର୍ତ୍ତି ଗଠନ ପାଇଁ ପାଠ ପଢିବାର ସୁଯୋଗ ପାଇବେନି ।

ଜନ୍ମ ଏବଂ ଜୀବନ ଏକ ଦୁର୍ଘଟଣା । ଏକ ଆକ୍ସିଡେଣ୍ଟ । ମୁଁ ଭାଗ୍ୟରେ ବିଶ୍ୱାସ କରେନା । ଯେଉଁମାନେ ଅବୁଜରେ ଜନ୍ମ ହୋଇ ଉଠିଛନ୍ତି ସେମାନେ ଭାଗ୍ୟରୁ ଜ୍ୟୋତିଷଙ୍କ ସାହାଯ୍ୟରେ ଉଠିନାହାନ୍ତି । ସେମାନେ ତାଙ୍କର କାମ ବଳରେ ଉଠିଛନ୍ତି । ଭାଗ୍ୟ ମଧ୍ୟ ଗୋଟିଏ ଦୁର୍ଘଟଣା । କର୍ମଟା ନିଶ୍ଚିତ ପାରଦର୍ଶୀତା । ଟି ସିରିଜର କ୍ୟାସେଟ ନିର୍ମାତା ଗୁଲସନ କୁମାର ମାତ୍ର ୨୦ ବର୍ଷରୁ କମ୍ ପୂର୍ବରୁ ଦିଲ୍ଲୀର ଏକ ରାସ୍ତାକଡ଼ରେ ଫଳରସ ବିକ୍ରି କରୁଥିଲେ । ଏବେ ସେ ବିଖ୍ୟାତ ଗୁଲସନ କୁମାର । ତେଣୁ ଜନ୍ମକୁ ଗ୍ରହଣ କରିନେଇ ଭାଗ୍ୟ ଆଦରି ରହିବା ଏକ ପ୍ରଚଣ୍ଡ ମୂର୍ଖତା ।

ତା ୯।୭।୯୫



# ଦେହ

ଯଦିଓ ଦେହ ବୋଇଲେ ସାଧାରଣତଃ ମଣିଷର ଶରୀର କଥାଟା ମନକୁ ଆସେ, ତଥାପି ଦେହର ଏକ ବ୍ୟାପକ ସାର୍ବଜନୀନ ଅର୍ଥ ବା ଧାରଣା ଅଛି । ଅନ୍ତତଃ ପ୍ରତ୍ୟେକ ଜୀବନ ଥିବା ପ୍ରାଣୀ କିମ୍ବା ଉଭିଦର ଦେହ ଅଛି । କେବଳ ମଣିଷର ଦେହ ଅଛି ତାହା ନୁହେଁ । ହାତୀର, ବାଘର, ସିଂହର, ବିଲୁଆର, ଗାଈର, ଛେଳିର, କୁକୁରର କିମ୍ବା ଅନ୍ୟ ଯେକୌଣସି ଜୀବଜନ୍ତୁ କଥା ଆପଣ ଭାବିବେ ସେମାନଙ୍କର ସମସ୍ତଙ୍କର ଦେହ ନିଶ୍ଚୟ ଅଛି । ସେହିପରି ପ୍ରତ୍ୟେକ ଦ୍ରୁମର ଓ ଲତାର ମଧ ଦେହ ଅଛି । ଏପରିକି ଯାହାକୁ ଆମେ ନିର୍ଜୀବ ବୋଲି କହୁ କିମ୍ବା ଭାବୁ ସେ ସବୁ ପଦାର୍ଥର ମଧ ଦେହ ଅଛି । ଇଟା, ପଥର, କାଠ, ବାସନ କୁସନ, ପାହାଡ଼, ପର୍ବତ ସମସ୍ତଙ୍କର ଦେହ ଅଛି । ହିମାଳୟର ଦେହ କେତେ ସୁନ୍ଦର । ଆମେ ଯେତେବେଳେ ଦେହ କଥା ଭାବୁ ସେତେବେଳେ କିନ୍ତୁ ମନରେ ଥାଏ ମଣିଷର ଦେହ । ସେହି ମାନସିକତା ନେଇ ଆଜି ଆଲୋଚନା ହେଉ ।

ମଣିଷଟି ଯେତେବେଳେ ସୁନ୍ଦର ବା ଅସୁନ୍ଦର ବୋଲି କୁହାଯାଏ ସେ ପୁରୁଷ ହେଉ ବା ମହିଳା ହେଉ ସମଗ୍ର ଦେହଟିକୁ ନେଇ ଏହି ମୂଲ୍ୟାୟନ କରାଯାଏନା । ସାଧାରଣତଃ ମୁହଁଟିକୁ ଦେଖି ସୌନ୍ଦର୍ଯ୍ୟର ତଉଲ କରାଯାଏ । ଅଥଚ ମୁହଁଟି ସମଗ୍ର ଦେହର ୨୦ ଭାଗରୁ ଏକଭାଗ ମଧ ନୁହେଁ । ଅର୍ଥାତ୍ ୫ ଶତାଂଶ ତାଟାକୁ ନେଇ ପୂରା ଶତଭାଗ ମୂଲ୍ୟାୟନ କରାଯାଏ । ମୁହଁଟି ସୁନ୍ଦର କିମ୍ବା ଅସୁନ୍ଦର ତାହାର ମାପକାଠି ସବୁ ସମୟରେ ସମସ୍ତଙ୍କ ପାଇଁ ସମାନ ମଧ ନୁହେଁ । ତଥାପି ପୁରୁଷଟିକୁ କିମ୍ବା ନାରୀଟିକୁ ସୁନ୍ଦର କିମ୍ବା ଅସୁନ୍ଦରର ସାର୍ଟିଫିକେଟ ସହଜରେ ଦେଇ ଦିଆଯାଏ । ଜଣେ ଅସୁନ୍ଦର ବ୍ୟକ୍ତିର ଦେହଟି ହୁଏତ ଖୁବ୍ ସୁନ୍ଦର ହୋଇପାରେ କିମ୍ବା ଜଣେ ସୁନ୍ଦର ମଣିଷର ଦେହଟି ଅନେକ ଦୃଷ୍ଟିରୁ ଅସୁନ୍ଦର ହୋଇପାରେ, ଏହି ବିଚାର ସାଧାରଣତଃ ମନକୁ ଆସେନା । ଦେହର ସୌନ୍ଦର୍ଯ୍ୟ ସହିତ ମୁହଁର ସୌନ୍ଦର୍ଯ୍ୟ ଅନେକ ସମୟରେ ତାଳ ମିଳାଇ ପାରେନା । ମୁହଁଟିକୁ ତଉଲି କରି ଅନେକ ମଣିଷ ଗ୍ରହଣଯୋଗ୍ୟ କିମ୍ବା ପ୍ରତ୍ୟାଖ୍ୟାତ ହୋଇଯାଆନ୍ତି । ପୂର୍ବେ ମୁଖ୍ୟତଃ ମୁଖମଣ୍ଡଳର ସୌନ୍ଦର୍ଯ୍ୟକୁ ନେଇ ବିମାନ ପରିଚାରିକାମାନଙ୍କୁ ନିଯୁକ୍ତି ଦିଆଯାଉଥିଲା । ଏବେ ଏହି ଦୃଷ୍ଟିଭଙ୍ଗୀରେ କିଛିଟା ପରିବର୍ତ୍ତନ ଆସିଛି ।

ଦେହକୁ ସଜାଇବା ପାଇଁ ପୃଥିବୀରେ ସବୁଆଡ଼େ ପ୍ରତିଯୋଗିତା ଚାଲିଛି । କେତେପ୍ରକାର ପୋଷାକ, କେତେ ପ୍ରକାର ପ୍ରସାଧନ ସାମଗ୍ରୀ, କେତେପ୍ରକାର ପ୍ରାକୃତିକ ଓ ଅପ୍ରାକୃତିକ ଲେପ କିମ୍ବା ତୈଳ ମର୍ଦ୍ଦନ ଚାଲେ । ପୋଷାକ ଡିଜାଇନ ପାଇଁ ବିଶ୍ୱବିଖ୍ୟାତ ଡିଜାଇନରମାନେ କୋଟି କୋଟି ଟଙ୍କାର ବ୍ୟବସାୟ

ଚଳାଇଛନ୍ତି । କେତେ ମଡେଲ ସେହି ପୋଷାକ ପିନ୍ଧି ବିଭିନ୍ନ ଢଙ୍ଗରେ, ଠାଣୀରେ, ଛନ୍ଦରେ କ୍ୟାଟଓ୍ୱାକ ଦେଖାଇ କୋଟି କୋଟି ଲୋକଙ୍କୁ ବିଶ୍ୱବ୍ୟାପୀ ଟେଲିଭିଜନ ଜରିଆରେ ବିମୋହିତ କରୁଛନ୍ତି । ଏହି ଚାଲି ଭିତରେ ଦେହର କେତେ ଅଂଶ ଖୋଲା ପ୍ରଦର୍ଶିତ ହେଉଛି ତ କେତେ ଅଂଶ ଆଚ୍ଛାଦିତ ହେଉଛି । ଏହି ଆଚ୍ଛାଦନ ଓ ପ୍ରଦର୍ଶନ ମଧ୍ୟରେ ଦେହଟି ହିଁ ମୁଖ୍ୟ ଆଧାର । ଦେହଟି ଗଢ଼ିବା ପାଇଁ ଏବେ ଯୋଗାଭ୍ୟାସ, କସରତ ଓ ବ୍ୟାୟାମର ବହୁଳ ପ୍ରଚାର ଏବଂ ଅଭ୍ୟାସ ଚାଲିଛି । ଏବେ ଚିତ୍ର ତାରକାମାନେ ଦେହର ବିଭିନ୍ନ ଅଂଶକୁ ଗଠନ କରିବାର ବିଭିନ୍ନ ଉପାୟ ଖୋଜୁଛନ୍ତି । ନାୟକମାନେ ବାହୁପେଶୀ ଓ ବକ୍ଷପେଶୀ ଗଢ଼ିବାର ବ୍ୟାୟାମ କରୁଛନ୍ତି । ନାୟିକାମାନେ କଟି, ଜାନୁ ଓ ନିତମ୍ବ ଗଠନରେ ପ୍ରୟାସୀ । ସବୁ ତ ସେହି ଦେହ ପାଇଁ । ରାସାୟନିକ ପ୍ରସାଧନ ସାମଗ୍ରୀ ଦେହ ପାଇଁ କ୍ଷତିକାରକ ହେଉଛି ବୋଲି ଉପଲବ୍ଧି କରି ଏବେ ଚଢ଼ିବୁଟି ପରି ପ୍ରାକୃତିକ ଦ୍ରବ୍ୟରୁ ପ୍ରସାଧନ ବ୍ୟବହାର ଆରମ୍ଭ ହୋଇଛି । ଏପରିକି ଲେମ୍ବୁଚୋପା, ଅମୃତଭଣ୍ଡା କ୍ଷୀର ଓ କାକୁଡ଼ି, କ୍ଷୀର ଓ ସରର ବ୍ୟବହାର ଦେହ ବିଶେଷକରି ମୁଖମଣ୍ଡଳ ପାଇଁ ହିତକାରକ ବୋଲି ମହିଳାମାନେ ସହଜ ସରଳ ପ୍ରୟୋଗ ଆରମ୍ଭ କରିଛନ୍ତି । ବେସନ ଓ ଦହିର ମିଶ୍ରଣରେ କେଶରୁ ମଳି ଛଡ଼ାଇବା କେତେ ଶସ୍ତା ଓ ସହଜ ତାହା ଜାଣିଲେ ଦାମିକା ଶାମ୍ପୁର ବ୍ୟବହାର କରିବାକୁ ଅନେକ ପସନ୍ଦ କରନ୍ତେ ନାହିଁ । ଇଠାଫଳ ବା ରିଠାଫଳର ଫେଣରେ ମୁଣ୍ଡ ଓ ଦେହ ଅତି ସହଜରେ ପ୍ରାକୃତିକ ଦ୍ରବ୍ୟ ମାଧ୍ୟମରେ ସଫା କରାଯାଇ ପାରିଲେ ଶାମ୍ପୁ ଓ ସାବୁନର ବ୍ୟବହାର ଉପରେ ଜୋରଦେବା ରହନ୍ତା ନାହିଁ । କିନ୍ତୁ ଖବରକାଗଜ, ପତ୍ରିକା ଏବଂ ସବୁରି ଉପରେ ଟେଲିଭିଜନ ବିଜ୍ଞାପନ ମାଧ୍ୟମରେ ରଙ୍ଗ ରଙ୍ଗେଇ ନୂଆ ସାବୁନ, ନୂଆ ଶାମ୍ପୁ, ନୂଆ ଚମ ସୌନ୍ଦର୍ଯ୍ୟ ସାମଗ୍ରୀମାନଙ୍କର ଯେଉଁ ନାୟକ ନାୟିକା ନାଚିକୁଦି ଗୀତ ଗାଇ ମନ ଲୋଭାଇ ନେଉଛନ୍ତି ସେଥିରେ ଏହି ମଫସଲି କଥାଗୁଡ଼ାକୁ କିଏ ପଚାରୁଛି । ଦେହର ସୁରକ୍ଷା ଏବଂ ସୌନ୍ଦର୍ଯ୍ୟ ରକ୍ଷା କେତେ ଅଳ୍ପରେ, ସହଜରେ ଓ ଶସ୍ତାରେ ହୋଇପାରିବ ତାହା ପାଇଁ ଫୁରସତ କାହିଁ ?

ଦେହଟି ଜନ୍ମରୁ ଶୈଶବ, କୈଶୋର, ଯୌବନ, ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ମଧ୍ୟ ଦେଇ ମୃତ୍ୟୁ ଆଡ଼କୁ ଧାଏଁ । ଶୈଶବର ଦେହଟି ବାପା ମା'ଙ୍କ ହେପାଜତରେ ରହେ । କୈଶୋର ବେଳକୁ ବାପମା'ଙ୍କ ସହିତ ମଣିଷ ନିଜେ ଦେହର ଦାୟିତ୍ୱ ନିଏ । ଯୌବନ ବେଳକୁ ମଣିଷ ପୂରାପୂରି ନିଜ ଦେହର ଦାୟିତ୍ୱ ଓ ଯତ୍ନ ନେବା ଆରମ୍ଭ କରିଥାଏ । ଯୌବନ ଏବଂ ତା' ଆଗକୁ ମଣିଷଟି ଦେହକୁ ନିଜ ଇଚ୍ଛାନୁଯାୟୀ ବ୍ୟବହାର କରିବାର ସ୍ୱାଧୀନତା ହାସଲ କରେ । ତେଣୁ ଯୁବକ ହେଉ ବା ଯୁବତୀ ହେଉ ନିଜର ଦେହ, ନିଜର ଯୌନ ଇଚ୍ଛା କିମ୍ବା ଯୌନଭୋଗ ସମ୍ପର୍କରେ ସ୍ୱାଧୀନ ନିଷ୍ପତ୍ତି ନିଅନ୍ତି । ଏହି ସମୟଟି ଏକ ସନ୍ଧିକ୍ଷଣ । ଦେହସୁଖ ସହିତ ମନସୁଖ ସମାନ୍ତରାଳ ହୋଇଚାଲେ । ମନର ସୁଖ ପାଇଁ ଦେହସଜା ଓ ଦେହକୁ ଉପଭୋଗ କରିବାର ବାସନା ଜନ୍ମେ ଏବଂ ଅନେକ ସମୟରେ ଉଚ୍ଛୁଳିପଡ଼େ । ପୁରୁଷ ଓ ନାରୀ ଉଭୟଙ୍କର ଦେହର ଚାହିଦା ମନର ଚାହିଦା ସହିତ ତାଳିମାରେ । ଯୌନଭୋଗ ମଣିଷର ଏକ ସ୍ୱଭାବ ସୁଲଭ ଏବଂ ସହଜାତ ଅଙ୍ଗ । କେତେକ ସାମାଜିକ ଅଥବା ଆଇନଗତ ବନ୍ଧନ କିମ୍ବା ପ୍ରତିବନ୍ଧକ,

କେତେକ ନୈତିକ ବିଚାର ଏବଂ ଯୌନ ଦୁର୍ଘଟଣାର ଭୟ ନଥିଲେ ଦେହ ଭୋଗରେ କୌଣସି ନିୟମାନୁବଦ୍ଧତା ମଧ୍ୟ ରହନ୍ତା ନାହିଁ । ମଣିଷର ଯଦି ସୁଯୋଗ ଥାଆନ୍ତା ହୁଏତ ଅଧିକାଂଶ ମୁକ୍ତଯୌନ (Free Sex) ଆଚରଣରୁ ଦୂରେଇ ରହନ୍ତେ ନାହିଁ । ମୁକ୍ତଯୌନର ଏକ ପ୍ରଧାନ ବାଧକ ଥିଲା ଗର୍ଭଧାରଣର ଭୟ । ତାହା ଏବେ ବିଭିନ୍ନ କାରଣରୁ ଦୂର ହୋଇଯାଇଛି । ଅନ୍ୟ ଯାହା ବାଧକ ରହିଛି, ସେଥିରେ ପ୍ରଧାନତମ ହେଲା ଭଲ ପାଇବା । କିନ୍ତୁ ଯେଉଁମାନେ ପରସ୍ପରକୁ ଭଲ ନପାଇ ମଧ୍ୟ କେବଳ ଯୌନଭୋଗକୁ ଉପଭୋଗ କରିବାକୁ ଚାହାନ୍ତି, ସେମାନେ ଏବେ ଅନାୟାସରେ ସୁସ୍ୱାଦୁ ଖାଦ୍ୟ ଖାଇବା ପରି ସହଜରେ ଭଲ ନପାଇ ମଧ୍ୟ ଯୌନକୁ ଅକୁଣ୍ଠ ଚିତ୍ତରେ ଆଦରି ନେଉଛନ୍ତି । ବିବାହ ପୂର୍ବରୁ ଏବଂ ବିବାହ ପରେ (ପରକୀୟା) ଯୌନ ଏହି ଭିତ୍ତିରେ ଚାଲୁଛି । ଅନେକ ଭଲ ପାଇବା ସହିତ ଦେହର ଆବଶ୍ୟକତାର ବିଶେଷ ନିଗୁଢ଼ ସମ୍ପର୍କ ରହୁନାହିଁ । ଜଣେ ପୁରୁଷ ଓ ଜଣେ ନାରୀ ମଧ୍ୟରେ (ସେମାନେ ପତିପତ୍ନୀ ହୋଇପାରନ୍ତି କିମ୍ୱା ନହୋଇ ପାରନ୍ତି ମଧ୍ୟ) ଭଲ ପାଇବା ଥାଇ ମଧ୍ୟ ଯୌନ ସମ୍ପର୍କ ନଥାଇପାରେ । ଆଉ କେଉଁଠି ପତିପତ୍ନୀ ମଧ୍ୟରେ ଭଲ ପାଇବାର ଚେର ଗହୀରକୁ ନଯାଇ ମଧ୍ୟ ପରକୀୟା ଯୌନ ପାଇଁ ଆଗ୍ରହ ନଥାଇପାରେ । ଆଉ କେଉଁଠି ପତି ଓ ପତ୍ନୀ ମଧ୍ୟରେ ଅମାପ ଭଲ ପାଇବା ଥାଇ ମଧ୍ୟ ପରକୀୟା ଯୌନର ଘଟଣା ଘଟିପାରେ । ଆଉ କେଉଁଠି ପତିପତ୍ନୀ କିମ୍ୱା ପ୍ରେମିକ-ପ୍ରେମିକା ପରସ୍ପରକୁ ଏତେ ଭଲ ପାଆନ୍ତି ଯେ, ପାରସ୍ପରିକ ଯୌନ ଛଡ଼ା ଅନ୍ୟ କାହା ସହିତ ଯୌନଭୋଗ କଥା ସେମାନଙ୍କ ମନକୁ ଛୁଏଁନାହିଁ । ଏସବୁ ମଧ୍ୟରେ ଦେହର ଆବଶ୍ୟକତା ଠାରୁ ମନର ଆବଶ୍ୟକତା ଯଥେଷ୍ଟ ଆଧିପତ୍ୟ ବିସ୍ତାର କରେ । ଦେହ ଓ ମନକୁ ଏକାଠି ଯୋଡ଼ି ପାରିଲେ ଗୋଟିଏ ଶଗଡ଼ର ଦୁଇଟି ବଳଦ ସମାନ ଗତିରେ ଚାଲିଲା ପରି ଦେହ ଓ ମନ ଭିତରେ ଯଥାର୍ଥ ସମନ୍ୱୟ ହୁଏ ।

ବିବାହ ମୌଳିକ ଦୃଷ୍ଟିରୁ ମୁଖ୍ୟତଃ ଜଣେ ପୁରୁଷ ଓ ନାରୀ ମଧ୍ୟରେ ଦେହର ମିଳନ ପାଇଁ ଉଦ୍ଦିଷ୍ଟ । ବିବାହକୁ ଏକ ସାମାଜିକ ଏବଂ ପାରିବାରିକ ଅନୁଷ୍ଠାନ (Social and Family Institution)ର ମର୍ଯ୍ୟାଦା ଦିଆଯାଇଛି । ମୁଖ୍ୟତଃ ଏହା ମୁକ୍ତ ଯୌନ ବ୍ୟବସ୍ଥାକୁ ଆୟତକୁ ଏବଂ ନିୟନ୍ତ୍ରଣକୁ ଆଣିବା ପାଇଁ ସୃଷ୍ଟି କରାଯାଇଛି । ଏକ ରେଳ ଧାରଣାରେ ରେଳଗାଡ଼ିଟି ଯେପରି ଯିବାପାଇଁ ଉଦ୍ଦିଷ୍ଟ ସେହିପରି ବିବାହ ମାଧ୍ୟମରେ ଏକ ଟଣାଗାର ଉପରେ ଚାଲିବାକୁ ଜଣେ ନାରୀ ଓ ପୁରୁଷର ଏକାଗ୍ର ଦେହଭୋଗକୁ ନିୟମାନୁବଦ୍ଧ କରିଦିଆଯାଇଛି । ଏହା ବାହାରକୁ ଗଲେ ଏହି ପୁରୁଷ ଓ ନାରୀ ଦଣ୍ଡିତ ହେବେ । ସେ ଦଣ୍ଡ ସାମାଜିକତା, ପାରିବାରିକ, ଆଇନଗତ କିମ୍ୱା ସରଳ ଭାବରେ ଲୋକାପବାଦର ହୋଇପାରେ । ଯେଉଁ ପୁରୁଷ କିମ୍ୱା ନାରୀ ଏହି ଦଣ୍ଡକୁ ଖାତିର କରିବାକୁ ଚାହାନ୍ତି ନାହିଁ, ସେମାନେ ନିଜ ପାଇଁ ଅଲଗା ବାଟ ବେପରୁଆ ଭାବରେ ଖୋଜି ନେଉଛନ୍ତି । ବିବାହ ନକରି ଏକାଠି ରହିବା ଏହି ଦେହର ମାନସିକ ଚାହିଦା ମେଣ୍ଟାଇବା ପାଇଁ ଏବେ ପ୍ରଚଳିତ ହେଲାଣି । ଏପରିକି ଏକାଠି ରହି ସନ୍ତାନ ସୃଷ୍ଟି କରିବାର ନିଷ୍ପତ୍ତି ମଧ୍ୟ ଏବେ ନିଆଯାଉଛି । ଏହି ପ୍ରକାର ଦେହଭୋଗୀମାନେ ଯୌବନରୁ ଆରମ୍ଭ କରି ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟର ଅନୁରାଗୀ ହୋଇପାରନ୍ତି । ଅପେକ୍ଷାକୃତ କମ୍ ହେଲେ ମଧ୍ୟ ଏହା କ୍ରମେ ସାଧାରଣ ଘଟଣାରେ

ପରିଣତ ହୋଇ ସମାଜ ଏବଂ ଆଇନ ଦୃଷ୍ଟିରେ ଗ୍ରହଣଯୋଗ୍ୟ ହୋଇସାରିଲାଣି ।

ଆଉ ଏକ ପ୍ରକାରର ଦେହଭୋଗୀ ଅଛନ୍ତି । ସେମାନେ କଳାକାର (ଚିତ୍ରଶିଳ୍ପୀ କିମ୍ବା ନାଟ୍ୟକାର, ଲେଖକ କିମ୍ବା ମଞ୍ଚ ଅଭିନୟରେ ସମ୍ପୃକ୍ତ ଅଭିନେତା-ଅଭିନେତ୍ରୀ) ଗୋଷ୍ଠୀର ପ୍ରତିନିଧି । ସେମାନଙ୍କର ସ୍ୱାମୀ କିମ୍ବା ପତ୍ନୀ ଥାଇପାରନ୍ତି କିମ୍ବା ନଥାଇପାରନ୍ତି । ସେମାନେ ବୌଦ୍ଧିକ ସ୍ତରରେ ଏହି ସାମାଜିକ ଖୋଳ (ସେମାନଙ୍କ ଭାଷାରେ ଖୋଳପା) ଭିତରେ ଆବଦ୍ଧ ନୁହନ୍ତି । ତେଣୁ ଏକ ନାରୀ କିମ୍ବା ଏକ ପୁରୁଷକୁ ଧରି ବାନ୍ଧି ଜୀବନଟାକୁ ଜେଲଖାନାର କଏଦୀ ପରି ସଂକୁଚିତ କରି ରଖିବାକୁ ଚାହାନ୍ତି ନାହିଁ । ସେମାନେ ବହୁ ଦେହଭୋଗୀଯୁକ୍ତ ମଣିଷ । ଏପରି କେତେକ ପୁରୁଷ ଓ ନାରୀଙ୍କୁ ମୁଁ ଭେଟିଛି । ସେମାନଙ୍କର ଯୁକ୍ତି ହେଲା ଯଦି ଆପଣ ପ୍ରତିଦିନ ଗୋଟିଏ ପ୍ରକାର ଖାଦ୍ୟ (ଭାତ, ଡାଲି, ତରକାରି କି ରୁଟି ଓ ମାଂସ ତରକାରୀ) ଜୀବନସାରା ଖାଇବେ, ତେବେ ଆପଣ ଅନାୟାସରେ ତାହା ଉପଭୋଗ କରିପାରିବେ କି ? ଆପଣ କେତେପ୍ରକାର ପୋଷାକ ପିନ୍ଧୁଛନ୍ତି । କେତେ ପ୍ରକାର ଖାଦ୍ୟ ଖାଉଛନ୍ତି । ତାହା ଭିତରୁ କୌଣସି ପ୍ରକାରର ପୋଷାକ କିମ୍ବା ଖାଦ୍ୟ ଆପଣଙ୍କୁ ଅଧିକ ଭଲ ଲାଗି ପାରୁଥାଏ । କିନ୍ତୁ ଆପଣଙ୍କୁ ବହୁ ପ୍ରକାର (variety)ର ପୋଷାକ ପିନ୍ଧିବାକୁ କିମ୍ବା ବିଭିନ୍ନ ପ୍ରକାରର ଖାଦ୍ୟ ବଦଳାଇ ଖାଇବାକୁ ଭଲ ଲାଗିବ କି ନାହିଁ ? ତେଣୁ ଦେହ ପାଇଁ ମଧ୍ୟ ସେହିପରି ଏକାଗ୍ର ବନ୍ଧନ ନଥାଇ ଭୋଗଲିପ୍ସାକୁ ଦମନ କରିବାର କାରଣ କ'ଣ ଥାଇପାରେ । ସେଥିପାଇଁ ବିବାହ ବନ୍ଧନରେ ବାନ୍ଧି ନହୋଇ ଏକାଠି ରହିବା (ମନ ନ ମାନିଲେ ଛଡ଼ାଛଡ଼ି ହୋଇଯିବା) କିମ୍ବା କ୍ଷୁଧା-ବିଚିତ୍ରା ପାଇଁ ଇଚ୍ଛାନୁଯାୟୀ ଅନେକ ପୁରୁଷ ଓ ଅନେକ ନାରୀଙ୍କ ସହିତ ବିଛଣାକୁ ଯିବାରେ ସଂକୋଚ କିମ୍ବା ବାଧା କାହିଁକି ରହିବ ? ଏଇ କେତେମାସ ତଳେ ଦିଲ୍ଲୀରେ କେତେଜଣ ଚିତ୍ରଶିଳ୍ପୀ, ସାମ୍ବାଦିକ ଓ ଲେଖକ-ଲେଖିକା ଗହଣରେ ଏକ ଘରୋଇ ମିଳନରେ ଆଲୋଚନା ଉପଲକ୍ଷରେ ଏହି ଦେହ କଥାଟି ଉଠିଲା । ଜଣେ ଭାରତୀୟ ଚିତ୍ରଶିଳ୍ପୀ ଆମେରିକାରେ ରହନ୍ତି । ବୟସ ୭୦ । ତାଙ୍କର ବକ୍ତବ୍ୟ ହେଲା ଯେ ସେ ଏକଲା ହେଲେ ବି ଯୌନ ପାଇଁ ତାଙ୍କର ଆଗ୍ରହ ଏବଂ ସାମର୍ଥ୍ୟ ଏବେ ମଧ୍ୟ ସେହି ସ୍ତରର ଯାହା ତାଙ୍କର ୨୫ କି ୩୦ ବର୍ଷ ବୟସରେ ଥିଲା । ସେ ନିୟମିତ ଯୌନଭୋଗ ଛଡ଼ା ବେଶୀଦିନ ମାନସିକ ସ୍ଥିରତା ରଖିପାରନ୍ତି ନାହିଁ । ଜଣେ ବଙ୍ଗୀୟ ମଧ୍ୟବୟସ୍କା (୫୦ ବର୍ଷ ବୟସ ବୋଧେ ହେବ) କବି ଏବଂ ଅଧ୍ୟାପିକା (ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇଛନ୍ତି- ଝିଅପୁଅମାନେ ୩୦ ବର୍ଷରୁ ଅଧିକ ବୟସର) ଏହି କଥାରେ ଚିତ୍ରଶିଳ୍ପୀଙ୍କ ସହିତ ଏକମତ ହୋଇ ନିଜର ମଧ୍ୟ ତଦ୍ରୂପ ବାସନା ରହିଛି ବୋଲି ମୁକ୍ତ କଣ୍ଠରେ ବିନା ଦ୍ୱିଧାରେ ସ୍ୱୀକାର କଲେ । ସେଠାରେ ତାଙ୍କର ବିବାହିତ ଝିଅ ଜଣେ ମଧ୍ୟ ଉପସ୍ଥିତ ଥିଲା । ଝିଅଟି ଲେଖିକା । ସେ ମଧ୍ୟ ମା'ଙ୍କ ଏହି ଉକ୍ତିକୁ ସମର୍ଥନ କଲେ ।

ଉପସ୍ଥିତ ଅନ୍ୟ କଳାକାରମାନେ ବେଶ୍ ଠୋସର ସହିତ ଯୌନ ବାସନା ଦେହର ଏକ ଚାହିଦା ଏବଂ ସେଥିରେ ବୟସର ସୀମା କିମ୍ବା ପାରିବାରିକ ପରିସ୍ଥିତି କିମ୍ବା ଯୌନଭୋଗୀମାନଙ୍କ ମଧ୍ୟରେ ସ୍ତରଭେଦ ସହିତ କୌଣସି ସମ୍ପର୍କ ନାହିଁ ବୋଲି ମତପ୍ରକାଶ କଲେ । ମୁଁ ସେଠାରେ ଏକମାତ୍ର ଲୋକ

ଯିଏ କି ଏହି ଧାରଣାରେ ଅଂଶୀଦାର ହୋଇପାରିଲିନି । ମୁଁ ସେଠାରେ ଏକ ଖାପଛଡ଼ା ଜୀବ (The odd man out) ବୋଲି ନିଜକୁ ମନେ କରୁଥିଲି । ମୋର ନୀରବତା ଦେଖି ସେମାନେ ସମସ୍ତେ ମୋର ମତ ଜାଣିବାକୁ ଚାହିଁଲେ । ମୁଁ କେବଳ କହିଲି ଯେ, ଆପଣମାନଙ୍କ ମତ ସହିତ ମୁଁ ଅଂଶୀଦାର ହୋଇପାରୁ ନାହିଁ । ସେମାନେ ସମସ୍ତେ ହସିଉଠିଲେ ଉପହାସର ଠାଣିରେ ।

ତା୧୬।୭।୯୫



# ପ୍ରତ୍ୟାଶା

ପାରିବାରିକ ଓ ସାମାଜିକ ଜୀବନରେ ପାରସ୍ପରିକ ସମ୍ପର୍କ ଅନେକଟା ଦିଆନିଆ ଉପରେ ନିର୍ଭରଶୀଳ । ଏକତରଫା ଦେବା କିମ୍ବା କେବଳ ନେବା ଉପରେ କୌଣସି ସମ୍ପର୍କ ସ୍ଥାୟୀ ଭାବରେ ଚାଲିପାରେନା । ଏକପାଖିଆ ସମ୍ପର୍କ କିଛି ଦିନ ପାଇଁ ଚଳିଯାଇପାରେ କେତେକ କ୍ଷେତ୍ରରେ । ଯେଉଁଠି ଏକପାଖିଆ ସମ୍ପର୍କ ଚାଲେ, (କିଛିଦିନ ପାଇଁ ମଧ୍ୟ) ତାହା କୌଣସି ଆଶା କିମ୍ବା ପ୍ରତ୍ୟାଶାକୁ ନେଇ କିଛି ସମୟ ପାଇଁ ଠାକିଯାଏ । କିନ୍ତୁ ଯେଉଁ ଆଶାରେ ଜଣେ ଦେଇଯାଏ ସେହି ଆଶାଟି ପୂରଣ ହେବାରେ ଡେରିହେଲେ କିମ୍ବା ଆଶାଟି ପୂରଣ ହେବାର ସମ୍ଭାବନା ନାହିଁ ବୋଲି ଆଶାୟୀ ଜଣକ ଉପଲବ୍ଧି କଲେ ଏକତରଫା ଦେବାଟି ବନ୍ଦ ହୋଇଯାଏ । ଅନେକ ସମୟରେ କେବଳ ଦେବାଟି ବାଦ ହୋଇ କଥାଟିର ପରିସମାପ୍ତି ଘଟେ ନାହିଁ । ନୈରାଶ୍ୟରୁ କ୍ରୋଧ ଜାତ ହୋଇ ପାଲଟା 'ମାଡ' ମିଳେ ।

ଅନେକ ସମୟରେ କୌଣସି ସଂସ୍ଥାରେ ଚାକିରି କରାଇ ଦେବାର ଆଶା ଦେଇ ଲୋକଟିକୁ ଆଣି ଘର ଚାକର ଭାବରେ କାମ କରିବାକୁ କୁହାଯାଏ । ଅବଶ୍ୟ ଘର ଚାକର ଭାବେ କାମ କଲାବେଳେ ଯାହାକୁ ଚାକିରି କରାଇଦେବାର ଆଶା କିମ୍ବା ଲୋଭ ଦିଆଯାଇଥାଏ, ତାକୁ ଖାଇବାକୁ ଏବଂ ରହିବାକୁ ଦେବା ଛଡା କିଛି ଲୁଗାପଟା ସହିତ ମାସିକ କିଛି ଅର୍ଥ ଦିଆଯାଏ । ଏହି ଆଶାର ସମୟ ମଧ୍ୟରେ ଖାଇବା ପିଇବାର ପାତର ଅନ୍ତର ଏବଂ ବ୍ୟବହାରରେ ତ୍ରୁଟି ରହିଲେ ଆଶାୟୀ ମଣିଷ ମନରେ କ୍ଷୋଭ ହୁଏ । ଅନେକ ସମୟରେ ଏହା କ୍ରୋଧରେ ପରିଣତ ହୁଏ ।

ଏବେ ରାଉରକେଲାରେ ଘଟିଥିବା ଏକ ଦୃଷ୍ଟାନ୍ତ ତାଜା ମନକୁ ଆସୁଛି । ଜଣେ ୩୦ ବର୍ଷୀୟା ମହିଳା ତାଙ୍କ ବାପଘର ଗାଁ'ରୁ ଜଣେ ଯୁବକକୁ ଚାକିରି କରାଇଦେବାର ପ୍ରତିଶ୍ରୁତି ଦେଇ ତାଙ୍କର ରାଉରକେଲା ଇସ୍ପାତ କାରଖାନା କ୍ୱାର୍ଟରରେ ରଖି ଘର କାମରେ ତାଙ୍କୁ ନିୟୋଜିତ କରିଥିଲେ । କେବେଠାରୁ ଆଣିଥିଲେ ଜଣାପଡିନାହିଁ । ଚଳିତ ମାସ ୧୨ ତାରିଖ ରାତିରେ ଭଦ୍ର ମହିଳା ଠାକୁର ଘରେ ମଠାଲୁଗା ପିନ୍ଧି ଆଖିବୁଜି ଧ୍ୟାନ କରୁଥିବା ସମୟରେ ଗୋଟିଏ ଇଲେକ୍ଟ୍ରିକ୍ ତାରରେ ଫାସ କରି ତାଙ୍କ ବେକରେ ପକାଇ ଭିଡି କରି ତାଙ୍କୁ ହତ୍ୟା କଲା ତାଙ୍କ ଗ୍ରାମରୁ ସେ ଆଣିଥିବା ଏହି ୨୦ ବର୍ଷୀୟ ଯୁବକଟି । କାଳେ ସେ ମଲେ କି ନାହିଁ ସନ୍ଦିହାନ ହୋଇ ରୋଷେଇ ଘର ପରିବା କଟା ଛୁରୀରେ ତାଙ୍କ ପେଟକୁ ତିନିଥର ଭୁଷିଦେଲା । ତାଙ୍କର ୬ ବର୍ଷର ଝିଅକୁ ମଧ୍ୟ ଏହି ଚାକର ବିପିନ ସେହି ଉପାୟରେ ହତ୍ୟା କରି ଜିନିଷପତ୍ର, ଗହଣାଗାଣ୍ଠି ଧରି ନିଜ ଗାଁ'କୁ ପଳାଇ ଆସିଲା । ପରେ ସେ ଗିରଫ ହୋଇଛି

ଏବଂ ପୋଲିସ ଆଗରେ ନିଜର ଅପରାଧ ସ୍ୱୀକାର କରିଛି । ବିପିନର (ହତ୍ୟାକାରୀ) ବକ୍ତବ୍ୟ ହେଲା ତାକୁ ଘରରବନ୍ଧୁ କାମ କରିବାକୁ ପଡୁଥିଲା । ମାସକୁ ଦରମା ବାବଦକୁ ମାତ୍ର ୧୦୦ ଟଙ୍କା ଦିଆଯାଉଥିଲା । ସ୍ଥାୟୀ ଚାକିରି (ହୁଏତ ରାଉରକେଲା ଇସ୍ପାତ କାରଖାନାରେ) ମିଳିବାରେ ବିଳମ୍ବ ଦେଖି ସେ ନିରାଶ ହୋଇ ଯାଇଥିଲା ଏବଂ ଏପରି କାଣ୍ଡ ଘଟାଇଲା । ଏହାର ଜୀବନ ଭିତ୍ତିକ ତତ୍ତ୍ୱ କ'ଣ ହୋଇପାରେ । ଆଶା ଓ ପ୍ରତ୍ୟାଶାର ଏହା ଏକ ଜ୍ୱଳନ୍ତ ଘଟଣା । ପ୍ରଥମତଃ ବିପିନକୁ ଏକ ଆଶା ଦିଆଗଲା ଯାହା ପାଇଁ ସେ ନିଜ ଗାଁ ଛାଡି ରାଉରକେଲା ଗଲା । ସେ ରାଉରକେଲା ଯାଇ ନଥିଲା ଘର ଚାକର ହେବାକୁ । ଘର ଚାକର ଭାବରେ କାମ କରିବା ପଛରେ ଆଶା (ବରଂ ଲୋଭ) ଥିଲା ଯେ ବଡ଼ ଦରମାରେ ଇସ୍ପାତ କାରଖାନାରେ ଚାକିରି କରିବା । ଏହି ଚାକିରିରୁ ସେ ଆଉ କେତେ କ'ଣ କରିବ ବୋଲି କଳ୍ପନା କରିଥିବ । ସ୍ୱପ୍ନ ମଧ୍ୟ ଦେଖିଥିବ । ଯଦି ଅତି ପିଲାବେଳୁ ସେ ସେଠାକୁ ଯାଇଥିବ, ତା'ର ତେବେ ଯୁବକ ମନରେ ଚାକିରି ପ୍ରକୃତରେ ପାଇବ ନାହିଁ ବୋଲି ଧାରଣା ହୋଇ ଧୈର୍ଯ୍ୟଚ୍ୟୁତି ହୁଏତ ଘଟିଥିବ । ହୁଏତ ମାନସିକ ସ୍ତରରେ ସେ ବିଶେଷ ଶାନ୍ତ ପ୍ରକୃତିର ହୋଇନଥିବ କିମ୍ବା ଶାନ୍ତ ପ୍ରକୃତିର ହୋଇଥିଲେ ମଧ୍ୟ ଦୈନନ୍ଦିନ ଜୀବନର କଷଣ ଓ ନିଷ୍ଠୁରତା କୋମଳ ହୃଦୟ ତିକ୍ତତାରେ କଠୋର ହୋଇ ଯାଇଥିବ । ଆଶା ସୃଷ୍ଟି କରିବା ଅର୍ଥ ପ୍ରତ୍ୟାଶାର ମଧ୍ୟ ସୃଷ୍ଟି କରିବା । ଆଶା ଓ ପ୍ରତ୍ୟାଶା ପୂରଣ ନହେଲେ ମାନସିକ ବ୍ୟର୍ଥତା ଓ କ୍ରୋଧ ଜନ୍ମିବାର ପରିସ୍ଥିତି ଉପୁଜିଯାଏ । ଅବଶ୍ୟ ଏଭ ଘଟଣା ଚରମ ଅବସ୍ଥାରେ ଘଟେ । କିନ୍ତୁ ପାରିବାରିକ ଜୀବନରେ ଆଶା ଏବଂ ପ୍ରତ୍ୟାଶାର ଏକ ଧାରାବାହିକ ପ୍ରକ୍ରିୟା ଆପଣା ଆପେ ଚାଲିଥାଏ । ସଦ୍ୟ ବିବାହିତ ଦମ୍ପତିଙ୍କ ମଧ୍ୟରେ ଜଣେ ଅପରଠୁ ବିବାହ ପୂର୍ବରୁ କ'ଣ ପାଇବେ ବୋଲି ଆଶା କରି ଏହି ଜୀବନ ବନ୍ଧନରେ ବାନ୍ଧି ହୋଇଯାଆନ୍ତି । ବିବାହ ପରେ ସ୍ୱାଭାବିକ ଭାବରେ ପତି ପତ୍ନୀ ଯାହା ପରସ୍ପରଠାରୁ ଆଶା ଓ ପ୍ରତ୍ୟାଶା କରିଥାନ୍ତି, ତାହା କିଛିଦିନ ପାଉଛନ୍ତି ବୋଲି ଭାବିନିଅନ୍ତି । ପ୍ରଥମ କିଛିଦିନ ଏକ ସ୍ୱପ୍ନିଳ ଚିନ୍ତା ଏବଂ ପରସ୍ପରର ସାନିଧ ଏବଂ ଐକାନ୍ତିକତା ଜୀବନବ୍ୟାପୀ ଚାଲିବ ବୋଲି ମନେ ହୁଏ । କିଛି ଦିନ ପରେ ଏହା ଗତାନୁଗତିକତା ଆଡକୁ ଗତି କରେ । ପତି ପତ୍ନୀଙ୍କ ଠାରୁ ନାଟକୀୟ ଭଲ ପାଇବା ଠାରୁ ଅଧିକ କିଛି ପାଇବାକୁ ଆଶା ଏବଂ ଇଚ୍ଛା କରନ୍ତି । ଆଶାଠାରୁ ଇଚ୍ଛା ଅଧିକ । ସେହିପରି ପତ୍ନୀ ମଧ୍ୟ ପତିଙ୍କ ଠାରୁ ସୌନ୍ଦର୍ଯ୍ୟର ବିମୋହନକାରୀ ଭାଷାଠାରୁ ଅନେକ ଅଧିକ ଭାବ ଓ କାର୍ଯ୍ୟ ଆଶା କରନ୍ତି । ଉଭୟ ପରସ୍ପରର ମନ ରଖିବା ପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ମନଟା ଟିକିଏ ଘସରା ହେବା ଆରମ୍ଭ କରେ । ଏହା ଯେ ସ୍ୱାଭାବିକ, ଏକଥା ସେମାନଙ୍କ ମନକୁ ଆସେନା । ଯାହା ପାଇବାକୁ ଇଚ୍ଛା ତାହା ନ ମିଳିଲେ ଅଭାବବୋଧ ଅନୁଭବ ଘଟେ । ସମ୍ପର୍କରେ କିଛିଟା ଶୀତଳ ଏବଂ ଶିଥିଳ ଭାବ ଭରିଯାଏ । ଆଶା ଓ ପ୍ରତ୍ୟାଶା ମଧ୍ୟରେ ତାଳ ରହେ ନାହିଁ । ଜୀବନଟା ବେତାଳିଆ ଓ ବେସୁରା ହେବା ଆରମ୍ଭ କରେ । ଏହା ବୋଲି ସମସ୍ତଙ୍କ ଜୀବନରେ ଠିକ୍ ଏଇଆ ଘଟେ ବୋଲି ମୁଁ କହିପାରିବିନି । ଏହି ପ୍ରକ୍ରିୟାରେ ମାତ୍ରାଭେଦ ଥାଏ । ହୁଏତ ଭଲ ପାଇବା ବଢୁଥାଏ ଜୀବନଟା ଘସରା ହେବା ସତ୍ତ୍ୱେ । ସନ୍ତାନ ଜନ୍ମହେବା ଯାଏ ପତି ପତ୍ନୀଙ୍କ

ପ୍ରେମ ଏକ ପ୍ରକାର ଗତାନୁଗତିକତା ମଧ୍ୟରେ ଚାଲେ ।

ସନ୍ତାନ ଜନ୍ମ ହେବା ପରେ ପତି-ପତ୍ନୀ ମଧ୍ୟରେ ସାଧାରଣତଃ ଏକ ଟାଣୁଆ ସେତୁ ସୃଷ୍ଟି ହୁଏ । ଏହି ସେତୁ ଏକରକମ ଅଭଂଗା ସମ୍ପର୍କର ମୂଳଦୁଆ ସ୍ଥାପନ କରେ । ସ୍ୱାମୀ-ସ୍ତ୍ରୀ ସନ୍ତାନକୁ ଯେତିକି ଭଲ ପାଆନ୍ତି, ପରସ୍ପରକୁ ଅଜାଣତରେ ପୂର୍ବଠାରୁ ଗାଢତର ଭଲ ପାଇବା ଆରମ୍ଭ କରନ୍ତି । ସେମାନଙ୍କ ମଧ୍ୟରେ ଥିବା ପୂର୍ବର ବନ୍ଧନ ଏବେ ଅଚ୍ଛେଦ୍ୟ ହୋଇଉଠେ । କିନ୍ତୁ ସନ୍ତାନକୁ ମା' ଯେତିକି ଅଧିକ ଭଲ ପାଏ, ସ୍ୱାମୀ ମନରେ ଟିକିଏ ଖଟ୍‌କା ଆସେ, ପତ୍ନୀ ଆଗ ପରି ତାଙ୍କୁ ଧ୍ୟାନ ଦେଉନାହାନ୍ତି । ତଥାପି ପତି-ପତ୍ନୀ ମଧ୍ୟରେ ଏହି କାରଣରୁ ବିବାଦ ସୃଷ୍ଟି ହୁଏନା । ପତ୍ନୀ ନିଶ୍ଚୟ ପୂର୍ବପରି ସ୍ୱାମୀଙ୍କ ଯତ୍ନନେବା ସମ୍ଭବ ନୁହେଁ । କାରଣ ମଣିଷ ଛୁଆ ସମସ୍ତ ପ୍ରାଣୀଙ୍କ ଛୁଆଙ୍କ ଠାରୁ ଅଧିକ ଅସହାୟ ହୋଇ ଜନ୍ମନିଏ । ତା'ର ତତ୍ତ୍ୱାବଧାନ କରିବାରେ ମା' ଅଗ୍ରାଧିକାର ଦେବାକୁ ବାଧ୍ୟ ସ୍ୱଭାବସୁଲଭ ଢଙ୍ଗରେ । ଏହି ସମୟ ଏକ ଖସଡା ସମୟ । ବିଶେଷକରି ମା' ନିଜର ସନ୍ତାନ ପାଇଁ ଯେତିକି ଆକୃଷ୍ଟ ଓ ଉଦ୍‌ବିଗ୍ନ ହୁଏ, ବାପ ନିଜର ସନ୍ତାନ ପ୍ରତି ଯଥେଷ୍ଟ ଆକୃଷ୍ଟ ହେଲେ ମଧ୍ୟ ନିଜର ପତ୍ନୀଠାରୁ ପୂର୍ଣ୍ଣ ଯତ୍ନ ଆଶା କରୁଥାଏ । ସେଥିପାଇଁ ଏହି ସମୟ ଦାମ୍ପତ୍ୟ ଜୀବନର ଆଶା ଓ ପ୍ରତ୍ୟାଶାର ଏକ ବିଡମ୍ବିତ ସମୟ । କେହି ସଚେତନ ଭାବରେ କାହାରିଠୁ ଦୂରେଇ ଯାଆନ୍ତି ନାହିଁ । ତଥାପି ଏକ ଦୂରତ୍ୱ ଆପଣା ଛାଏଁ ଆସିଯାଏ । ଏହି ଦୂରତ୍ୱ ଏକ ଅସ୍ଥାୟୀ ଚଳମାନ ପରିସ୍ଥିତି (Temporary Passing Phase) ବୋଲି ଧରି ନେଇଯିବା କଥା । କିନ୍ତୁ କେତେଜଣ ସ୍ୱାମୀ ଓ ସ୍ତ୍ରୀ ଏହି ସମୟ ସମ୍ପର୍କରେ ସଚେତନ ? କେତେଜଣ ଏହାକୁ ରାସ୍‌ନାଲାଇଜ୍ (Rationalise) କରିବାକୁ ସମୟ କାଢୁଛନ୍ତି । ଏହି ଦୂରତ୍ୱ ଯଦି ସ୍ଥାୟୀ ହୋଇଯାଏ, ତେବେ ପତି ପତ୍ନୀ ମଧ୍ୟରେ ଏକ ସ୍ଥାଣୁତ୍ୱର ପ୍ରାଚୀର ଠିଆ ହୋଇଯାଏ । କେବଳ ଯେ ସନ୍ତାନ ଯୋଗୁଁ ଏହା ଘଟେ ତାହା ନୁହେଁ । ସନ୍ତାନ ବୟସ୍କ ହେବା ସହିତ ଦ୍ୱିତୀୟ, ତୃତୀୟ ଏବଂ କ୍ରମାନ୍ୱୟରେ ଅଧିକ ସନ୍ତାନ ଆସିପାରନ୍ତି । କିନ୍ତୁ ଦାମ୍ପତ୍ୟ ଜୀବନରେ ଆଉ ଅନେକ ଆଶା-ପ୍ରତ୍ୟାଶାର ଦ୍ୱନ୍ଦ୍ୱ ଉପୁଜେ । ତାହା ତିକ୍ତତାରେ ପରିଣତ ହୋଇପାରେ କିମ୍ବା ନ ହୋଇପାରେ ମଧ୍ୟ । ତିକ୍ତତାରୁ ଦାମ୍ପତ୍ୟ ଜୀବନ ନୀରସ ହେବା ଆରମ୍ଭ ହୁଏ । ସନ୍ତାନମାନେ (ପୁଅ ବା ଝିଅ ହୁଅନ୍ତୁ) ଏବେ କୈଶୋରରେ ପହଞ୍ଚିଲା ବେଳକୁ ବାପ ମା'ଙ୍କ ଘର ଭିତରେ ନିଜ ପାଇଁ ସ୍ୱତନ୍ତ୍ର ସ୍ଥାନ ଖୋଜିବା ଆରମ୍ଭ କରି ଦେଇଛନ୍ତି ।ବାପା ମା'ଙ୍କ ଜୀବନଯାତ୍ରା ସହିତ ସେମାନେ ନିଜ ପାଇଁ ବିଶେଷ କୌଣସି ମେଳ ଦେଖିପାରୁ ନାହାଁନ୍ତି । କୈଶୋରରୁ ଯୌବନ ମଧ୍ୟରେ ଯେଉଁ ତିନି ଚାରି ବର୍ଷର ସନ୍ଧି ଯାତ୍ରା, ସେହି ସମୟରେ ସନ୍ତାନମାନେ ନିଜର ସ୍ୱତନ୍ତ୍ର ଜୀବନ ପରିବର୍ତ୍ତେ ସ୍ୱାଧୀନ ଜୀବନ ପ୍ରତିପାଦିତ କରି ନେଉଛନ୍ତି । ଏହି ସ୍ୱାଧୀନ ଜୀବନ ମଧ୍ୟରେ ସେମାନେ ଏକ ନିଜସ୍ୱ ସତ୍ତା ସୃଷ୍ଟି କରି ନେଉଛନ୍ତି । ଗୋଟିଏ ଛାତ ତଳେ ପିତାମାତାଙ୍କ ସହିତ ରହୁଥିଲେ ମଧ୍ୟ, ପିତାମାତାଙ୍କ ଉପରେ ନିଜର ଖର୍ଚ୍ଚ, ସୁଖ, ସମ୍ଭୋଗ ଏବଂ ପାଠପଢ଼ା ଇତ୍ୟାଦି ଯାବତୀୟ କ୍ଷେତ୍ରରେ ଆର୍ଥିକ ଦୃଷ୍ଟିରୁ ପୂର୍ଣ୍ଣ ନିର୍ଭରଶୀଳ ହୋଇଥିଲେ ମଧ୍ୟ ସନ୍ତାନମାନେ ପାରିବାରିକ ଝଞ୍ଜାଳରେ ଖୁବ୍ ବେଶୀ ଅଂଶୀଦାର ହେବାକୁ ଚାହାଁନ୍ତି ନାହିଁ । ପାଶ୍ଚାତ୍ୟ ଜଗତରେ

ଚାଲିଥିବା ଯୁବ ସଭ୍ୟତାର ଅନୁକରଣ ଫଳରେ ଏହା ହେଉଛି ସତ୍ୟ । କିନ୍ତୁ ପାଶ୍ଚାତ୍ୟ ଜଗତରେ ବାପା ମା' ଧନୀ ହୁଅନ୍ତୁ କି ମଧ୍ୟବିତ୍ତ ସ୍ତରର ହୁଅନ୍ତୁ ସ୍କୁଲ ପାଠ୍ୟକ୍ରମ ଶେଷପରେ ପୁଅ ଝିଅମାନେ ପିତାମାତାଙ୍କ ଠାରୁ ସବୁ ଦିଗରୁ ସ୍ୱତନ୍ତ୍ର ଏବଂ ସ୍ୱାଧୀନ ଜୀବନଯାପନ କରିବାର ସ୍ୱାଭିମାନ ରଖନ୍ତି । ଉଚ୍ଚତର ଶିକ୍ଷା ପାଇଁ ସେମାନେ ନିଜେ କାମ କରି ନିଜର ଅର୍ଜନରେ ଶିକ୍ଷା ହାସଲ କରନ୍ତି । ଅନେକ ସମୟରେ ସେମାନେ ବ୍ୟାଙ୍କରୁ ଋଣ ନେଇ ଏପରିକି ପିତାମାତାଙ୍କ ଠାରୁ ଋଣ ନେଇ କଲେଜ କିମ୍ବା ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହୁଅନ୍ତି । ନିଯୁକ୍ତିକ୍ଷମ ହେଲେ ଏହି ଋଣ ପରିଶୋଧ କରନ୍ତି । ଶିକ୍ଷାର ଖର୍ଚ୍ଚ ସେସବୁ ଉନ୍ନତ ଧନୀ ଦେଶରେ ଯଥେଷ୍ଟ ବେଶୀ । ଯେଉଁମାନେ ମେଧାବୀ ନୁହଁନ୍ତି, ସେମାନେ କଲେଜ କିମ୍ବା ବିଶ୍ୱବିଦ୍ୟାଳୟରେ ସହଜରେ ପ୍ରବେଶ କରିବାକୁ ସୁଯୋଗ ପାଆନ୍ତି ନାହିଁ । ମେଧାବୀ ହେଲେ ମଧ୍ୟ ଅର୍ଥ ଅଭାବରୁ ବହୁ ଯୁବକ ଯୁବତୀ ସ୍କୁଲ ଶିକ୍ଷା ପରେ କୌଣସି ନିଯୁକ୍ତି ଗ୍ରହଣ କରନ୍ତି ଉଚ୍ଚତର ଶିକ୍ଷା ହାସଲ ପାଇଁ । ଅତି ମେଧାବୀ ଛାତ୍ରଛାତ୍ରୀ କୌଣସି ଫାଉଣ୍ଡେସନରୁ କିମ୍ବା ବିଶ୍ୱବିଦ୍ୟାଳୟମାନଙ୍କରୁ ବୃତ୍ତି ପାଇ ଶିକ୍ଷାଲାଭ କରିବାର ସୁଯୋଗ ପାଆନ୍ତି । ତେଣୁ ପାଶ୍ଚାତ୍ୟ ଜଗତର ଯୁବ ସନ୍ତାନ ନିଜ ଉପରେ ନିର୍ଭର କରି ଶିକ୍ଷା ଓ ନିଯୁକ୍ତି ସନ୍ଧାନରେ ଚାଲୁଛନ୍ତି । ଭାରତରେ ସେ ସ୍ୱାଭିମାନୀ ସନ୍ତାନଗୋଷ୍ଠୀ ନାହାଁନ୍ତି । ସେମାନେ ପିତାମାତାଙ୍କ ଠାରୁ ଯାହା ଆଶା କରନ୍ତି, ତାହା ସେମାନଙ୍କର ଦାବି ବୋଲି ଭାବନ୍ତି । ପିତାମାତା ଯାହା ସେମାନଙ୍କ ଠାରୁ ଆଶା କରନ୍ତି, ତାହା ଏକ କୃପାଭିକ୍ଷା ପରି । ବାପା ମା ଯଦି ନିଜେ ଯଥେଷ୍ଟ ସ୍ୱଚ୍ଛଳ ନହେଲେ, ତେବେ ସ୍ୱାଭାବିକ ଭାବରେ ସନ୍ତାନ ଠାରୁ ବିଶେଷ କରି ପୁତ୍ରଠାରୁ କିଛି ପ୍ରତ୍ୟାଶା ରଖିବେ ଓ ରଖୁଛନ୍ତି । ଅଧିକାଂଶ କ୍ଷେତ୍ରରେ ଯୋଗ୍ୟ ପୁତ୍ରମାନେ ପିତାମାତାଙ୍କ ଆଶା କିମ୍ବା ପ୍ରତ୍ୟାଶା ପୂରଣ କରିବାକୁ ଆଗ୍ରହୀ ନୁଅନ୍ତି କିମ୍ବା ସେମାନଙ୍କରଆୟ ଯେତେ ଅଧିକ ହେଲେ ବି 'ନିଜର' ଅଣୁଭିତ୍ତିକ (Nuclear Family) ପରିବାର ପୋଷଣ ପାଇଁ ଯଥେଷ୍ଟ ହେଉନାହିଁ ବୋଲି ସେମାନେ ଭାବୁଛନ୍ତି । ଏହାର ଅନ୍ୟ ଅସଲ ଅର୍ଥ ହେଲା ପିତାମାତା ନିଜ ପରିବାରର ଅବିଭାଜ୍ୟ ଅଂଶବିଶେଷ ବୋଲି ପୁତ୍ର କିମ୍ବା ସନ୍ତାନମାନେ ଭାବିପାରୁ ନାହାଁନ୍ତି ।

ଏହାଛଡ଼ା ଅନ୍ୟ ଏକ ଦିଗ ପ୍ରତି ଦୃଷ୍ଟି ଫେରାଇବା ଆବଶ୍ୟକ । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଅନେକ ପ୍ରଥିତଯଶା ବୟସ୍କ ବୃଦ୍ଧାବସ୍ଥାରେ ଅଛନ୍ତି, ଯେଉଁମାନଙ୍କର ନିଜସ୍ୱ ଆୟ ପର୍ଯ୍ୟାପ୍ତ ଥିଲେ ମଧ୍ୟ ସେମାନଙ୍କର ତତ୍ତ୍ୱାବଧାନ କରିବାକୁ କେହି ନାହାଁନ୍ତି । ସନ୍ତାନମାନେ ଯଥେଷ୍ଟ ଯୋଗ୍ୟ ହୋଇଛନ୍ତି ଏବଂ ଭାରତ ଭିତରେ ଓ ବାହାରେ ଦୂରରେ ରହୁଛନ୍ତି । ସନ୍ତାନ ଯୋଗ୍ୟ ହେଉ ଏକଥା ପ୍ରତ୍ୟେକ ବାପା ମା ଚାହାନ୍ତି ସତ୍ୟ; କିନ୍ତୁ ବୃଦ୍ଧାବସ୍ଥାରେ ସନ୍ତାନମାନେ ଦେଖାଶୁଣା କରିବେ, ରୁଗ୍ଣ ପିତାମାତାଙ୍କ ସେବା କରିବେ ଏହାର ଆଶାଥାଏ । ପିତାମାତା ସନ୍ତାନଙ୍କ ପାଇଁ ଅତୀତରେ ଯାହା କରିଛନ୍ତି, ତାହା ବଦଳରେ କିଛି ପାଇବାକୁ ଚାହାଁନ୍ତି । ଏହାହିଁ ପ୍ରତ୍ୟାଶା । କିନ୍ତୁ ଏପରି ଆଶା କିମ୍ବା ପ୍ରତ୍ୟାଶା ଅର୍ଥହୀନ । ଏହି ସନ୍ତାନମାନେ ଯେତେବେଳେ ବାର୍ଦ୍ଧକ୍ୟ ଆଡ଼କୁ ଗତି କରିବେ ନିଜର ସନ୍ତାନମାନଙ୍କ ଠାରୁ ପ୍ରତ୍ୟାଶା ରଖିବେ ଯାହା ପୂରଣ ହେବାର ସମ୍ଭାବନା ଆହୁରି କ୍ଷୀଣ । ତେଣୁ ମଣିଷ ଯେତେବେଳେ କାହାକୁ କିଛି

ଦେଉଛି ବିନା ପ୍ରତିବାଦରେ, କୌଣସି ପ୍ରତ୍ୟାଶା ନ ରଖି ତାହା ଦେଇଚାଲିବା ହିଁ ଶ୍ରେୟଃ ।

ଏହା ସାମାଜିକ ଜୀବନରେ ମଧ୍ୟ ସେତିକି ପ୍ରଯୁଜ୍ୟ । କେହି ସାହାଯ୍ୟ ଭିକ୍ଷା କଲେ ଯଦି ଦେଇହେବ ଦେଇଯାଆ । ଏହି ସାହାଯ୍ୟ ବଦଳରେ ଯେତେବେଳ ମୋର କୌଣସି ସାହାଯ୍ୟ ଆବଶ୍ୟକ ହେବ ସେତେବେଳେ ଏହି ସାହାଯ୍ୟ ପାଇବା ବ୍ୟକ୍ତିଙ୍କ ଠାରୁ କୌଣସି ସାହାଯ୍ୟ ପାଇବାର ଆଶା ରଖିନଥିବା । ବରଂ ସାହାଯ୍ୟ ବଦଳରେ ଆଘାତ ମିଳିବାର ସମ୍ଭାବନା ଯଥେଷ୍ଟ ଅଧିକ । ତାହା ହିଁ ମଣିଷ ଜୀବନର ସତ୍ୟ । ଏଥିରେ ଯଦି ଅନ୍ୟଥା ଘଟେ ତେବେ ତାହା ଗୋଟିଏ ବ୍ୟତିକ୍ରମ ବୋଲି ବୁଝିବାକୁ ହେବ । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ କଥା ହେଲା ରାଜନୀତିଜ୍ଞମାନେ ଯେତେବେଳେ ଭୋଟ ମାଗନ୍ତି ସେମାନେ ଅନେକ ଆଶାର ସଞ୍ଚାର କରନ୍ତି । ପ୍ରତ୍ୟେକ ଭୋଟର ମନରେ ଆସେ ଯେ ଅମୁକ ପ୍ରାର୍ଥୀଙ୍କୁ ଭୋଟଦେଲେ ସେ କିଛି ପ୍ରତିଦାନ ପାଇବ । ଏହି ପ୍ରତିଦାନ ବ୍ୟକ୍ତିଗତ ସ୍ତରର ହୋଇପାରେ କିମ୍ବା ସାମଗ୍ରିକ ସାମାଜିକ ସ୍ତରରେ ହୋଇପାରେ । କିନ୍ତୁ ଏପରି ପ୍ରତ୍ୟାଶା ରଖି ଭୋଟ ଦିଆଗଲେ ନିରାଶା ହିଁ ସାର ହେବ । ଭୋଟ ଦେଲାବେଳେ ପ୍ରାର୍ଥୀଠୁଁ କିଛି ପାଇବାର ପ୍ରତ୍ୟାଶା ନ ରଖି ଭୋଟଦେଲେ ନାଗରିକ ଅପେକ୍ଷାକୃତ ଶାନ୍ତି ପାଇବେ । କାରଣ ନିର୍ବାଚିତ ହେଲେ ସେହି ପ୍ରାର୍ଥୀ କୌଣସି ଆଶା ପୂରଣ କରିବାକୁ ଆଗ୍ରହୀ କିମ୍ବା ସମର୍ଥ ହେବନାହିଁ । ଯଦି ନିର୍ବାଚନରେ ସଫଳତା ନ ମିଳେ ତେବେ ପ୍ରାର୍ଥୀ ଠାରୁ ଆଉ କ'ଣ ଆଶା କରାଯାଇପାରେ ?

ତା।୨୩।୭।୯୫



# ଖାଦ୍ୟ

ସ୍ୱାଧୀନତା ପରେ ଭାରତବର୍ଷରେ ଖାଦ୍ୟାଭାବ ଉତ୍କଟ ରହିଆସିଛି । ଖାଦ୍ୟାଭାବ ବୋଇଲେ ପୁଷ୍ଟିକାରକ ଖାଦ୍ୟ କଥା କୁହାଯାଉନାହିଁ । ସର୍ବନିମ୍ନ ଚାହିଦାର ରୁଟି ଓ ଭାତର ଅଭାବ ଦେଶର ୫୦ ରୁ ୬୦ ଭାଗ ଲୋକଙ୍କ ପାଇଁ ଜୀବନର ପାରମ୍ପରିକ ସ୍ଥାୟୀ ସମସ୍ୟା । ୧୯୫୦, ୧୯୬୦ ଦଶକ ଓ ୧୯୭୦ ଦଶକର ମଧ୍ୟଭାଗ ପର୍ଯ୍ୟନ୍ତ ଏହି ଗୋଷ୍ଠୀର ଲୋକଙ୍କ ପାଇଁ ଗହମ ଓ ଅଳ୍ପ ଭାଗ ଚାଉଳ ଦାନ ଭାବରେ କିମ୍ବା ଋଣ ଭାବରେ ସାହାଯ୍ୟ ସ୍ୱରୂପ ଆମଦାନୀ କରିବାକୁ ପଡୁଥିଲା । ଆମେରିକାରୁ ପି.ଏଲ.୪୮୦ ବ୍ୟବସ୍ଥାରେ ଋଣ ଆକାରରେ ଖାଦ୍ୟ ବିଶେଷ କରି ଗହମ 'ସାହାଯ୍ୟ' ଭାରତ ଗ୍ରହଣ କରୁଥିଲା । ଏହି ପି.ଏଲ.୪୮୦ ଗହମ(ଋଣ) ସାହାଯ୍ୟର ଆର୍ଥିକ ରୂପ ଏପରି ବିପୁଳ ଆକାର ଧାରଣ କଲା ଯେ, ଆମ ଦେଶର ଅର୍ଥନୀତିକୁ ଏହା ଓଲଟ ପାଲଟ ଏବଂ ଏପଟ ସେପଟ କରିବାକୁ ଲାଗିଲା । କଥା ଥିଲା ଆମେରିକା ଏହି ଗହମର ଦାମ 'ଟଙ୍କା' ଆକରରେ ନେବ । 'ଟଙ୍କା' ଆକାରରେ ହଜାର ହଜାର କୋଟି ଟଙ୍କା ଆମେରିକାର ଭାରତବର୍ଷ ଭିତରେ ଜମା ହୋଇଗଲା । ଭୋକିଲା ଭାରତବର୍ଷରେ ଆମେରିକାର ଏହି ପୁଞ୍ଜି ଟଙ୍କା ଆମ ସରକାର ଅନୁସରଣ କରୁଥିବା ଅର୍ଥନୀତିରେ ରାଜନୀତିରେ, ଗଣମାଧ୍ୟମ ଅର୍ଥାତ ସମ୍ବାଦ ଓ ସାମ୍ବାଦିକ ଜଗତରେ ଅଙ୍ଗୁଳି ପ୍ରବେଶ କଲା । ସରକାର ଗଢିବା ଭାଙ୍ଗିବାରେ ଏହି ଟଙ୍କା ଉଦାର ଭାବରେ ବ୍ୟବହୃତ ହେଲା ବୋଲି ଅଭିଯୋଗ ହେଲା । ବିଶେଷ କରି ଷାଠିଏ ଦଶକରେ ରାଜ୍ୟମାନଙ୍କରେ କଂଗ୍ରେସ ସରକାରଗୁଡିକ ଆଉ ନିର୍ବାଚନରେ ନିଜର କ୍ଷମତା ରକ୍ଷା କରିବାରେ ଆଘାତ ପଡ଼ୁଥିଲା । କଂଗ୍ରେସର ଅଭିଳାଷୀ ନେତାମାନେ ବାହାରି ଯାଇ ବିରୋଧୀ ଦଳମାନଙ୍କ ସହିତ ମିଶି ସରକାର ଗଢିଲେ । ଅଭିଯୋଗ ହେଲା ଯେ, ସି.ଆଇ.ଏ. ଭାରତୀୟ ରାଜନୀତିରେ ଅସ୍ଥିରତା ସୃଷ୍ଟି କରୁଛି । ଆମେରିକା ହାତରେ ହଜାର ହଜାର କୋଟି ଟଙ୍କା ଆକାରରେ ରହିଥିଲା, ଯାହାକି ସେମାନେ ନିଜ ଇଚ୍ଛା ଅନୁସାରେ ଖର୍ଚ୍ଚ କରିବେ । ଏହା କେଉଁ ବାଟରେ ଖର୍ଚ୍ଚ ହେଲା, ତାହା ସେମାନେ ଭାରତ ସରକାରଙ୍କୁ କିମ୍ବା ଭାରତୀୟ ରିଜର୍ଭ ବ୍ୟାଙ୍କକୁ ଜଣାଇବାର କୌଣସି ବାଧ୍ୟତା ନଥିଲା ।

ଅବଶ୍ୟ ପୃଥିବୀରେ ଅନେକ ଦେଶ ଅଛନ୍ତି ଯେଉଁମାନେ ନିଜର ଖାଦ୍ୟଶସ୍ୟ ଚାହିଦା ପାଇଁ ବାହାରୁ ଆମଦାନୀ ଉପରେ ନିର୍ଭର କରନ୍ତି । ୟୁରୋପର ଏବଂ ଆରବ ଅଞ୍ଚଳର ଅନେକ ରାଷ୍ଟ୍ରଙ୍କର ଏହି ପରିସ୍ଥିତି ରହିଛି । ଏପରିକି ବ୍ରିଟେନ ମଧ୍ୟ ନିଜର ଆବଶ୍ୟକ ଗହମ ନିଜେ ଉତ୍ପାଦନ କରେନାହିଁ । ତେଣୁ

ସେମାନେ ଯେଉଁ କ୍ଷେତ୍ରରେ ଧନୀ ଏବଂ ବିଦେଶୀ ମୁଦ୍ରା ନିଜର ରପ୍ତାନିଯୋଗ୍ୟ ଦ୍ରବ୍ୟ ଜରିଆରେ ଅର୍ଜନ କରିବାକୁ ସମର୍ଥ ସେମାନେ ଖାଦ୍ୟ କ୍ଷେତ୍ରରେ ବଳକା ରାଷ୍ଟ୍ରମାନଙ୍କଠାରୁ ଖାଦ୍ୟଦ୍ରବ୍ୟ ଆମଦାନୀ ସହଜରେ କରିପାରନ୍ତି । ଏ ଦୃଷ୍ଟିରୁ ଭାରତ ବିଶେଷ ସମର୍ଥ ଦେଶ ନୁହେଁ । ଏବେ ମଧ୍ୟ ହୋଇନାହିଁ ।

କେହି ଯୁକ୍ତି କରିପାରନ୍ତି ଆମେ ଜାଣିଛୁ କେନ୍ଦ୍ର ସରକାରଙ୍କ ହାତରେ ଖାଦ୍ୟଶସ୍ୟ ବିଶେଷ କରି ଗହମ ଓ ଚାଉଳ ଯଥେଷ୍ଟ ମହଜୁଦ ରହିଛି । ୧୯୯୫ ମେ' ମାସ ସୁଦ୍ଧା ଭାରତର ଖାଦ୍ୟ ଭଣ୍ଡାରରେ କୋଟିଏ ୯୨ ଲକ୍ଷ ଟନ ଗହମ ଏବଂ କୋଟିଏ ୯୨ ଲକ୍ଷ ଟନରୁ ଉର୍ଦ୍ଧ୍ୱ ଚାଉଳ ମହଜୁଦ୍ ରହିଛି । ଭାରତ ସରକାରଙ୍କ ହାତରେ ମୋଟ ୩ କୋଟି ୧୯ ଲକ୍ଷ ଟନ ଖାଦ୍ୟଶସ୍ୟ ରହିଛି । ତେଣୁ ଖାଦ୍ୟର ଏବେ ଅଭାବ ନାହିଁ, ଯାହା ମୁଁ ଉପରେ ବର୍ଣ୍ଣନା କରିଛି । ସରକାରଙ୍କ ହାତରେ କୌଣସି ଜରୁରୀ ପରିସ୍ଥିତିର ସାମନା କରିବା ପାଇଁ ନିଶ୍ଚୟ ଏହି ବିପୁଳ ଶସ୍ୟଭଣ୍ଡାର ରହିଛି ବୋଲି ମାନିବାକୁ ହେବ । କିନ୍ତୁ ତଥାପି ଭାରତର ୯୨ କୋଟି ଲୋକଙ୍କ ମଧ୍ୟରୁ ଅଧାରୁ ଅଧିକ ଲୋକଙ୍କର ଭୋକ ମେଣ୍ଟୁନାହିଁ । କାହିଁକି ?

ଖାଦ୍ୟଶସ୍ୟ କିଣିବା ପାଇଁ ଏହି ୬୦ ଭାଗ ଲୋକଙ୍କ ହାତରେ ଯଥେଷ୍ଟ ପଇସା ନାହିଁ । ଥିଲେ ଏହି ବିପୁଳ ଶସ୍ୟଭଣ୍ଡାର ମହଜୁଦ୍ ରଖାଯାଇପାରନ୍ତା ନାହିଁ ।

ଯୋଜନା କମିଶନଙ୍କ ନିଜ ହିସାବ ଅନୁଯାୟୀ ୧୯୯୩-୯୪ ବର୍ଷରେ ଭାରତୀୟମାନଙ୍କର ମୁଣ୍ଡପିଛା ଦିନକୁ ଖାଦ୍ୟ ପରିମାଣ ୪୬୪ ଗ୍ରାମକୁ ଖସିଆସିଛି । ଏହା ୯୧-୯୨ ବର୍ଷରେ ପ୍ରାୟ ୫୧୦ ଗ୍ରାମ ଥିଲା । ଭାରତର ହାରାହାରି ମୁଣ୍ଡପିଛା ଖାଦ୍ୟ ପରିମାଣର ଓଜନ ୪୬୪ ଗ୍ରାମ ହେଲେ ଭାବନ୍ତୁ ସେଥିରେ ଖାଦ୍ୟଶସ୍ୟର ପରିମାଣ କେତେ ଥିବ । ଭଲ କରି ବୁଝିବାକୁ ଚେଷ୍ଟା କଲେ ଆପଣ ଜାଣିବେ ଯେ, ଜଣେ ଭାରତୀୟ ଦିନକୁ ଯେତେ ଆହାର ପେଟକୁ ନେଉଛି, ତାହାର ଓଜନ ମୋଟରେ ହାରାହାରି ୪୬୪ ଗ୍ରାମ ଅର୍ଥାତ ଅଧ କିଲୋଗ୍ରାମରୁ କମ୍ । ଏଥିରେ ରୁଟି, ଭାତ, ଡାଲି, ତରକାରୀ, ଆଉ ଯାହା କିଛି ଥାଇପାରେ । ଜଣେ ସାଧାରଣ ଲୋକ ଦାମିକା ଖାଦ୍ୟ ନଖାଇଲେ ମଧ୍ୟ ସାଧାରଣ ସ୍ୱାସ୍ଥ୍ୟରକ୍ଷା ପାଇଁ ଦିନକୁ ଅନ୍ତତଃ ଦୁଇ କିଲୋ ଖାଦ୍ୟ ପାଇବା କିମ୍ବା ଖାଇବା ଆବଶ୍ୟକ । ତେଣୁ ଭାରତ କେତେ ପଛରେ ଅଛି ଆପଣ ହିସାବ କରି ଦେଖନ୍ତୁ । ପୁଣି ଏ ହାରାହାରି ହିସାବ ମଧ୍ୟରେ ଅତି ଧନୀ, ଧନୀ, ଉଚ୍ଚ ମଧ୍ୟବିତ୍ତ, ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ, ଦରିଦ୍ର, ଅତି ଦରିଦ୍ର ଓ ବଞ୍ଚିତ ଲୋକ ମିଶିକରି ରହିଛନ୍ତି । ନିମ୍ନ ମଧ୍ୟବିତ୍ତ ପର୍ଯ୍ୟନ୍ତ ସମସ୍ତେ ଅନ୍ତତଃ ୩ ବଖତ 'ପେଟପୂରା' ଖାଉଛନ୍ତି । ଅତି ଧନୀ ଠାରୁ ନିମ୍ନ ମଧ୍ୟବିତ୍ତ ପର୍ଯ୍ୟନ୍ତ ଲୋକଙ୍କ ସଂଖ୍ୟା ଶତକଡା ୪୦ ଭାଗ ଧରାଯାଉ । ବାକି ଯେଉଁ ୬୦ ଭାଗ ରହିଲେ, ସେମାନେ କ'ଣ ଭାରତର ଯୋଜନା କମିଶନର ହାରାହାରି ହିସାବରେ ୪୬୪ ଗ୍ରାମ ଦୈନନ୍ଦିନ ଭୋଜନର ଅଧିକାରୀ ହୋଇପାରିବେ ? ତାହା ସମ୍ଭବ ନୁହେଁ । ଉପରେ ଥିବା ୪୦ ଭାଗ ଲୋକ ସେମାନଙ୍କର ପୂର୍ଣ୍ଣ ଖାଦ୍ୟ ଚାହିଦା ମେଣ୍ଟାଇ ସାରିଲେ ଯାହା ବଳିବ ତାହା ତଳେ ଥିବା ୬୦ ଭାଗ ଲୋକଙ୍କ ମଧ୍ୟରେ ବାଣ୍ଟି ହୋଇଯିବ । ତେଣୁ ସମଗ୍ର ଲୋକସଂଖ୍ୟାଙ୍କ ପାଇଁ ଯଦି ହାରାହାରି ୪୬୪

ଗ୍ରାମ ଖାଦ୍ୟ ଦିନକୁ ପଡେ, ଏହି ତଳଲୋକଙ୍କ ଭାଗରେ ତାହା ୨୦୦ ଗ୍ରାମରୁ ମଧ୍ୟ ତଳକୁ ଖସିପଡିବ । ତେଣୁ ଖାଦ୍ୟ ସମସ୍ୟାର ଅସଲ ରୂପ କ'ଣ ବୁଝିବାକୁ ହେବ । ଏହି ୨୦୦ ଗ୍ରାମ ଖାଦ୍ୟ କିଣିବାକୁ ମଧ୍ୟ ଅନେକ ଲୋକଙ୍କର କ୍ରୟଶକ୍ତି ନାହିଁ । ତେଣୁ ସେମାନେ ଚିରନ୍ତନ ଭୋକିଲା ରହିବେ, ସରକାର ଖାଦ୍ୟଭଣ୍ଡାର ସମ୍ପର୍କରେ ଯାହା ଦାବି କରନ୍ତୁ ପଛକେ ।

୧୯୬୫ ମସିହାରେ ଲାଲବାହାଦୂର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଥିଲାବେଳେ ହିସାବ(ଏହି ପ୍ରକାରର ଯୋଜନା କମିଶନ ଆଦିର ହିସାବ) ଅନୁସାରେ ଦେଖାଗଲାଯେ, ଭାରତର ଚାହିଦାର ୭ ପ୍ରତିଶତ ଖାଦ୍ୟଶସ୍ୟ ଅଭାବ ରହିଛି । ତେଣୁ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ଦେଶର ଲୋକଙ୍କୁ ନିବେଦନ କଲେ ଯେ ଦେଶବାସୀ ପ୍ରତ୍ୟେକ ସପ୍ତାହରେ ଗୋଟିଏ ବେଳା ଉପାସ ରହନ୍ତୁ ଯଦ୍ୱାରା ଦେଶର ଖାଦ୍ୟ ସମସ୍ୟା କିଛିଟା ଲାଘବ ହେବ । ଲାଲବାହାଦୂରଙ୍କର ସଚ୍ଚୋଟପଣିଆ ଓ ପଟିଆରାର ଯଥେଷ୍ଟ ଓଜନ ଥିଲା । ପ୍ରକୃତରେ ଲୋକେ ବର୍ଷାଧିକ କାଳ ସପ୍ତାହରେ ଓଳିଏ ଉପାସ କଲେ । ଯେଉଁମାନେ ସପ୍ତାହରେ ମାତ୍ର ତିନିଚାରି ଓଳି ଖାଉଥିଲେ(ଆଜିବି ସେମାନେ ଅଛନ୍ତି) ସେମାନେ ମଧ୍ୟ ଆଉ ଓଳିଏ ଯେ ଓପାସ କଲେ ନାହିଁ, ତାହା ମଧ୍ୟ କହିହେବ ନାହିଁ । ତାଙ୍କ ପରେ ଆସିଥିବା ପ୍ରଧାନମନ୍ତ୍ରୀ ଏପରି ଏକ ଆହ୍ୱାନ ଦେବାକୁ ସାହସ କରିନାହାନ୍ତି ।

ଏକଥାଟା ପ୍ରଥମେ ମନକୁ ଆସିଲା କାହିଁକି ଜାଣନ୍ତି ? ଆମର ସାମାଜିକ ନିମନ୍ତ ମାନଙ୍କରେ ଯେଉଁ ପ୍ରଚୁର ଖାଦ୍ୟ ନଷ୍ଟ ହୁଏ, ତାହାକୁ ମିଶାଇଲେ ପ୍ରତି ସହରର କିମ୍ବା ପ୍ରତି ଗ୍ରାମର ଅନ୍ତତଃ ୧୦ ଭାଗ ଲୋକ ଗୋଟିଏ ସପ୍ତାହ ପେଟପୂରା ଭଲ ଭୋଜନ ପାଆନ୍ତେ । ବିବାହ ନିମନ୍ତ୍ରଣରେ ଗଲାବେଳେ ଏ ଦିଗଟିକୁ ନିମନ୍ତ୍ରିତ ଅତିଥିମାନେ ସଚେତନ ଭାବରେ ମନେରଖିଲେ କିଛିଟା ଉପକାର ହୁଅନ୍ତା । ଏହି ଖାଦ୍ୟ ନଷ୍ଟ ସମ୍ପର୍କରେ ଆଉ ଏକ ଲେଖାର ଅବତାରଣା କେବେ କରିବି ।

ତା୩।୯।୯୫



# ଦେବଦାସୀ

ଧର୍ମ ଏବଂ ଆଧ୍ୟାତ୍ମିକତା ମଧ୍ୟରେ ଗୋଟିଏ ପାର୍ଥକ୍ୟ ରହିଛି ଏକଥା ଅନେକ ଲୋକ ବୁଝିପାରନ୍ତି ନାହିଁ । ଧର୍ମ ନାମରେ ଯେଉଁସବୁ ଅସଭ୍ୟତା ଚାଲେ, ଆଧ୍ୟାତ୍ମିକ ସ୍ତରରେ ସେ ସବୁର ସ୍ଥାନ ନାହିଁ । ଅନେକ ଲୋକେ ଆଧ୍ୟାତ୍ମିକତା ସହିତ ଧର୍ମକୁ ଏକ କରି ଭାବନ୍ତି । ଆଧ୍ୟାତ୍ମିକତାର ଅସଲ ରୂପରେ ଧର୍ମରେ ଥିବା କଳୁଷର ସ୍ଥାନ ନାହିଁ । କିନ୍ତୁ ଧର୍ମ ଜଗତରେ ଅନେକ ବିରୂପ ପ୍ରଥା ଓ ବିଧି ପ୍ରଚଳନ ହୋଇଆସିଛି ମଣିଷ ମନର ବିକୃତି ନେଇ । ଏଥିରେ ଅନେକ ସ୍ଥାନରେ ନାରୀକୁ ଅତି ସହଜରେ ବ୍ୟବହାର କରିବାର ବିଧିକୁ ଭର୍ତ୍ତି କରି ଦିଆଯାଇଛି । ଦେବଦାସୀ ବ୍ୟବସ୍ଥା ସେହିପରି ମନ୍ଦିରମାନଙ୍କର ପୂଜା ଆରାଧନାରେ ଏକ ବିକୃତ ବ୍ୟବସ୍ଥା । ପୁରୀ 'ଜଗନ୍ନାଥ' ମନ୍ଦିର ଧର୍ମ ବ୍ୟବସ୍ଥା ଠାରୁ ଭିନ୍ନ ଏକ ଆଧ୍ୟାତ୍ମିକ ସଂସ୍କୃତି । ଏହି ସଂସ୍କୃତିରେ ଦେବଦାସୀ ବ୍ୟବସ୍ଥା କେବେ ଭର୍ତ୍ତି କରାଗଲା, ତାହା ଅନୁସନ୍ଧାନ ଓ ଗବେଷଣା ସାପେକ୍ଷ । କିନ୍ତୁ ଏହା ଯେ ପୁରୁଷପ୍ରାଧାନ୍ୟ ସମାଜ ବ୍ୟବସ୍ଥାର ଏକ ବିକୃତ ରୂପ ଏକଥା ନିଃସନ୍ଦେହରେ କୁହାଯାଇପାରିବ । ଅନେକ ବର୍ଷ ହେଲା ଦେବଦାସୀ ବ୍ୟବସ୍ଥା ଲୋପ ପାଇ ସାରିଲାଣି । କାରଣ ସମୟର ଗତିରେ ନାରୀମାନେ ଆଉ ଯୌନ ସଂସ୍କୃତିର ଶିକାର ହୋଇ ବ୍ୟବହୃତ ହେବାକୁ ଆଗ୍ରହୀ କିମ୍ବା ପ୍ରସ୍ତୁତ ନୁହନ୍ତି । ତେଣୁ କାଳଚକ୍ରରେ ଏହି ବିକୃତ ବ୍ୟବସ୍ଥାର ଅବକ୍ଷୟ ଘଟିଛି । କୌଣସି ନାରୀ ଅବିବାହିତା ରହି ଜଗନ୍ନାଥଙ୍କ ସମ୍ମୁଖରେ ନର୍ତ୍ତକୀ ସାଜିବ ଏବଂ ଗୀତ ଗାଇବ ଜୀବନସାରା କାହିଁକି ? ନର୍ତ୍ତକୀ ଏବଂ ଗାୟିକା ବିବାହ କାହିଁକି କରିବ ନାହିଁ ? ବିବାହିତା ହେଲେ ସେ ପବିତ୍ର ରହିବ ନାହିଁ ବୋଲି ଏକ ଧାରଣା କାହିଁକି ସୃଷ୍ଟି ହୋଇଛି ? ଯଦି ଅବିବାହିତା ରହି ମଧ୍ୟ ଯୌନଭୋଗରେ ଲିପ୍ତ ହୁଏ, କିନ୍ତୁ ତାହା ଲୁକ୍‌କାୟିତ ରହେ, ତେବେ ସେ ପବିତ୍ର ବୋଲି ଧରି ନିଆଯିବ କିପରି ? ଭଗବାନ ଓରଫ ଈଶ୍ୱର ଓରଫ ବିଷ୍ଣୁ ଓରଫ ଜଗନ୍ନାଥ ଦୈହିକ ସ୍ତରରେ ନାରୀର ଅନାବୃତ୍ତ ନର୍ତ୍ତନଶୀଳା ଶରୀରର ଚାକ୍ଷୁଷ ଉପଭୋଗ କରିବେ ଦେବଦାସୀ ମାଧ୍ୟମରେ, ଏହାର ତାତ୍ତ୍ୱିକ ଯଥାର୍ଥତା କ'ଣ ? ହଠାତ୍ ପୁରୁଣା କଳେବର ଛାଡି ନବକଳେବର ଗ୍ରହଣ କରିବା ପୂର୍ବରୁ ଦେବଦାସୀ ଖୋଜା କାହିଁକି ଆରମ୍ଭ ହେଲା ? କାହାର ପୋଖତ ମସ୍ତିଷ୍କରୁ ଏହି କଥାଟି ବାହାରିଲା ? ଯେଉଁମାନଙ୍କ ମୁଣ୍ଡରୁ ଏହି ବ୍ୟବସ୍ଥାର ପୁନରୁଦ୍ଧାର କଥା ବାହାରିଲା, ସେମାନେ ନିଜ ପରିବାରର କନ୍ୟାକୁ ଏଥିପାଇଁ କାହିଁକି ଦାନ କରୁନାହାନ୍ତି ? ସେମାନେ ଯଦି ଦଇତାପତି କିମ୍ବା ସେବାୟତ ହୋଇଥାନ୍ତି କିମ୍ବା ମନ୍ଦିର ପ୍ରଶାସନର ଦାୟିତ୍ୱରେ ଥାଆନ୍ତି ଏବଂ ଏହି ପ୍ରଥାରେ ଅନାବିଳ ଆସକ୍ତି କିମ୍ବା ବିଶ୍ୱାସ ରଖିଛନ୍ତି, ତେବେ ପର ଝିଅକୁ କାହିଁକି ଖୋଜୁଛନ୍ତି ? ଜଗନ୍ନାଥଙ୍କ ପ୍ରତି ଯଦି ସେମାନଙ୍କର ଏତେ ଆସକ୍ତି ଅନୁରକ୍ତି ରହିଛି, ତେବେ ସେମାନେ ନିଜ ପରିବାରର ଅବିବାହିତା କନ୍ୟାଙ୍କୁ

ଏହି ପ୍ରକାର ଏକ ଐଶ୍ୱରିକ କାର୍ଯ୍ୟକ୍ରମରେ ଅନୁପ୍ରେରିତ କରିବା କଥା । କାରଣ ସେମାନଙ୍କର ଜଗନ୍ନାଥଙ୍କ ସୁଖ ସମ୍ଭୋଗ ପ୍ରତି ଅସରନ୍ତି ଓ ଅମାପ ଭୟ ଏବଂ ଭକ୍ତି ରହିଛି । ସମ୍ବାଦପତ୍ରରେ ବିଜ୍ଞାପନ ଦେଇ ଅବିବାହିତା ଝିଅମାନଙ୍କୁ 'ଚାକିରି' ଲୋଭରେ ପ୍ରଲୁବ୍ଧ କରିବାର ଆବଶ୍ୟକତା ନଥିଲା । ପୁଣି ଯେଉଁ ଅବିବାହିତାମାନେ ଏଥିପାଇଁ ପ୍ରାର୍ଥୀ ହେବେ କିମ୍ବା ହେଲେ ସେମାନେ ବାହ୍ୟିକ ଦୃଷ୍ଟିରୁ ଅବିବାହିତା ଥାଇପାରନ୍ତି । କିନ୍ତୁ ସେମାନେ ନିଜ ଜୀବନରେ କୌଣସି ପୁରୁଷ ସହିତ ସମ୍ପର୍କ ରଖିନାହାନ୍ତି କିମ୍ବା କୌଣସି ପୁରୁଷ ପ୍ରତି ଆକୃଷ୍ଟ ହୋଇନାହାନ୍ତି, ଏକଥାର କିଏ ସାଟିଫିକେଟ ଦେବ ? ଏମାନେ ଏକନିଷ୍ଠ ହୋଇ କେବଳ ଜଗନ୍ନାଥଙ୍କୁ ନିଜର ଏକକ ପୁରୁଷ ମନେକରି ତାଙ୍କର ମନ ମୋହିତ କରିବାକୁ ନାଚିବେ ଏବଂ ଗୀତ ଗାଇବେ; ଅନ୍ୟ ପୁରୁଷ ପ୍ରତି ମନ ବଳାଇବେ ନାହିଁ ଏହାର ଗ୍ୟାରେଣ୍ଟି କିଏ ଦେବ ? ତାହାଛଡା ଜଗନ୍ନାଥ ଯେ ଏସବୁ ଚାହୁଁଛନ୍ତି ଏକଥା କେମିତି ଜଣାପଡିଲା ? ପୂଜିଲେ ଠାକୁର ନ ପୂଜିଲେ କାଠ କି ପଥର ଏକଥା ବି ତ ଜଣାଅଛି । ଆମେ ଜାଣିବା ଦରକାର ଯେ, ଜଗନ୍ନାଥ ଏସବୁ କଥା ଦରକାର କରୁଛନ୍ତି । ଏ ପ୍ରକାର ବ୍ୟବସ୍ଥାର ଅବତାରଣା କରିବା ଦ୍ୱାରା ଜଗନ୍ନାଥ ଧର୍ମ ହେଉ ବା ଜଗନ୍ନାଥ ସଂସ୍କୃତି ହେଉ କିମ୍ବା ଶେଷରେ ଜଗନ୍ନାଥଙ୍କ ପ୍ରତି ଥିବା ବିପୁଳ ଆଧାତ୍ମିକ ଆକର୍ଷଣ ପ୍ରତି ଘୋର ଭଣ୍ଡାମୀ ସୃଷ୍ଟି କରାଯାଉଛି । ଜଗନ୍ନାଥଙ୍କୁ ବଦନାମ କରାଯାଉଛି । ଜଗନ୍ନାଥଙ୍କର ପବିତ୍ର ଭାବମୂର୍ତ୍ତିକୁ କଳଙ୍କିତ କରଯାଉଛି । ପୁଣି ଯୁକ୍ତି କରାଯାଉଛି ଯେ, ଜଗନ୍ନାଥ ଶୟନରେ ନିଦ୍ରା ଯିବା ପୂର୍ବରୁ ରୁଦ୍ଧ କକ୍ଷରେ ଦେବଦାସୀ ଅନାବୃତ୍ତ ଶରୀରରେ ନୃତ୍ୟ କରିଲେ ଯାଇ ଜଗନ୍ନାଥଙ୍କୁ ନିଦ ଆସିବ । ଏହାଠାରୁ ଅଧିକ ଘୃଣ୍ୟ ଏବଂ ବିକୃତ ମାନସିକତା କ'ଣ ଆଉ ଥାଇପାରେ ? ଜଗନ୍ନାଥ କ'ଣ ଯୌନ କ୍ଷୁଧାର୍ତ୍ତ ମଣିଷ ? ପୁଣି ସେଠାରେ ବଡଭାଇ ବଳଭଦ୍ର ଓ ସାନଭଉଣୀ ସୁଭଦ୍ରା ବିଦ୍ୟମାନ ଅଛନ୍ତି । ଏ ପ୍ରକାର ଅସଂସ୍କୃତ ପରିକଳ୍ପନା ଧର୍ମପୀଠରେ ସେବା ଆରାଧନା କରୁଥିବା ଯେଉଁ ଲୋକମାନଙ୍କ ମନରେ ଆସୁଛି, ସେମାନେ ଜଗନ୍ନାଥଙ୍କ ନିକଟକୁ ଯିବାର ଅଧିକାରୀ ହୋଇପାରିବେ କି ? ଆଜିର ଜଗତରେ ଏହି ପ୍ରକାର ବ୍ୟବସ୍ଥା ଓ ପରିକଳ୍ପନା ବିରୋଧରେ ଯେ କ୍ରୁଦ୍ଧ ସ୍ୱର ଉଠୁନାହିଁ, ପ୍ରତିବାଦର କୋଳାହଳ ଶୁଭୁନାହିଁ ଏକଥା ଭାବିଲେ ଯେ କୌଣସି ସଭ୍ୟ ହୃଦୟ ମାର୍ମିକ ବେଦନା ଓ ଘୃଣା ଅନୁଭବ କରିବ । ଯେଉଁ ଝିଅମାନେ ସମ୍ବାଦପତ୍ରମାନଙ୍କରେ ଏ ସଂପର୍କରେ ବିତର୍କ ସବୁ ପ୍ରକାଶିତ ହେବାପରେ ସାକ୍ଷାତକାର ପାଇଁ ଆସି ଫେରିଗଲେ ସେମାନେ କ'ଣ ଭାବି ଏପରି ଚାକିରି ପାଇଁ ଆସିଥିଲେ ?

ସବୁଠାରୁ କ୍ଷୋଭର କଥା, ଓଡିଶାର ମୁଖ୍ୟମନ୍ତ୍ରୀ ମଧ୍ୟ ଏହି ବିକୃତ ଚିନ୍ତା ଓ ବ୍ୟବସ୍ଥାର ପକ୍ଷ ସମର୍ଥନ କରି ଦିଲ୍ଲୀ ଓ ଭୁବନେଶ୍ୱର ଠାରେ ଏକାଧିକବାର ବକ୍ତବ୍ୟ ପ୍ରକାଶ କରିଛନ୍ତି । ସଂସ୍କୃତି ଦୃଷ୍ଟିରୁ ଏହି ପରମ୍ପରାରେ କିଛି ଦୋଷ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ମତ ପ୍ରକାଶ କରିଛନ୍ତି । ଆଜିର ଆଧୁନିକତା ମଧ୍ୟରେ ଏପରି ବିକୃତ ଚିନ୍ତା ଆମର ମୁଖ୍ୟମନ୍ତ୍ରୀ ଗ୍ରହଣ କରିପାରୁଛନ୍ତି । ଏହାହିଁ ବିସ୍ମୟର ବିଷୟ । ଏପ୍ରକାର ଚିନ୍ତା ଓ ବ୍ୟବସ୍ଥାକୁ ସମୂଳେ ଲୋପ କରିବାକୁ ହେବ । କାହିଁ ମହିଳା ଓ ନାରୀ ସଂଗଠନମାନଙ୍କ ପକ୍ଷରୁ ତ କୌଣସି ପ୍ରତିବାଦ କିମ୍ବା ଖେଦର ସ୍ୱର ଶୁଭିନାହିଁ ? କିଏ ସମାଜ ।

ତା୨। ୧୦। ୯୫

❑❑❑

# ଗଣେଶ ମ୍ୟାଜିକ୍

ଜଣେ ବଙ୍ଗାଳି ଲେଖକ ଅନେକ ବର୍ଷ ତଳେ ''ଅଘଟଣ ଆଜ ଓ ଘଟେ''ନାମକ ଏକ ବହି ଲେଖିଥିଲେ । ମୁଁ ବଙ୍ଗଳା ପଢିପାରେ ନାହିଁ । କିନ୍ତୁ ମୋର ଜଣେ କଲିକତାରେ ରହୁଥିବା ଓଡିଆ ବନ୍ଧୁ ସେହି ବହିରୁ କେତେକ ଅଧ୍ୟାୟ ପଢି ଶୁଣାଇଥିଲେ । ଏହି ବହିଟିରେ ଲେଖକଙ୍କ ଅନୁଯାୟୀ କେତେଗୁଡିଏ ସତ୍ୟ ଘଟଣା ସମ୍ପର୍କରେ ସେ ଉଲ୍ଲେଖ କରିଥିଲେ । ଆଜି ମଧ ଅନେକ ଘଟଣା ଯାହାକୁ ଆଲୌକିକ କୁହାଯିବ ତାହା ଘଟୁଛି । ଏହି ଗୁଡିକ ଅ-ଘଟଣ ହୋଇଥିଲେ ବି ବାସ୍ତବ ଜୀବନରେ ଘଟିଥିବାର ସେ ବର୍ଣ୍ଣନା କରିଥିଲେ । ସେ ଅବତାରଣା କରିଥିବା ବିଷୟଗୁଡିକ(ଘଟଣାଗୁଡିକ) ଏବେ ମୋର ପାଶୋର ଯାଇଛି ।

କିନ୍ତୁ ମାତ୍ର କେତେଦିନ ତଳେ ଆମ ଦେଶରେ, ଆମ ରାଜ୍ୟରେ ଓ ଆମ ସହରରେ ଏପରି ଏକ 'ଅଲୌକିକ' ଘଟଣା ଘଟିଲା ବୋଲି କୁହାଯିବ । ଅଘଟଣ ଦୁର୍ଘଟଣା ନୁହେଁ । ଅଘଟଣଟି ଏପରି ଘଟଣା ଯାହା ଘଟିବା ସମ୍ଭବ ନୁହେଁ । ଯାହା ସମ୍ଭାବ୍ୟ ଘଟଣା ନୁହେଁ ତାହା ପ୍ରକୃତ ଘଟିଲେ ସେଥିରେ କିଛିଟା ଅପ୍ରାକୃତିକତା, ଅଲୌକିକତା ରହିଥାଏ, ଯାହାକୁ ମଣିଷର ଯୌକ୍ତିକ ମନକୁ ସନ୍ତୁଷ୍ଟ କରିପାରେ ନାହିଁ । ଯେଉଁମାନେ ମାନସିକ ସ୍ତରରେ ଦୃଢ ନୁହନ୍ତି, ସେମାନେ ସହଜରେ ଏହି ଅଲୌକିକତା ଦିଗ ପ୍ରତି ଆକୃଷ୍ଟ ହୋଇପଡନ୍ତି । ନିଜର ବିଜ୍ଞତା, ବିଚାର ବୁଦ୍ଧି, ଯୁକ୍ତିସିଦ୍ଧତା, ବିଜ୍ଞାନସିଦ୍ଧ ସିଦ୍ଧାନ୍ତ ଓ ହେତୁବାଦୀତା ଆଦିକୁ ପରିହାର କରି ଅଲୌକିକତା ଦିଗ ଦ୍ୱାରା ପ୍ରଭାବିତ ହୋଇପଡନ୍ତି । ଯେପରି ଯାଦୁକରର ଯାଦୁକରୀ କୌଶଳରେ ଆମେ ନିଜକୁ ଭୁଲିଯାଇ ଏକ ଚମତ୍କାରିତାରେ ଭାସିଯାଉ କିମ୍ବା ଉଡିଯାଉ ସେହିପରିଏହି ଅଘଟଣ ଗୁଡିକ ଆମକୁ ଭସାଇ ନିଏ । ଆମେ ନିଜର ବ୍ୟକ୍ତିତ୍ୱ ଏବଂ ବୌଦ୍ଧିକ ସତ୍ତା ହରାଇ ଇତରତାର ଶିକାର ହୋଇଯାଉ । ଯେଉଁମାନେ ଏପରି ଅଘଟଣର ପ୍ରଯୋଜକ, ସେମାନେ କେତେ ସହଜରେ ଏହି ମ୍ୟାଜିକରେ ସମଗ୍ର ସମାଜର ମାନସିକତାକୁ ଆଚ୍ଛାଦିତ କରି ରଖନ୍ତି ।

ମାତ୍ର ଦୁଇ ସପ୍ତାହ ତଳେ ଭାରତର ବହୁ ଅଂଚଳରେ ଅନେକ 'ଗଣେଶ' କ୍ଷୀରପାନ କଲେ । କ୍ଷୀରପାନ କଲେ କି ନାହିଁ ତାହା ଅନୁସଂଧାନ ନକରି, ତନଖି କିମ୍ବା ଯାଞ୍ଚ ନକରି କ୍ଷିପ୍ର ବେଗରେ ଗଣେଶ କ୍ଷୀରପାନ କରୁଛନ୍ତି ବୋଲି ତୁଣ୍ଡରେ-ସହସ୍ର ସହସ୍ର ଲକ୍ଷଲକ୍ଷ ତୁଣ୍ଡରେ-ପ୍ରଚାର ଗୋଟାଏ ଦିନରେ ସବୁଆଡେ ଖେଳିଗଲା । ସମ୍ବାଦପତ୍ରମାନେ(ବସ୍ତୁତଃ ସାମ୍ବାଦିକମାନେ) ପ୍ରତିଯୋଗିତା କରି ଏହି ସମ୍ବାଦଟିକୁ ଏତେ ମୁଖ୍ୟ ଘଟଣାର ଗୁରୁତ୍ୱ ଦେଇ ସମ୍ମୁଖ ପୃଷ୍ଠାରେ ପ୍ରକାଶ କରିବାରେ ଲାଗିଲେ ଯେ, ସାଧାରଣ ମଣିଷଗୁଡା ଗଣେଶଙ୍କ କ୍ଷୀରପାନ କଥାଟିକୁ ନିର୍ଭୁଲ ସତ୍ୟ ବୋଲି ବିଶ୍ୱାସ କଲେ ।

ଖାଲି ଏହି ବିଶ୍ବାସଟିକୁ ନିଜ ଭିତରେ ରଖିଲେ ନାହିଁ; ଯାହାକୁ ପାଇଲେ ଏହି 'ସତ୍ୟଟିକୁ' ଅନ୍ୟକୁ ବିଶ୍ବାସ ଦେଇାଇବି କହିଲେ । କେହି ମୂଳକୁ ଯିବା ପାଇଁ ଉଦ୍ୟମ କଲେନାହିଁ । କେହି ଏହି ଘଟଣାର ସତ୍ୟତା ସମ୍ପର୍କରେ ଅନୁସନ୍ଧାନୀ ହୋଇ ପ୍ରକୃତ ତଥ୍ୟ, ଚାକ୍ଷୁଷ, ପ୍ରାମାଣିକତା ଆଦି ସଂଗ୍ରହ କରିଲେ ନାହିଁ । ଏହା ନ କରିବା ଦ୍ବାରା ସାମ୍ବାଦିକମାନେ ଗଣେଶଙ୍କ ଦୁଗ୍ଧପାନ ପ୍ରଚାରକୁ କେତେଦିନ ପାଇଁ ସତ୍ୟର ମର୍ଯ୍ୟାଦା ଦେଲେ । ବିଭିନ୍ନ ମନ୍ଦିରରେ ମଣିଷର ବିଶେଷକରି ମହିଳାମାନଙ୍କର ଅବାରିତ ଭିଡ ଜମିଗଲା । ଯିଏ କ୍ଷୀର ଧରି ଗଣେଶଙ୍କ ସାମନାକୁ ଗଲା, ସେ ସ୍ଥିର ବିଶ୍ବାସ ନେଇ ଗ୍ରହଣ କରିନେଲା ଯେ, ଗଣେଷ କ୍ଷୀର ଗ୍ରହଣ କରୁଛନ୍ତି । କେତେ ଭକ୍ତଙ୍କ ଠାରୁ କେତେ ଯେ କ୍ଷୀର ଗଣେଶ ପିଇଗଲେ ଯେ, ତାଙ୍କର ଡୋଲିଆ ପେଟ ଫାଟିବା ଅବସ୍ଥାକୁ ଆସିଲା । କିନ୍ତୁ ଅଧିକାଂଶ ସ୍ଥାନରେ ଗଣେଶ ଚାଟିଆ କି ଗିଲାସରୁ ନିଜର ଶୁଣ୍ଢ ଲଗାଇ କ୍ଷୀର ପିଇଲେ ନାହିଁ । ଗିନାରୁ ଚାମୁଚରେ ନେଇ ଶୁଣ୍ଢତଳେ କ୍ଷୀର ପିଆଇବାକୁ ପଡିଲା ।

ପ୍ରକୃତରେ ଗୋଟିଏ ଦିନ ପାଇଁ ଏହି ଅଘଟଣଟି ବଳବତ୍ତର ରହିଲା । ପରଦିନକୁ କଥାଟି ମଉଳି ଆସିଲା । ଗଣେଶ ହଠାତ୍ ଦ୍ବିତୀୟ ଦିନଠାରୁ ଆଉ କ୍ଷୀର ପିଇଲେ ନାହିଁ । ବୈଜ୍ଞାନିକମାନେ ଏହି ଅଘଟଣ ସମ୍ପର୍କରେ ପଦାର୍ଥ ବିଜ୍ଞାନର ବିଭିନ୍ନ ତତ୍ତ୍ବ ପ୍ରକାଶ କଲେ ଦ୍ବିତୀୟ ଦିନଠାରୁ । କିନ୍ତୁ ସେତେବେଳକୁ ମଣିଷଗୁଡାକ ହତବୁଦ୍ଧିର ଶରବ୍ୟ ହୋଇ ସେ ସବୁ ବୈଜ୍ଞାନିକ ତତ୍ତ୍ବ ପ୍ରତି ନଜର ଫେରାଇବାକୁ ପ୍ରସ୍ତୁତ ନୁହନ୍ତି । ଗଣେଶ କ୍ଷୀର ପିଇବା ହଠାତ୍ କାହିଁକି ବନ୍ଦ କରିଦେଲେ କେଜାଣି । କିନ୍ତୁ ଏକଥା ସତ୍ୟ ଯେ ଭାରତର ସମସ୍ତ ଅଂଚଳରେ ଏହି ଅଘଟଣର କଥା ଘଟିଲା ଅନ୍ତତଃ ଗୋଟିଏ ଦିନ ପାଇଁ । ଓଡିଶାର ପ୍ରାଣକେନ୍ଦ୍ର କଟକ ସହରରୁ ଭୁବନେଶ୍ବର ଆସି ଗଣେଶଙ୍କ କ୍ଷୀର ପିଇବା ପ୍ରଚାର ସମଗ୍ର ରାଜ୍ୟରେ ଖେଳିଗଲା । କମ୍ୟୁନିଷ୍ଟ ବିଶ୍ବାସୀ ଏବଂ କମ୍ୟୁନିଷ୍ଟ ଶାସିତ ପଶ୍ଚିମବଙ୍ଗରେ ସଚେତନ ଜନସାଧାରଣ ମଧ୍ୟ ବୁଦ୍ଧି ହରାଇ ଗଣେଶଙ୍କ ଦୁଗ୍ଧପାନ ପ୍ରକ୍ରିୟାରେ ଅଭିଭୂତ ହୋଇପଡିଲେ । ଗୁଜୁରାଟ, ମହାରାଷ୍ଟ୍ର ଓ ଅନ୍ୟ ଅଂଚଳରେ ଏହି ଅଘଟଣର ଅଲୌକିକତା ଜନସାଧାରଣଙ୍କୁ ବେଶ୍ ଘାରିଗଲା । କେନ୍ଦ୍ର ସରକାର ଏବଂ ରାଜ୍ୟ ସରକାରମାନେ ଏହି ଅଘଟଣ ସମ୍ପର୍କରେ ଏବଂ ପ୍ରଚାର ସମ୍ପର୍କରେ ନୀରବତା ଅବଲମ୍ବନ କଲେ । ଏହି ଘଟଣାରେ ଚନ୍ଦ୍ରସ୍ବାମୀଙ୍କର ହାତ ଅଛି ବୋଲି ତାଙ୍କ ଶିବିରରୁ ଇଙ୍ଗିତ ପ୍ରକାଶ ପାଇ ପ୍ରଚାରିତ ହେଲା । ହିନ୍ଦୁତ୍ବ ପ୍ରବର୍ତ୍ତକମାନେ ଏହି ଅଲୌକିକତାକୁ ନିଜ ସପକ୍ଷରେ ଟାଣିବାର ପ୍ରୟାସ କଲେ । କେତେଦିନ ପରେ ବୈଜ୍ଞାନିକମାନେ ସାଧାରଣ ସଭାରେ ବୈଜ୍ଞାନିକ ପ୍ରଣାଳୀରେ କୌଣସି ତରଳ ପଦାର୍ଥ କିପରି ଗଣେଶଙ୍କ ମୁହଁ ବାଟେ ଟାଣି ହୋଇଯାଇ ପାରିବ, ତାହା ପରୀକ୍ଷା କରି ଦର୍ଶାଇଲେ । ହିନ୍ଦୁତ୍ବର ପ୍ରଚାରକମାନେ ଦାବି କଲେଯେ, ଏପରି ଘଟଣା ଖୁବ୍ କମ୍ ସମୟରେ ଘଟେ ଏବଂ ଏହା ନିୟମିତ ଘଟି ଚାଲିବ ଏହା ଆଶା କରିବା ଠିକ୍ ନୁହେଁ ।

ଭାରତର ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଯାଦୁକର ପି.ସି. ସରକାର(ଜୁନିଅର)ଏହି ଘଟଣା ମ୍ୟାଜିକ ଜରିଆରେ ଦେଖାଇ ହେବ ବୋଲି ଦୃଢ ସ୍ବରରେ କହିଲେ ଏବଂ ଗଣେଶଙ୍କ ଦୁଧ ପିଆ ଏକ ଅସତ୍ୟ ମନଗଢା କଥା ବୋଲି କହିଲେ । ତାଙ୍କ ପତ୍ନୀ ଯିଏ ନିଜେ ସଫଳ ଯାଦୁକର; ସେ କିନ୍ତୁ କହିଲେ,

ଗଣେଶ ଦୁଧ ପିଇବା ଘଟଣା ସତ୍ୟ । ସେ ନିଜେ ଯାଇ ଗଣେଶଙ୍କୁ ଦୁଧ ପିଆଇଛନ୍ତି ବୋଲି ଦାବିକଲେ । ପି.ସି. ସରକାରଙ୍କର ଦାମ୍ପତ୍ୟ ଜୀବନ ରହିଲା କି ଭାଙ୍ଗିଲା ଜଣାନାହିଁ । କିନ୍ତୁ ଇଂଲଣ୍ଡ, କାନାଡା ଓ ଏପରିକି ଆମେରିକାରେ ମଧ୍ୟ ଗଣେଶମାନେ ଦୁଧ ପିଇଲେ ପ୍ରଚାରିତ ହେଲା ଏବଂ ବଡ ସମ୍ବାଦପତ୍ରମାନେ ତାହା ପ୍ରକାଶ କଲେ । ମୁଁ କିନ୍ତୁ ଅନେକ ଲୋକଙ୍କୁ (ଯେଉଁମାନେ ନିଜ ଚାକ୍ଷୁଷ ଅଭିଜ୍ଞତା ଅଛି ବୋଲି କହୁଥିଲେ) ଅନୁସନ୍ଧିତ୍ସୁ ଭାବରେ ପଚରା ଉଚରା(ପୋଲିସ ଢଙ୍ଗରେ ଅବଶ୍ୟ ମାଡ ନମାରି) କଲାରୁ ଯାହା ଜାଣିଲି, ସେମାନେ ଗଣେଶଙ୍କ ଦୁଧ ପିଇବାର ସତ୍ୟତା ସମ୍ପର୍କରେ ନିଶ୍ଚିତ ନୁହନ୍ତି । ଭାରତ ଏକ ବିଚିତ୍ର ବିଶ୍ୱାସୀ ଦେଶ । ତେଣୁ ବାବାମାନେ ଏତେ ଶିଷ୍ୟ ପାଇଯାଉଛନ୍ତି ।

ତା ୮।୧୦।୯୫



# ମତଲବ

ଆଜିକାଲି ଦୁନିଆରେ ବିନା ମତଲବରେ କିଏ କାହା ପାଖକୁ ଯାଉଛି ? ବନ୍ଧୁ ବାନ୍ଧବ, ସଂପର୍କୀୟ ହେଲେ ବା ଅଲଗା କଥା । ଖୁସି ଗପ କରିବାକୁ କେତେବେଳେ କେମିତି ମଧ ଲୋକ ଗଳି ପଡନ୍ତି । ତାହା ମଧ ଏବେ ଦୁଷର ହେଲାଣି । କାରଣ ପ୍ରତ୍ୟେକ ଲୋକ ନିଜ ଜୀବନଯାତ୍ରା ନେଇ ଏତେ ବ୍ୟସ୍ତ ଯେ, ନିହାତି ବାଧ୍ୟତା ନହେଲେ କିମ୍ବା ନିଜର ଆବଶ୍ୟକତା ନହେଲେ ଖାସ ବନ୍ଧୁ ସଙ୍ଗୋଳିବା ପାଇଁ କାହାରି ଘରକୁ ଯିବାର ସମୟ ନାହିଁ । ପୁଣି ଯାହାଙ୍କ ଘରକୁ ଯିବ, ସେ ତ ଘରେ ଥିଲେ ହେବ । କି ସେମାନେ କ'ଣ ଧନ୍ଦାରେ ବ୍ୟସ୍ତଥିବେ । ତାଙ୍କ ଘରକୁ ଆଉ କିଏ କୁଣିଆ ମଇତ୍ର ଯେ ଆସିନଥିବେ, ସେ କଥା ଜାଣିବା କେମିତି ? ପଡ଼ିଶା ଘର ଅବଶ୍ୟ କେତେବେଳେ କେମିତି ଗତି ଆସିବା ଦେଖାଯାଏ; କିନ୍ତୁ ତାହା ବି ଏବେ କମିଗଲାଣି ।

ମତଲବ କଥାଟା କିନ୍ତୁ ବଡ ନିଆରା । ଆନ୍ତର୍ଜାତିକ ସ୍ତରରୁ ଆରମ୍ଭ କରି ସାମାଜିକ, ରାଜନୈତିକ, ପାରିବାରିକ ଏବଂ ବ୍ୟକ୍ତିଗତ ଜୀବନ ପର୍ଯ୍ୟନ୍ତ ଏହି ମତଲବ ଶବ୍ଦଟିର ପ୍ରାସଂଗିକତା ବେଶ ରହିଛି । ବିନା ମତଲବରେ କ'ଣ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଏବେ ବାରଦିନିଆ ଗସ୍ତରେ ଦେଶର ପଇସା ଖର୍ଚ୍ଚ କରି ବିଦେଶ ଗସ୍ତରେ ଯାଉଛନ୍ତି । ଯେହେତୁ ବିଦେଶୀ ପ୍ରତିନିଧି ଦଳ, ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ କି ମନ୍ତ୍ରୀ ଭାରତକୁ ଆସୁଛନ୍ତି, ସେମାନେ ନିଶ୍ଚୟ ନା ନିଶ୍ଚୟ କୌଣସି ମତଲବରେ ଆସୁଛନ୍ତି । ଆମ ରାଷ୍ଟ୍ରପତି କି ମନ୍ତ୍ରୀ ମଧ ସେମିତି କିଛି ମତଲବ ରଖି ବାହାରେ ବୁଲୁଛନ୍ତି । ସେଥିରେ ଅବଶ୍ୟ ନିଜର ବୁଲିବା, ଅନ୍ୟ ଦେଶ ଦେଖିବା, ସେଠାରୁ କ'ଣ କିଣି ଆଣିବା କି ସରକାରୀ ଟଙ୍କାରେ ଅୟସ କରିବା ମତଲବ ଅଛି । ବ୍ୟବସାୟୀମାନେ ମଧ ଶିଳ୍ପ, ବ୍ୟବସାୟ, ଆମଦାନୀ ଓ ରପ୍ତାନି ଆଦି ବ୍ୟବସାୟ ନେଇ ଆନ୍ତର୍ଜାତିକ ସ୍ତରରେ ଯିବା ଆସିବା କରୁଛନ୍ତି ।

ସେକ୍ରେଟାରିଏଟ୍‌ରେ ମନ୍ତ୍ରୀମାନଙ୍କ ପାଖରେ ଏତେ ଭିଡ କାହିଁକି ? ବିଭିନ୍ନ ଅଂଚଳରୁ ଶାସକ ଦଳର କର୍ମୀ ଓ ନେତା ଆସି ଭିଡ ଜମାନ୍ତି ନିଜର ବ୍ୟକ୍ତିଗତ ମତଲବ ପାଇଁ । କି କି କାମ ସବୁନେଇ ଆସିଥାନ୍ତି । ଟ୍ରାନ୍ସଫର, ପୋଷ୍ଟିଂ, କଂଟ୍ରାକ୍ଟରଙ୍କ ପାଇଁ ଟେଣ୍ଡର ହାସଲ, କୋଉ ଅଫିସରକୁ ଫୋନ କରିବାକୁ ହେବ ଚାକିରିଟିଏ ପାଇଁ-ଏମିତି କେତେ ଅସରନ୍ତି ମତଲବ ଥାଏ । ଏହି ମତଲବଗୁଡିକୁ ପୂରଣ କରି କରି କିମ୍ବା କରିନପାରି ମନ୍ତ୍ରୀମାନେ ଏତେ ବଦନାମ ହୁଅନ୍ତି ଯେ, ତାଙ୍କ ବେଳ ସରିଲା ବେଳକୁ ତାଙ୍କ ରାଜନୈତିକ ଭାବମୂର୍ତ୍ତି ଖଣ୍ଡିଆ ଖାବରା ହୋଇ ଉଭାନ୍ତ ହୋଇ ଯାଇଥାଏ । ତଥାପି

ତାହା ହିଁ କରିବା ପାଇଁ ଯେମିତି ସେମାନେ ମନ୍ତ୍ରୀ ହୋଇଥାନ୍ତି କି କ'ଣ ? ଏତେ ପ୍ରକାର ବ୍ୟକ୍ତିଗତ ସ୍ୱାର୍ଥ ପୂରଣ କରିବା ସଂଭବ ହୁଏନା । ତେଣୁ ଏହି ମତଲବୀ ଲୋକଗୁଡାକ ବିରୋଧୀ ହୋଇଯାଆନ୍ତି । ରାସ୍ତାରେ, ଘାଟରେ ଗପି ଗପି ମନ୍ତ୍ରୀଙ୍କର ସାତ ପୁରୁଷ ଶ୍ରାଦ୍ଧ କରନ୍ତି । କିନ୍ତୁ କେତେକ ମନ୍ତ୍ରୀ କେତେକ କାମରେ ଲୋକଙ୍କ ମତଲବ ପୂରଣ କରିବା ଭିତରେ ନିଜର ମତଲବ ମଧ୍ୟ ପୂରଣ କରି ନିଅନ୍ତି ।

ଅନେକ ଦିନ ହେବ ଆପଣଙ୍କର ଚିହ୍ନା ପରିଚୟ ଥିବା ଲୋକ ଯିଏ କି ଆପଣଙ୍କ ସହିତ ବର୍ଷ ବର୍ଷ ଧରି ସଂପର୍କ ରଖିନଥିବେ, ଦିନେ ହଠାତ୍ ଆସି ପହଂଚିଯିବେ । ଆପଣ ତାଙ୍କ ମୁହଁ ଚିହ୍ନୁଥିବେ, ନାଁ'ଟି ମନେ ପଡୁନଥିବ । କାଲି ପରଦିନ ଦେଖାହେଲା ଭଳିଆ କଥାବାର୍ତ୍ତା କରିବେ । ଆପଣ ଧରିନେବେ କ'ଣ ଗୋଟିଏ ମତଲବ ନେଇ ଆସିଛନ୍ତି । ଆଡୁ ସାଡୁ ଗପସପ କରିବା ପରେ ମତଲବୀ ଭଦ୍ରଲୋକ ନିଜର କାମ କଥା ଖୋଲିବେ । ତାଙ୍କ ପୁଅଟି କେଉଁଠି ଗୋଟାଏ ଇଣ୍ଟରଭ୍ୟୁ ଦେଇଛି । ସେ ବିଭାଗୀୟ କର୍ତ୍ତାଙ୍କର ଆପଣଙ୍କ ସହିତ ଭଲ ସଂପର୍କ । ଆପଣ ତାଙ୍କୁ ଟେଲିଫୋନରେ କହିଦେଲେ ଚାକିରିଟା ହୋଇଯିବ । ଯେଉଁ ଅଫିସରଙ୍କ ସହିତ ଆପଣଙ୍କର ସଂପର୍କ ଭଲ ବୋଲି ସେ କହୁଛନ୍ତି, ସେ ଅଫିସରଙ୍କ ସହିତ ଆପଣଙ୍କର ସଂପର୍କ ଥାଇପାରେ । ଯାହା ସାଧାରଣତଃ ସାମାଜିକ ଜୀବନରେ ହୋଇଥାଏ । କିନ୍ତୁ ଏ ବାବୁଙ୍କ ପୁଅକୁ ଚାକିରି ଦେବା ପାଇଁ ଆପଣ ତାଙ୍କୁ କାହିଁକି ଅନୁରୋଧ କରିବେ ? ବାବୁଙ୍କ ପୁଅ ଯଦି ଇଣ୍ଟରଭ୍ୟୁରେ ଭଲ ନକରେ ତଥାପି ସେ କିପରି ପ୍ରତିଯୋଗିତାରେ ଅନ୍ୟମାନଙ୍କୁ ଟପି ଚାକିରି ପାଇବ ? ଏ ବାବୁ ଯାହାଙ୍କୁ ଆପଣ ବର୍ଷ ବର୍ଷ ହେଲା ଦେଖି ନଥିଲେ ହଠାତ୍ ଆସି ଆପଣଙ୍କ ଉପରେ ସବାର ହେଲେ କାହିଁକି ?

ଆଉ କେତେକ ଆପଣଙ୍କ ସହିତ ଚିହ୍ନା ନଥାଇ ଆପଣଙ୍କୁ ଭଲ ଭାବରେ ଜାଣିଥିବା କାହାଠାରୁ ଚିଠି ଖଣ୍ଡିଏ ଆଣି କିମ୍ବା ତାଙ୍କୁ ସାଙ୍ଗରେ ଧରି ଆସି ପହଂଚିବେ । ଆପଣଙ୍କୁ ଧରି ଗୋଟାଏ କାହା ପାଖରୁ ଅଣଓ୍ୱାଜିବ କାମଟିଏ ହାସଲ କରିବାକୁ (ବେଳେବେଳେ ନିଜ ପତ୍ନୀଙ୍କୁ ଧରି ଆସିଥିବେ) ଆପଣଙ୍କ ଉପରେ ଚାପ ପକାଇବେ । ଆପଣ ପଛେ ବଦନାମ ହୁଅନ୍ତୁ, ତାଙ୍କ କାମଟି ହାସଲ ହେଉ । ଏହି ଲୋକମାନଙ୍କୁ ଲଜ୍ଜା ଲାଗେନି ।

ଏ ମତଲବୀ ଲୋକମାନେ ହିଁ ଜୀବନରେ 'ଉନ୍ନତି' କରନ୍ତି । ତାଙ୍କର ମତଲବ ହାସଲ ପଛରେ ଯେପରି ଦେଶର କି ବିଶ୍ୱର ସ୍ୱାର୍ଥ ସାଧିତ ହେଉଛି । ଅନ୍ୟର ପିଠିରେ ଗୋଡ ଦେଇ ଉପରକୁ ଉଠିବା ସେମାନଙ୍କର କାମ ଏବଂ ସାମାନ୍ୟତମ କୃତଜ୍ଞତାବୋଧ ଏମାନଙ୍କର ନଥାଏ ।

**ତା ୨୨।୧୦।୯୫**

❑❑❑

# ପରାଗ

୧୯୯୫ ମସିହା ଅକ୍ଟୋବର ୨୪ ତାରିଖ ମଙ୍ଗଳବାର ଏକ ଅନୋଖା ସୂର୍ଯ୍ୟପରାଗ ଘଟିଗଲା । ହଜାର ହଜାର ବର୍ଗ ମିଟର କିମ୍ବା ଅନ୍ୟ ଅର୍ଥରେ ଶହ ଶହ ହେକ୍ଟର ପରିମିତ ସମ୍ବାଦ, ଅନୁଶୀଳନ, ସମୀକ୍ଷା, ବୈଜ୍ଞାନିକ ତଥ୍ୟ ଆଦି ଖବରକାଗଜ ଓ ପତ୍ରପତ୍ରିକା ପୃଷ୍ଠାରେ ପ୍ରକାଶ ପାଇଲା । ଜ୍ୟୋତିଷମାନଙ୍କର ଭବିଷ୍ୟବାଣୀ, ସତର୍କ ବାଣୀ, ସରକାରଙ୍କ ତରଫରୁ କ'ଣ କରିବ ଏବଂ କ'ଣ ସବୁ କରିବ ନାହିଁ ଏସବୁର ମଧ ସ୍ତମ୍ଭ ସ୍ତମ୍ଭ ପ୍ରଚାର ଜନସାଧାରଣଙ୍କ ଗୋଚରାର୍ଥେ ଜଣାଇ ଦିଆଗଲା । ପଶ୍ଚିମବଙ୍ଗର ପୁରୁଲିଆ ଠାରେ ପୂର୍ଣ୍ଣାଙ୍ଗ ପରାଗ ଦେଖାଯିବ ବୋଲି କେତେକ ଆଗ୍ରହୀ ଲୋକ ଓଡ଼ିଶାରୁ ମଧ ପୁରୁଲିଆ ଯାତ୍ରା କଲେ । କଲିକତା ନିକଟରେ ଡାୟମଣ୍ଡ ହାରବରଠାରେ ବହୁ ଲୋକ ସମାଗମ ହେଲେ । କେବଳ ବୈଜ୍ଞାନିକ କିମ୍ବା ସୌରଜଗତ ବିଶାରଦ ନୁହନ୍ତି ସାଧାରଣ ଲୋକେ ମଧ ହଜାର ହଜାର ସଂଖ୍ୟାରେ ସେଠାରେ ଜମାହେଲେ । ରାଜସ୍ଥାନର 'ନିମକା ଥାନା', ଆହ୍ଲାବାଦ, ଦିଲ୍ଲୀ, ଡାୟମଣ୍ଡ ହାରବର ଠାରେ ଦୂରଦର୍ଶନ ତରଫରୁ କ୍ୟାମେରା ୟୁନିଟ ସାଧାରଣ ଲୋକଙ୍କ ଦେଖିବା ପାଇଁ ଜାଣିବା ପାଇଁ ସ୍ଥାପନ କରାଗଲା । ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ ଏହିସବୁ ସ୍ଥାନ ସହିତ ସଂଯୋଗ ସ୍ଥାପନ କରି ଦୂରଦର୍ଶନରେ ପରାଗ କାର୍ଯ୍ୟକ୍ରମର ପ୍ରଚାର ଦୁଇଘଣ୍ଟାରୁ ତିନିଘଣ୍ଟା ପର୍ଯ୍ୟନ୍ତ ଦେଖାଗଲା । ବହୁ ପୂର୍ବରୁ ଏଥିପାଇଁ ପ୍ରସାର କାର୍ଯ୍ୟକ୍ରମରେ ପ୍ରସ୍ତୁତି କରାଯାଇଥିଲା । ଆମ ଭୁବନେଶ୍ବର ଠାରେ ପ୍ଲାନେଟୋରିୟମ କର୍ତ୍ତୃପକ୍ଷ ମଧ ନିଜ ତରଫରୁ ବୈଜ୍ଞାନିକ ପରୀକ୍ଷା, ନିରୀକ୍ଷା ସହିତ ସାଧାରଣ ଲୋକଙ୍କୁ ପରାଗର ଦୃଶ୍ୟ ଦେଖିବାରେ ସାହାଯ୍ୟ କଲେ । ସ୍ବତନ୍ତ୍ର ଧରଣର ଚଷମା ମଧ ସୁଲଭ ମୂଲ୍ୟରେ ସାଧାରଣ ଲୋକ କିଣି ପରାଗଗ୍ରସ୍ତ ସୂର୍ଯ୍ୟଙ୍କୁ ଅନାଇ ଦେଖିବାର ସୁଯୋଗ ପାଇଲେ । କିଏ ସବୁ ଏକ୍ସ-ରେ ପ୍ଲେଟ ମାଧମରେ କିମ୍ବା ସୌର ଫିଲ୍ଟର ମାଧମରେ ପରାଗ ଦର୍ଶନ କଲେ ।

ପ୍ରସିଦ୍ଧ ଜ୍ୟୋତିଷ ବି.ଭି. ରମଣଙ୍କର ଭବିଷ୍ୟବାଣୀ ହେଲା ଯେ, ପୃଥିବୀରେ ଏହାପରେ ଅନେକ ଭୟାନକ ଘଟଣା ଘଟିବ । ପ୍ରାକୃତିକ ବିପର୍ଯ୍ୟୟ ଘଟିବ । ଯୁଦ୍ଧ ବିଗ୍ରହ, ମାନବ ଜୀବନହାନୀ, ହିଂସାକାଣ୍ଡ ଇତ୍ୟାଦି ଘଟି ପୃଥିବୀର ବିଭିନ୍ନ ଅଞ୍ଚଳରେ କ୍ଷତିକାରକ ଦୃଶ୍ୟ ଦେଖିବାକୁ ମିଳିବ । ବୈଜ୍ଞାନିକମାନଙ୍କର ମତ ହେଲା ଏହା ଏକ ସ୍ୱାଭାବିକ ପ୍ରାକୃତିକ ପ୍ରକ୍ରିୟା । ଗ୍ରହ ଉପଗ୍ରହ ଆଦି ବିଭିନ୍ନ ସମୟରେ ସେମାନଙ୍କର ଅକ୍ଷରେ ଓ ମହାକାଶରେ ଯାତାୟାତ କରୁଥିବା ବେଳେ ଏପରି ଘଟିବା ସ୍ୱାଭାବିକ । ଏଥିରେ କୌଣସି ଅହେତୁକି ଘଟଣା କିମ୍ବା ଦୁର୍ଘଟଣା ଘଟିବାର ସମ୍ଭାବନା ନାହିଁ । ଅଯଥା ଲୋକଙ୍କୁ ଭୟ ଓ ଆଶଙ୍କାର

ଶିକାର କରାଯିବା ଉଚିତ ନୁହେଁ ବୋଲି ବିଭିନ୍ନ ବୈଜ୍ଞାନିକ ନିଜର ବିଜ୍ଞମତ ପ୍ରକାଶ କଲେ । ବି.ଭି. ରମଣ ଏହି ବୈଜ୍ଞାନିକମାନଙ୍କର ବକ୍ତବ୍ୟକୁ ଖଣ୍ଡନ କରି କହିଲେ ଯେ, ହାଣ୍ଡିଛାଡ଼, ଭୋଜନ ନିଷେଧ, ସୂର୍ଯ୍ୟଦର୍ଶନ ଆଦି ସମ୍ପର୍କରେ ଯାହା ଶାସ୍ତ୍ରୀୟ ମତ ଓ ପରମ୍ପରା ରହିଛି ତାହା ସବୁ ଭ୍ରମାତ୍ମକ ନୁହେଁ ।

ଆମର ସରକାରମାନେ ମଧ୍ୟ ଏହି ଜ୍ୟୋତିଷୀ ମତ ସହିତ ଏକମତ ପରି ଜଣାଗଲା । ନଚେତ୍ ସରକାର ଏହିଦିନ ଛୁଟି ଘୋଷଣା କରିବାର କାରଣ କ'ଣ ଥାଇପାରେ । ସରକାରଙ୍କର ନିର୍ଦ୍ଦିଷ୍ଟ ମତ ନିଶ୍ଚୟ ଥିଲା ଯେ, ଯାହାସବୁ ବିଶ୍ୱାସ ଏ ଦେଶରେ ରହିଛି ତାହା ବୈଜ୍ଞାନିକ ଦୃଷ୍ଟିରୁ ଯଥାର୍ଥ । ଲୋକେ ରନ୍ଧାବଢ଼ା କରିବେ ନାହିଁ । ସୂର୍ଯ୍ୟପରାଗ ସମୟରେ ଚୂଲି ଲିଭାଇ ଦିଆଯିବ । କୌଣସି ଭୋଜନ ସାମଗ୍ରୀ ପ୍ରସ୍ତୁତ ହେବନାହିଁ । କାରଣ କେହି ପରାଗ ଘଟିବାର ୧୨ ଘଣ୍ଟା ପୂର୍ବରୁ ଏବଂ ପରାଗ ଘଟିବା ସମୟରେ ଆହାର ଗ୍ରହଣ କରିବେ ନାହିଁ ।

ସରକାର ଏ ସମ୍ପର୍କରେ ସେମାନଙ୍କର ବୈଜ୍ଞାନିକମାନଙ୍କର ମତକୁ ନିଶ୍ଚୟ ପ୍ରତ୍ୟାଖ୍ୟାନ କରିଦେଲେ । ନଚେତ୍ ସେଦିନ ଛୁଟି କାହିଁକି କରାଗଲା ? ବ୍ୟାଙ୍କଗୁଡ଼ିକ ମଧ୍ୟ ବନ୍ଦ ରହିଲା । ବୈଜ୍ଞାନିକମାନଙ୍କର ଦୃଢ଼ ମତ ଯେ ଏହିସବୁ ବିଶ୍ୱାସ ଭ୍ରମାତ୍ମକ । ଏସବୁ କୁସଂସ୍କାର ।

ଆମ ଦେଶରେ ବର୍ଷା, ଖରା ଓ ଶୀତ ଟିକେ ଅଧିକ ହେଲେ ଲୋକେ କାମ ନକରି ଘରେ ଖାଇ ପିଇ ଶୋଇବାକୁ ଚାହାନ୍ତି । ଅଳ୍ପ କିଛି ବାହାନାରେ ଛୁଟି ଦରକାର ହୁଏ । ଏପରି ଏକ ଅଭୂତପୂର୍ବ ସୂର୍ଯ୍ୟପରାଗ ଅବକାଶରେ ଛୁଟି ହେବନାହିଁ କିପରି ? ତେଣୁ ଲୋକେ ପରାଗ ସମୟରେ ଚା' ଜଳଖିଆ ଖାଇ ଛୁଟି ପାଳନ କଲେ । ଅଭ୍ୟାସବଶତଃ ବହୁ ସରକାରୀ କର୍ମଚାରୀଙ୍କ ଘରେ ନିୟମିତ ଯେପରି ସକାଳୁ ରୋଷେଇ ବସେ ତାହା ହେଲା । କେହି କେହି ନିଷ୍ଠାବାଦୀ ଲୋକେ ସହରମାନଙ୍କରେ ନିର୍ଜଳା ରହିଥିବେ ମୁଁ କହିପାରୁ ନାହିଁ । କିନ୍ତୁ ଗାଁ ଗଣ୍ଡାରେ ତ ଜ୍ୟୋତିଷ, ବ୍ରାହ୍ମଣ ଓ ପାଞ୍ଜିର ନାହାକମାନଙ୍କର ପ୍ରଭାବ ଟିକେ ବେଶୀ । ତେଣୁ ଗାଁରେ ସହରିଆଙ୍କ ଠାରୁ ଟିକେ ଅଧିକ ସମୟ ଲୋକ ଭୋକରେ ରହିଲେ । ଗାଁରେ ତ ଏବେ ମାଟିହାଣ୍ଡି ପ୍ରାୟ ଉଠିଗଲାଣି । ତେଣୁ ଆଲୁମିନିୟମ ଓ ଲୁହା ବାସନକୁ ତ ଆଉ ଫିଙ୍ଗିବାର ପ୍ରଥା ନାହିଁ । ଆଗେ ମାଟିହାଣ୍ଡିରେ ରୋଷେଇ ହେଉଥିଲା ଗାଁମାନଙ୍କରେ । ଅନେକଙ୍କ ଘରେ ଆଉ ଏବେ ମାଟିହାଣ୍ଡି ରୋଷେଇ ନାହିଁ । ନଚେତ୍ ପରାଗ ଓ ଚନ୍ଦ୍ରଗ୍ରହଣ ଦିନ ମାଟିହାଣ୍ଡିଗୁଡ଼ିକ ଫିଙ୍ଗି ଦିଆଯାଇ ନୂଆ ହାଣ୍ଡିରେ ରୋଷେଇ ଆରମ୍ଭ ହେଉଥିଲା ।

ମୁଁ କେତେକ ସରକାରୀ ଚାକିରିଆଙ୍କ ଘରୁ ବୁଝିଲି, ସକାଳ ଜଳଖିଆ ଦିନର ରୋଷେଇରେ କୌଣସି ବ୍ୟତିକ୍ରମ ହୋଇନାହିଁ । ଯଦି ଆପଣ ହୋଟେଲ ରେଷ୍ଟୋରାଁମାନଙ୍କୁ ସେଦିନ ସକାଳେ (୭ଟାରୁ ୧୧ଟା ମଧ୍ୟରେ) ଯାଇଥିବେ କିମ୍ବା ଯାଇଥାନ୍ତେ, ତେବେ ଦେଖିଥାନ୍ତେ କେତେ ଲୋକ ବସି ଭୋଜନରେ ଲିପ୍ତ ଅଛନ୍ତି । ଅବଶ୍ୟ ବଜାରରେ କିଛି ଦୋକାନ ସେଦିନ ସକାଳବେଳା ବନ୍ଦ ଥିଲା । ଯାହାଙ୍କର ଖୋଲା ଥିଲା, ସେମାନଙ୍କର ବ୍ୟବସାୟ ଛୁଟିଦିନ ପାଇଁ କିଛିଟା ମାନ୍ଦା ହୋଇଥିବ ପରାଗ ପାଇଁ ନୁହେଁ ।

ସବୁଠାରୁ ନୈରାଶ୍ୟଜନକ କଥା ହେଲା ଦୂରଦର୍ଶନ ପ୍ରସାରଣରେ । ଦିଲ୍ଲୀରୁ ପ୍ରଖ୍ୟାତ ବୈଜ୍ଞାନିକ

ପ୍ରଫେସର ଯଶ ପାଲ ସୂର୍ଯ୍ୟପରାଗର ମୁଖ୍ୟ ପ୍ରସାରଣ ଆଙ୍କର-ମ୍ୟାନ ଥିଲେ। ତାଙ୍କୁ ସାହାଯ୍ୟ କରୁଥିଲେ ଅପର୍ଣ୍ଣା ବୈଦ୍ୟ। ଦୂରଦର୍ଶନର ଅଢ଼େଇ ଘଣ୍ଟାରୁ ଊର୍ଦ୍ଧ୍ୱ ପ୍ରସାରଣରେ ପ୍ରଫେସର ଯଶ ପାଲଙ୍କ ମୁହଁ ଏବଂ ପ୍ରବଚନ ଶୁଣିବାକୁ ମିଳିଲା ପ୍ରାୟ ଦେଢ଼ଘଣ୍ଟା। ଯେଉଁଠାରୁ ସବୁ ରିପୋର୍ଟ ଆସୁଥିଲା ଯଥା: ନୀମ କା ଥନା, ଆହ୍ଲାବାଦ ଓ ଡାଇମଣ୍ଡ ହାର୍ବର ଇତ୍ୟାଦି ସେଠାରୁ ଅଧିକାଂଶ ସମୟରେ ଦର୍ଶକ ଓ ବୈଜ୍ଞାନିକମାନଙ୍କର ମୁହଁ ଏବଂ ବିଶାରଦୀ ମନ୍ତବ୍ୟ ଓ ମତ ପ୍ରାୟ ଏକ ଘଣ୍ଟା ଦେଖିବାକୁ ଓ ଶୁଣିବାକୁ ମିଳିଲା। ସୂର୍ଯ୍ୟପରାଗର ଦୃଶ୍ୟ ନିଶ୍ଚୟ ଅଧଘଣ୍ଟାରୁ କମ୍ ସମୟ। ଯେଉଁମାନେ ଟେଲିଭିଜନ ଖୋଲି ବସିଥିଲେ, ସେମାନେ କ'ଣ ଯଶ ପାଲଙ୍କ ମୁହଁ ଦେଖିବାକୁ ଚାହିଁ ରହିଥିଲେ। ପୁଣି ଯଶ ପାଲଙ୍କର ମନ୍ତବ୍ୟରେ ପରାଗ ଏବଂ ସୌରଜଗତ ସମ୍ପର୍କରେ କୌଣସି ଜ୍ଞାନ କିମ୍ବା ପାଣ୍ଡିତ୍ୟ ଥିଲାପରି ଜଣାପଡ଼ିଲାନି। ସେ ଗୁଡ଼ାଏ ଅବାନ୍ତର କଥା କହି ସମୟ ନଷ୍ଟ କରୁଥିଲେ। ଯେଉଁ ବୈଜ୍ଞାନିକମାନଙ୍କର ମତ ଦୂରଦର୍ଶନ ମନିଟରରେ ପ୍ରସାରିତ ହେଲା, ସେଥିରେ ମଧ୍ୟ ବିଶେଷ କୌଣସି ଜ୍ଞାତବ୍ୟ ତଥ୍ୟ ନଥିଲା। ଏପରିକି ପ୍ରଫେସର ନାରଲିକରଙ୍କର ମତରେ ସେପରି କିଛି ବିଜ୍ଞତା ଥିଲାପରି ଜଣାପଡ଼ିଲାନି।

ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଲୁଚକାଳି ଖେଳର ଯେଉଁ ଅସାମାନ୍ୟ ଦୃଶ୍ୟ ଦେଖାଗଲା, ତାହା ବିଶ୍ଳେଷଣ ପାଇଁ ଏ ଦେଶରେ ମଣିଷ ବିଶେଷକରି ନାମଜାଦା ମଣିଷମାନଙ୍କର ମୁଖମଣ୍ଡଳ ସରକାରୀ ଦୂରଦର୍ଶନର ମୁଖ୍ୟ ଉପଜୀବ୍ୟ ହୋଇଆସିଛି। ଯାହା ଜ୍ଞାତବ୍ୟ, ଯାହା ଦର୍ଶନୀୟ- ତାହା ସାଧାରଣ ଲୋକଙ୍କୁ ଆକୃଷ୍ଟ କରେ, କିନ୍ତୁ ସୂର୍ଯ୍ୟପରାଗର ଏହି ବିରଳ ଦୃଶ୍ୟରୁ ମଧ୍ୟ ଲୋକଙ୍କୁ ବଂଚିତ କରାଗଲା।

ତା୨୯।୧୦।୯୫

❑❑❑

# ବେକାର

ଓଡ଼ିଶା ବିଧାନସଭାରେ ଅନେକ ବର୍ଷ ଧରି କେବଳ ବିଧାନସଭା ଅଧିବେଶନ ସମୟରେ ଦୈନିକ ମଜୁରିରେ କାମ କରୁଥିବା ଜଣେ ଲୋକ ଏଇ କେତେଦିନ ତଳେ ଆତ୍ମହତ୍ୟା କରିଥିବାର ସମ୍ବାଦ ପ୍ରକାଶିତ ହେଲା । ସେ ପୁଣି ଶାସକଦଳର ଜଣେ ବିଧାୟିକାଙ୍କ ଘରେ ଆଶ୍ରିତ ହୋଇ ରହୁଥିଲା ବୋଲି ପ୍ରକାଶ ପାଇଛି । ବିଧାୟିକାଙ୍କ ଘରେ ହୁଏତ କିଛି ଟହଲ ଟୁକରା କରୁଥିବ ଏବଂ ସେ ବାବଦରେ କିଛି ଦ୍ରବ୍ୟ କିମ୍ବା ଅର୍ଥ ଆକାରରେ ପାଉଥିବ । କିନ୍ତୁ ସେକଥା କିଛି ଜଣାପଡିନାହିଁ । ମୂଳକଥା ହେଲା ଯେ ସେ କେବଳ ବିଧାନସଭା ବସିଲା ସମୟତକ ଦୈନିକ ମଜୁରିଆ ଭାବରେ କାମ ପାଉଥିଲା ।

ପୂର୍ବେ ବିଧାନସଭା ବର୍ଷକୁ ପ୍ରାୟ ପାଞ୍ଚମାସ ବସୁଥିଲା । ଏବେ ବିଧାନସଭା ଅଧିବେଶନର ସମୟ ସଂକୁଚିତ କରି ଦିଆଯାଇଛି । କାରଣ ବିଧାନସଭା ବସିଲାମାତ୍ରେ ବିରୋଧିଦଳର ବିଧାୟକମାନେ ଏବଂ ଶାସକଦଳର କ୍ଷମତାରୁ ବଂଚିତ ହୋଇଥିବା ସଭ୍ୟମାନେ ବିଭିନ୍ନ ପ୍ରଶ୍ନ ପଚାରି ବିଭିନ୍ନ ଅସୁବିଧାଜନକ ବିଷୟ ଉତ୍‌ଥାପନ କରି ସରକାରଙ୍କୁ ହଇରାଣ ହଲ୍ଲାପଟା କରନ୍ତି । ଏହି ଆଲୋଚନାର ବିଷୟବସ୍ତୁ, ସରକାରଙ୍କୁ ହେଉଥିବା ସମାଲୋଚନା ଦର୍ଶକ ଗ୍ୟାଲେରୀରେ ବସିଥିବା ଲୋକ ଏବଂ ସମ୍ବାଦପତ୍ର ମାଧ୍ୟମରେ ସର୍ବସାଧାରଣଙ୍କ ନଜରକୁ ଆସିଥାଏ । ସରକାର ଅନେକ ବିଷୟ ଲୋକଲୋଚନରୁ ଲୁଚାଇବାକୁ ଚାହାଁନ୍ତି । ତେଣୁ ବିଧାନସଭା ଅଧିବେଶନ ଯେତେ କମ୍ ଦିନ ବସିବ, ସେତେ ମଙ୍ଗଳ ।

ଏହି ଦୁର୍ଭାଗା ଲୋକଟି ଏହି କାରଣରୁ କମ୍ ଦିନ ପାଇଁ ମଜୁରି ପାଉଥିବ ଏବଂ ବର୍ଷସାରା ଚଳିବା ପାଇଁ ତାହା ଅଣ୍ଟୁନଥିବ । ସେ ବିବାହ କରିଥିବ ଏବଂ ତାହାର ପିଲାପିଲି ମଧ୍ୟ ଥିବେ । ପରିବାର ପୋଷଣ ମଧ୍ୟ ସମ୍ଭବ ହେଉନଥିବ । ଆଉ ଗୋଟାଏକଥା ଦୈନିକ ମଜୁରିରେ ରହୁଥିବା ଲୋକଙ୍କର ଅଧିକ ଦୁର୍ଦ୍ଦଶା । ତାହାହେଲା ଦୈନିକ ମଜୁରିରେ ରହୁଥିବା ଲୋକମାନେ (ବିଧାନସଭା ହେଉ ବା ଅନ୍ୟ ଯେକୌଣସି ସରକାରୀ ସଂସ୍ଥାରେ ହେଉ) ଅଧିକ ଦିନ କାମ ପାଇବା ପାଇଁ କିମ୍ବା ଛଟେଇ ନ ହେବାପାଇଁ ତାଙ୍କର ନିଯୁକ୍ତି ଦାୟିତ୍ୱରେ ଏବଂ ସେମାନଙ୍କୁ ଯେଉଁ ସ୍ଥାୟୀ କର୍ମଚାରୀମାନେ ପଇସା ଦିଅନ୍ତି, ସେମାନଙ୍କୁ ସନ୍ତୁଷ୍ଟ କରି ରଖିବାକୁ ହୁଏ । ସନ୍ତୁଷ୍ଟ କରି ରଖିବାର ଅନ୍ୟ ଅର୍ଥ ହେଲା ସେମାନେ ପାଉଥିବା ଦିନମଜୁରିରୁ କିଛିଟା ପଣି-ପାଉଣା କିମ୍ବା ପର୍ସେଣ୍ଟେଜ୍ ଦେବାକୁ ପଡେ । ତେଣୁ ଏହି ଦୁଃସ୍ଥ ଦିନମଜୁରିଆମାନଙ୍କର ପ୍ରକୃତ ଆୟ ମଧ୍ୟ କମିଯାଏ ।

ଅନେକ ଅଫିସରେ ଏହି ଦିନମଜୁରିଆ ବ୍ୟବସ୍ଥାରେ କ୍ଷମତାରେ ଥିବା ଅଧିକାରୀମାନେ ନିଜର

ଘରୋଇ କାମ ପାଇଁ (ଯଥା: ମାଳି, ପୂଜାରୀ, ଘର ଚାକର, ଜଗୁଆଳି ଇତ୍ୟାଦି) ମଧ୍ୟ ଲୋକ ରଖି କାମରେ ଲଗାନ୍ତି । ରାଷ୍ଟ୍ରୀୟ ଉଦ୍ୟୋଗ ଇତ୍ୟାଦିରେ ମଧ୍ୟ ଏହି ବ୍ୟବସ୍ଥା ଚାଲେ । ବିଭିନ୍ନ ସଂସ୍ଥାରେ କେବଳ ଖଟିଖିଆ ମଜୁରିଆ ନୁହନ୍ତି- କିରାଣି, ଆକାଉଣ୍ଟାଣ୍ଟ ଏପରିକି ଆମ ବିଶ୍ୱବିଦ୍ୟାଳୟମାନଙ୍କରେ ଅଧ୍ୟାପକମାନେ ମଧ୍ୟ ଦୈନିକ ମଜୁରି ନେଇ ମାସ ମାସ ଧରି କାମ କରୁଛନ୍ତି ବୋଲି ଜଣାପଡୁଛି । ଭାରତ ସରକାରଙ୍କ ଅଧୀନରେ ପରିଚାଳିତ ଭୁବନେଶ୍ୱର ଠାରେ ପ୍ରତିଷ୍ଠିତ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ପରିସରରେ ଚାଲୁଥିବା ମର୍ଯ୍ୟାଦାସମ୍ପନ୍ନ ଡି.ଏମ. ସ୍କୁଲ (Demonstration Multipurpose School) ଶିକ୍ଷୟିତ୍ରୀମାନଙ୍କୁ ଦୈନିକ ମଜୁରି କିମ୍ବା ମାସିକ ସୀମିତ ଦରମାରେ ବର୍ଷ ବର୍ଷ ଧରି ରଖାଯାଉଛି । ଏମାନଙ୍କୁ ବର୍ଷରେ ନ'ମାସରୁ ଦଶମାସ ଧରି ରଖାଯାଏ ଏବଂ ଗ୍ରୀଷ୍ମଛୁଟିରେ ଛଟେଇ କରି ଦିଆଯାଏ । ପୁଣି ଜୁଲାଇ ମାସରେ ଏମାନେ ଏହି ଗୋଡିପ୍ରଥା ମଜୁରିଆ ହେବାପାଇଁ ଦରଖାସ୍ତ କରନ୍ତି ଏବଂ ପୁଣି ସାକ୍ଷାତକାର କରାଯାଇ ସେମାନଙ୍କୁ ମଜୁରିଆ ଭାବରେ ନିଯୁକ୍ତି ଦିଆଯାଏ । ଏହା କେନ୍ଦ୍ର ସରକାରଙ୍କ ମାନବସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧୀନସ୍ଥ ଏନ.ସି. ଇ.ଆର.ଟି. କର୍ତ୍ତୃପକ୍ଷଙ୍କର ବ୍ୟବସ୍ଥା । ଦେଶର ଶ୍ରମ ଆଇନ ଓ ଅନ୍ୟାନ୍ୟ ସଂଯୁକ୍ତ ଆଇନ ଲାଗୁ ହେଲେ ଏହି କେନ୍ଦ୍ର ସରକାରୀ ସଂସ୍ଥାମାନେ ଓ ସେମାନଙ୍କର ପଦାଧିକାରୀମାନେ ଦଣ୍ଡିତ ହୁଅନ୍ତେ । ଅନ୍ୟ ଦିଗଟି ହେଲା ଦିନମଜୁରିଆ ଭାବରେ ରେଜିଷ୍ଟରରେ ମିଥ୍ୟାନାମ ଦରଜ କରି ସଂପୃକ୍ତ ଉପରିସ୍ଥ କର୍ମଚାରୀମାନେ ପଇସା ରୋଜଗାର କରନ୍ତି ।

ଏ ସଂପର୍କରେ ଉଚ୍ଚସ୍ତରୀୟ ଶିକ୍ଷା ପ୍ରତିଷ୍ଠାନ ଉତ୍କଳ ବିଶ୍ୱବିଦ୍ୟାଳୟରେ ବିଭିନ୍ନ ସେକ୍ସନର କିରାଣି ଓ ମଧ୍ୟମ ସ୍ତରର ଅଫିସରମାନେ ଏହି ପ୍ରକାର ମିଥ୍ୟା ଦୈନିକ ମଜୁରିଆଙ୍କ ମିଛ ଦସ୍ତଖତ ଜାଲ କରି ହଜାର ହଜାର ଟଙ୍କା ରୋଜଗାର କରୁଥିବାର ଖବର ଏକଦା ଜଣାପଡିଥିଲା । ଏବେ ସେ ବ୍ୟବସ୍ଥା ବନ୍ଦ ହୋଇଛି ବୋଲି କିଏ କହିବ ? ବିଶ୍ୱବିଦ୍ୟାଳୟର ପଦାଧିକାରୀମାନେ ଯେ ଏକଥା ଜାଣନ୍ତି ନାହିଁ, ତାହା ମଧ୍ୟ ନୁହେଁ । କିନ୍ତୁ କିରାଣୀମାନଙ୍କର ପ୍ରବଳ ପ୍ରତାପ ଯୋଗୁ ବିରୁଡି ବସାରେ ହାତ ମାରିବାକୁ କେହି ଆଗ୍ରହୀ ନୁହନ୍ତି । କେତେବର୍ଷ ତଳେ ବିଶ୍ୱବିଦ୍ୟାଳୟର ଜଣେ ଉଚ୍ଚ ପଦାଧିକାରୀ ହଠାତ୍ ଚାହିଁଲେ ଯେ, ଦୈନିକ ମଜୁରିରେ କାମ କରୁଥିବା ଲୋକ ହାଜର ହୁଅନ୍ତୁ । ସେ ସେମାନଙ୍କୁ ଦେଖିବେ । ଅଳ୍ପ କିଛି ସମୟ ପାଇଁ ଭାଳେଣି ପଡିଥିଲା । କିନ୍ତୁ ଯେଉଁମାନେ ଦୁଷ୍କର୍ମରେ ଲିପ୍ତ, ସେମାନେ ଚଟ୍‌କରି ମଧ୍ୟ ମୁଣ୍ଡରୁ ବୁଦ୍ଧି କାଢିକରି ପଳାୟନ ପଥ (Escape Rcute) ବାହାର କରନ୍ତି । ହଠାତ୍ ଦେଖାଗଲା ସେଦିନ ବେଶୀ ଲୋକଙ୍କୁ ଦିନ ମଜୁରିଆ ଭାବରେ ଡକାଯାଇନାହିଁ । କାରଣ କାମ ଅନୁସାରେ ସେମାନଙ୍କୁ ଡକାଯାଏ ବା ରିକ୍ୟୁଇସନ କରାଯାଏ । ସେଦିନ କାମ କମ୍‌ଥିଲା । ତେଣୁ ସଂଖ୍ୟାଗରିଷ୍ଠ ଦିନ ମଜୁରିଆ ଆସିନଥିଲେ । ଯେଉଁ ଅଫିସର ଯାଞ୍ଚକରିବାକୁ ବସିଥିଲେ, ସେ ଯେ ଏହି କଥାଟି ବୁଝିପାରିଲେ ନାହିଁ ତାହା ନୁହେଁ । ସରକାର ଓ ରାଷ୍ଟ୍ରୀୟ ଉଦ୍ୟୋଗର ଅଧିକାରୀମାନଙ୍କ ଘରେ ଖିଜମତ କରିବାକୁ ଯେତେ ଲୋକ ଭୁବନେଶ୍ୱରରେ ଏବଂ ଓଡ଼ିଶାରେ ବିଭିନ୍ନ ସ୍ଥାନରେ ନିଯୁକ୍ତ ଅଛନ୍ତି, ତାହାର ଯଦି ଏକ ସର୍ଭେ କରାଯିବ, ତେବେ ଏହି ବାବଦରେ ଲୋକ ରଖାଯାଇ କିମ୍ବା ମିଛ ରେଜିଷ୍ଟର ଖୋଲି କେତେ ଶହ କୋଟି ଟଙ୍କା ଖର୍ଚ୍ଚ

ହେଉଛି କିମ୍ବା ବାଟମାରଣା ହେଉଛି, ତାହାର ଏକ କଳ୍ପନା କରାଯାଇ ପାରିବ ।

ଦିନ ମଜୁରିଆ ଭାବରେ ଯେଉଁମାନେ ରାସ୍ତାକାମ କି କୋଠାକାମ କରୁଛନ୍ତି, ସେମାନେ ଅଫିସମାନଙ୍କରେ ଦୈନିକ ମଜୁରିରେ କାମ କରୁଥିବା ଲୋକଙ୍କ ପରି ଏତେ ଅସହାୟ ନୁହନ୍ତି । ସେମାନେ ବରଂ ୮ ଘଣ୍ଟା ନାମରେ ୨ ଘଣ୍ଟାରୁ ୪ ଘଣ୍ଟା କାମ କରି ପୂରା ଦିନର ମଜୁରି ନେଇପାରୁଛନ୍ତି । ସେମାନେ ଅଫିସ୍ ଦିନ ମଜୁରିଆଙ୍କ ଠାରୁ ଅଧିକ ସ୍ୱାଧୀନ । କାହାରି ମରଜୀ ଜଗିବା କିମ୍ବା କାହାରିକୁ ତେଲ ମାରିବା କିମ୍ବା ମଜୁରିରୁ କାହାକୁ ପର୍ସେଣ୍ଟେଜ୍ ଦେବାର ବାଧ୍ୟତା ନାହିଁ । ଦିଲ୍ଲୀରେ ରାଜ୍ୟ ସରକାରଙ୍କ 'ଓଡ଼ିଶା ଭବନ' କିମ୍ବା 'ଓଡ଼ିଶା ନିବାସ'ରେ ଏମିତି ଦୈନିକ ମଜୁରିରେ ଅନେକ ଲୋକ ବର୍ଷ ବର୍ଷ ଧରି କାମ କରନ୍ତି । ବ୍ରାହ୍ମଣ ଲୋକେ ବି ସେଠି ସୁଇପର ଅର୍ଥାତ୍ ମେହେନ୍ତର ଭାବରେ କାମ କରିବାକୁ ଆଗ୍ରହରେ ଗ୍ରହଣ କରନ୍ତି । ସେମାନେ ଗାଧୁଆଘର ସଫା କରନ୍ତି, ପାଇଖାନା ସଫା କରନ୍ତି, ରହିବା ଘର ଝାଡୁ ମାରନ୍ତି ଓ ପୋଛା ଲଗାନ୍ତି । କାହାକୁ କୁହାବୋଲା କରି ଯଦି ସ୍ଥାୟୀ ଅର୍ଥାତ୍ ଦିନମଜୁରିଆରୁ ମାସିକ ଦରମାରେ ମୁକରୀର ହୋଇଗଲେ, ତେବେ କୃତକୃତ୍ୟ ।

ମୋ ପାଖକୁ ମାସକୁ ହାରାହାରି କୋଡିଏରୁ ତିରିଶ ଯୁବକ 'ଚାକିରି'ପାଇଁ ଆସନ୍ତି । ଆମ ସଂସ୍ଥାରେ ଯେତିକି ଲୋକ ଅଛନ୍ତି, ସେମାନଙ୍କୁ ମାସକୁ ଠିକ୍ ସମୟରେ ପ୍ରାପ୍ୟ ଦେବାକୁ ବହୁତ ଚିନ୍ତା ଓ ପରିଶ୍ରମର ସମ୍ମୁଖୀନ ହେବାକୁ ପଡେ । କିଏ ମାଟ୍ରିକ ଫେଲ୍ ତ କିଏ ମାଟ୍ରିକ ଉତ୍ତୀର୍ଣ୍ଣ ଶ୍ରେଣୀରେ ପାସ୍ କରିଛି । ଏମ.ଏ.ରେ ଫାଷ୍ଟ କ୍ଲାସ, ଏମ.ଫିଲ କରି ଯା' ତା' ଦୁଆରକୁ ଦଉଡିବାଟା ବେକାରୀ ସମସ୍ୟାଠାରୁ ଏ ଅସାର ଶିକ୍ଷାକ୍ରମ ସଂପର୍କରେ ସୂଚନା ଦେଉଛି । ତଥାପି ଏ ଦେଶରେ ବେକାର ଉତ୍ପାଦନ କରିବାର ସ୍କୁଲ କଲେଜ କାରଖାନା ବଢି ଚାଲିଛି । ଲୋକଙ୍କୁ ପଢାଲେଖା ଶିଖାଇ ସାଧାରଣ ପାଠୁଆ ସ୍ତରକୁ ଆଣିବାର କାର୍ଯ୍ୟକ୍ରମ ଗ୍ରହଣ କରାଯାଇପାରେ । କିନ୍ତୁ ଲୋକଙ୍କୁ ପରୀକ୍ଷାର ଥାକ ତିଆରି କରି ଶିକ୍ଷାର ପ୍ରମାଣପତ୍ର ଧରାଇ ଦେଇ ଅସହାୟ ଭାବରେ ଛାଡି ଦେବାର ଯେଉଁ କାର୍ଯ୍ୟକ୍ରମ ଏ ଦେଶରେ ଚାଲିଛି, ତାହାର ଶେଷ କେଉଁଠି ?

କଳକାରଖାନାରୁ ବିକ୍ରି ଯୋଗ୍ୟ ସାମଗ୍ରୀ ଉତ୍ପାଦନ ହେଲାପରି ଆମର ଅଧିକାଂଶ ଶିକ୍ଷାନୁଷ୍ଠାନ ବେକାର ବିକ୍ରି ଅଯୋଗ୍ୟ 'ଅମଣିଷ' ଉତ୍ପାଦନ କରୁଛନ୍ତି । ସାଧାରଣ (ଅ) ଶିକ୍ଷା ଛଡା ବୈଷୟିକ ଶିକ୍ଷା ପାଇଥିବା ଏହିପ୍ରକାର ଉତ୍ପାଦନ କେନ୍ଦ୍ରରୁ ଯେଉଁମାନେ ବାହାରୁଛନ୍ତି, ସେମାନଙ୍କର ଲମ୍ଫାଧାଡି ଲାଗିଛି ।

ଏପରିକି ଇଞ୍ଜିନିଅରିଂ ଡିପ୍ଲୋମା ଓ ଡିଗ୍ରୀଧାରୀ, ସ୍ଥାପତ୍ୟ ବିଦ୍ୟାରେ ଡିଗ୍ରୀଧାରୀ, କୃଷି ବିଜ୍ଞାନରେ ଡିଗ୍ରୀଧାରୀ, ଡାକ୍ତରୀ ବିଦ୍ୟାରେ ଡିଗ୍ରୀଧାରୀଙ୍କର ବେକାରୀ ହଜାର ହଜାର ସଂଖ୍ୟାରେ ଏହି ରାଜ୍ୟରେ ପହଂଚିଛି । ଶିକ୍ଷା ବିଭାଗକୁ ଜାତୀୟ ସ୍ତରରେ ମାନବ ସମ୍ବଳ ବିକାଶ ନାମଧାରୀ ମନ୍ତ୍ରଣାଳୟରେ ଅନ୍ତର୍ଭୁକ୍ତ କରାଗଲା ପରେ ବେକାରୀର ମାତ୍ରା ଉତ୍କଟ ହେବାରେ ଲାଗିଛି ।

ଆଇ.ସି.ଏ.ଆର(Indian Council of Agricultural Research) ଓ ଅନ୍ୟାନ୍ୟ ବୃହତ୍ ଗବେଷଣା ପ୍ରତିଷ୍ଠାନମାନଙ୍କର ବୈଜ୍ଞାନିକମାନେ ନୈରାଶ୍ୟ ମଧ୍ୟରେ ଆତ୍ମହତ୍ୟା କରିଥିବାର ବହୁ ଦୃଷ୍ଟାନ୍ତ ରହିଛି ।

ଆମ ରାଜ୍ୟରେ ଶିକ୍ଷା ବିଭାଗରେ ବିଶ୍ୱବିଦ୍ୟାଳୟ ଛଡା ଉଚ୍ଚଶିକ୍ଷା, ସ୍କୁଲ ଓ ଗଣଶିକ୍ଷା ଏବଂ ପ୍ରାଥମିକ ଶିକ୍ଷାର ବିଭାଗ ସବୁ ଖୋଲାଯାଇ ବେକାର ଉତ୍ପାଦନ କେନ୍ଦ୍ରକୁ ପ୍ରସାରିତ କରାଯାଇଛି । ବୈଷୟିକ ଶିକ୍ଷା ଓ ତାଲିମ କ୍ଷେତ୍ରରେ ଦୃଷ୍ଟିଭଙ୍ଗୀ ପ୍ରସାରିତ ହୋଇନାହିଁ । ତେଣୁ ବିଶେଷ ଧରଣର ଶିଳ୍ପ ପ୍ରତିଷ୍ଠା ପାଇଁ ଯେଉଁ ପ୍ରକାର ଲୋକ ଦରକାର, ତାହା ଅନ୍ୟ ରାଜ୍ୟରୁ ଆସୁଛନ୍ତି । ଏହି ପରିସ୍ଥିତିରେ ପରିବର୍ତ୍ତନ ଆଣିବାକୁ ରାଜ୍ୟ ସରକାରଙ୍କର ଚିନ୍ତାଧାରାରେ ପରିବର୍ତ୍ତନ ଘଟିନାହିଁ ଆଜିପର୍ଯ୍ୟନ୍ତ ।

ଯେଉଁଠି ବିଧାନସଭାର ଦିନମଜୁରିଆକୁ ଆତ୍ମହତ୍ୟା କରିବାକୁ ପଡୁଛି ସେଠାରେ ଏ ରାଜ୍ୟରେ ନିଯୁକ୍ତି ଏବଂ ମାନବ ସମ୍ବଳ ଉପରେ ଗୁରୁତ୍ୱ କ'ଣ ଦିଆଯାଉଛି, ତାହାର ସୂଚନା ମିଳୁଛି । ବିଧାୟକମାନେ ଏ ଦେଶର ଆଇନ, ଯୋଜନା ଓ ନୀତି ପ୍ରଣୟନର ମୂଳ ଆଧାର । ଦଳମତ ନିର୍ବିଶେଷରେ ଏହି ଦିଗ ପ୍ରତି ଆସନ୍ନ ବିଧାନସଭା ବୈଠକରେ କୌଣସି ଫଳପ୍ରଦ ଆଲୋଚନା ହେବ କି ନାହିଁ ଅପେକ୍ଷା କରାଯାଉ ।

ତା୫।୧୧।୯୫



# ରାସ୍ତା

ରାସ୍ତା । ରାସ୍ତାର କେତେ ନାଁ ଅଛି । ସଡ଼କ । ପଥ । ବାଟ । ରାଜରାସ୍ତା । ରାଜପଥ । ମାର୍ଗ । ଶୁଦ୍ଧ ଭାଷାରେ ସରଣୀ । ଏମିତି କେତେନାମ । ଭୁଲ ବାଟରେ ଗଲେ କୁପଥ । ବିପଥ । ପଥଭ୍ରଷ୍ଟ ଇତ୍ୟାଦି ।

ସବୁ ରାସ୍ତାର ନାମ ଅଛି । ସେ ନାମ ଦିଆ କୌଳିକ ହୋଇପାରେ  କିମ୍ବା ଲୋକମୁଖରେ ଚଳିଆସି ଥାଇପାରେ  କିମ୍ବା କାହାରି ଦ୍ୱାରା ନାମକରଣ କରାଯାଇପାରେ ଏ ନାମକରଣ ଅଞ୍ଚଳରଲୋକେ ଆନୁଷ୍ଠାନିକ ଭାବରେ ଦେଇପାରନ୍ତି । କିମ୍ବା ପଂଚାୟତ, ମ୍ୟୁନିସିପାଲଟି କିମ୍ବା ରାଜ୍ୟ କର୍ତ୍ତୃପକ୍ଷ ଦେଇ ପାରନ୍ତି । ଆନୁଷ୍ଠାନିକ ଉତ୍ସବର ଆୟୋଜନକରାଯାଇ ସରକାରୀ ପଇସା ଖର୍ଚ୍ଚ ହୋଇ ରାସ୍ତାର ନାମକରଣ ମଧ୍ୟ ହୁଏ । ବଡ଼ ବଡ଼ ଲୋକଙ୍କ ନାମରେ ତାଙ୍କର ସ୍ମୃତିରକ୍ଷା ପାଇଁ ରାସ୍ତାକୁ ନାମ ଦିଆଯାଏ । ଏହି ନାମକରଣ ପଛରେ ରାଜନୀତି ମଧ୍ୟ ନିହିତ ଥାଏ । ଅନେକ ସମୟରେ ଲମ୍ବା ଲମ୍ବା ରାସ୍ତାକୁ କ୍ରମିକ ସଂଖ୍ୟା ଦେଇ ନାମିତ କରାଯାଏ । ଦୁଇପଟେ ଦୁଇଟି ସହରକୁ ସଂଯୋଗ କରୁଥିବା ସହରକୁ ଯୋଡ଼ି ଦେଇ ମଧ୍ୟ ସେହି ନାମରେ ରାସ୍ତାକୁ ଡ଼କାଯାଏ । ତଥାପି ସରକାରୀ କର୍ତ୍ତୃପକ୍ଷ କ୍ରମିକ ନମ୍ବର ଦେଇ ରାସ୍ତାକୁ ଚିହ୍ନିବାକୁ ପସନ୍ଦ କରନ୍ତି । ଏପରିକି ଗ୍ରାମାଞ୍ଚଳରେ ଅପେକ୍ଷାକୃତ କମ୍ ଦୂରତ୍ୱର ରାସ୍ତାକୁ ଦୁଇ ପଟରେ ସଂଯୋଗ କରୁଥିବା ଦୁଇଟି ମୁଖ୍ୟ ଗାଁକୁ ଆଧାର କରି ରାସ୍ତାଟିର ନାଁ ଠିକ୍ କରିଦିଆଯାଏ ।

ଦୁଇ କିମ୍ବା ଅଧିକ ରାଜ୍ୟ (ପ୍ରଦେଶ) ଦେଇ ଯେଉଁ ରାସ୍ତା ଯାଇଥାଏ ତାହା ଜାତୀୟ ରାଜପଥ ନାମରେ ଚିହ୍ନାଯାଏ । ଏହା ମଧ୍ୟ ଜାତୀୟ ସ୍ତରରେ କ୍ରମିକ ନମ୍ବରର ଅଧିକାର ପାଏ । ଯେପରି ଜାତୀୟ ରାଜପଥ ନମ୍ବର ୫ ହେଲା କଲିକତାରୁ ମାଡ୍ରାସ୍ ଯାଇଥିବା ସଡ଼କ । ସେହିପରି କଲିକତାରୁ ବମ୍ବେ ଯାଇଥିବା ରାସ୍ତାକୁ ଜାତୀୟ ରାଜପଥ ନମ୍ବର ୬ ବୋଲି କୁହାଯାଏ । ସେହିପରି ରାଜ୍ୟର ଗୋଟିଏ ମୁଖ୍ୟ ସହରରୁ ଆଉ ଗୋଟିଏ ମୁଖ୍ୟସହରକୁ ଯୋଡୁଥିବା ରାସ୍ତାଗୁଡ଼ିକର ନାଁସବୁ ଦିଆଯିବା ଦରକାର ପଡ଼ିଲା । ଜଙ୍ଗଲ, ଜଙ୍ଗଲରୁ ଗାଁ, ଗାଁରୁ ସହର, ସହରରୁ ମହାନଗର ସବୁ ସୃଷ୍ଟି ହୋଇଗଲା । ମଣିଷ ଏ ଜାଗାରୁ ସେ ଜାଗା ଯିବାକୁ ହେଲେ ବହୁ ଦୂରତ୍ୱ ଅତିକ୍ରମ କରିବାକୁ ହେଲା । ସେଥିପାଇଁ ଯାତାୟାତର ପ୍ରଣାଳୀ ସୃଷ୍ଟି ହେଲା । ମୂଳରୁ ପାଦରେ ଚାଲିବା ଅବସ୍ଥାରୁ କ୍ରମେ ସଡ଼କପଥ, (ସ୍ଥଳପଥ), ଜଳପଥ, ରେଳପଥ ଓ ଆକଶପଥର ଆବଶ୍ୟକତା ଓ ପ୍ରଣାଳୀ ସବୁ ସୃଷ୍ଟି ହୋଇଗଲା । ଆମେ ଏବେ କେବଳ ସ୍ଥଳପଥ କଥା ଆଲୋଚନା କରୁଛେ । ଜଳପଥ ଓ ଆକାଶପଥ ମଧ୍ୟ ନିର୍ଣ୍ଣୟ କରିବାକୁ ପଡ଼ିଲା । ତାହାର ମଧ୍ୟ ମାନଚିତ୍ରଗତ ନାମକରଣ ଅଛି । କିନ୍ତୁ ଏବେ

କେବଳ ସଡ଼କ ବା ରାସ୍ତା କଥା ଆଲୋଚନା କରାଯାଉ ।

ରାସ୍ତା ବିନା ମଣିଷ ଜୀବନ ଓ ଜୀବନର ବିକାଶ ଅସମ୍ଭବ ହୋଇଥାଆନ୍ତା । ଯେତେବେଳେ ଆମେ 'ବେଗ ହିଁ ଉନ୍ନତିର ଲକ୍ଷଣ' ବୋଲି କହୁ ପରୋକ୍ଷରେ ତାହା ଭିତରେ ରାସ୍ତା କଥା ହିଁ କହୁ । ରାସ୍ତା ନଥିଲେ ବେଗ ପ୍ରଶ୍ନ ଉଠନ୍ତାନି । ଦଉଡିବାର ବେଗ, ଚାଲିବାର ବେଗ, ଗାଡ଼ିର ବେଗ, ଜାହାଜର ବେଗ ଓ ବିମାନର ବେଗ ପାଇଁ ରାସ୍ତା ହିଁ ମୁଖ୍ୟ । ସେଥିପାଇଁ କେବଳ ସଡ଼କପଥ ନୁହେଁ । ରେଳପଥ (Rail-Line କିମ୍ବା track), ଜଳପଥ (Sealine), ବିମାନପଥ (Airway) ଚିହ୍ନିତ ଓ ନିର୍ଣ୍ଣିତ ହୋଇଛି । ସେହି ପଥରେ ଗଲାବେଳେ ଆବଶ୍ୟକତା ଠାରୁ ଅଧିକ ବେଗ କିମ୍ବା ନିର୍ଣ୍ଣିତ ସ୍ଥାନ ଛୁଟିଲେ ଧକ୍କା ହେବ ।

ଏହା ସ୍ଥଳପଥ (ସଡ଼କ), ରେଳପଥ, ଜଳପଥ ଓ ଆକାଶ ପଥ ସମସ୍ତ ପ୍ରତି ପ୍ରଯୁଜ୍ୟ । ବେଗ, ସ୍ଥାନ ଓ ଚାଳନାରେ ସଂଯମ ଆଚରଣ ନକଲେ ଧକ୍କା ବା ସଂଘର୍ଷ ଅନିବାର୍ଯ୍ୟ । ଏହି ନିୟମ ଲଙ୍ଘନ କଲେ ବେଗ ଉନ୍ନତି ପରିବର୍ତ୍ତେ ଦୁର୍ଗତିରେ ପରିଣତ ହେବା ସ୍ୱାଭାବିକ । ରାସ୍ତାରେ ଚାଲିଲାବେଳେ କିମ୍ବା ଯେକୌଣସି ଯାନରେ ଯାତାୟାତ କଲାବେଳେ ସଂପୃକ୍ତ ମଣିଷ ରାସ୍ତା ନିୟମ, ବେଗ, ଶୃଙ୍ଖଳା ଓ ଦାୟିତ୍ୱ ନିର୍ବାହ ଏବଂ ନିୟନ୍ତ୍ରଣ ନକଲେ ସଂଘର୍ଷର କେବଳ ବାତାବରଣ ନୁହେଁ ଜୀବନର ସଂକଟ ସୃଷ୍ଟି ହେବ । ଆମେ ଏହି ଦିଗ ପ୍ରତି ଆଦୌ ସଚେତନ ନୋହୁଁ । ନିଜେ ନିଜର ଜୀବନକୁ ସଂକଟ ଭିତରକୁ ଟାଣିଆଣିପାରୁ । ତଥାପି ତାହା ଗ୍ରହଣୀୟ ନୁହେଁ । କିନ୍ତୁ ନିଜ ଛଡ଼ା ଅନ୍ୟମାନଙ୍କର ଜୀବନ ପ୍ରତି ସଙ୍କଟ ସୃଷ୍ଟି କରିବାର ତ କୌଣସି ଯୁକ୍ତି ନାହିଁ ।

ରାସ୍ତାର ଭାବଗତ ଅର୍ଥ ଓ ଆଂଗିକ ମଧ୍ୟ ଅଛି । ଯେ କୌଣସି ସମସ୍ୟାରେ ଆମେ ଯେତେବେଳେ ଘାଣ୍ଟିଚକଟି ହେଉ ଆମେ ବାଟ ଖୋଜୁ । ରାସ୍ତା ବାହାର କରିବାର ପ୍ରଚେଷ୍ଟା ଚାଲେ । ଏହା ବ୍ୟକ୍ତିଗତ, ପାରିବାରିକ, ସାମାଜିକ, ରାଜନୈତିକ, ପ୍ରଶାସନିକ ଓ ବ୍ୟବସାୟିକ ଜଗତ ସମେତ ବିଭିନ୍ନ କ୍ଷେତ୍ରରେ ଘଟେ । ଅନେକ ସମୟରେ ଅନେକ କ୍ଷେତ୍ରରେ ସମସ୍ୟାରୁ ଉଦ୍ଧରିବାକୁ କୌଣସି ଉପାୟ ନଥାଏ । ସେତେବେଳେ ମଣିଷ ସମାଧାନର ବାଟ ଖୋଜିବା ଆରମ୍ଭ କରେ । ବାଟଟି ବାହାରିଲେ ଆଗକୁ ଚାଲିବା ସମ୍ଭବ ହୁଏ । ଏହା ଗ୍ରାମ୍ୟ ସ୍ତରରୁ ରାଜ୍ୟ ସ୍ତର, ଜାତୀୟ ସ୍ତର ଏବଂ ଆନ୍ତର୍ଜାତୀୟ ସ୍ତର ପର୍ଯ୍ୟନ୍ତ ଘଟିପାରେ । ସେଥିପାଇଁ ସମସ୍ୟାରୁ ମୁକ୍ତି ପାଇଁ ରାସ୍ତା ଖୋଜାଯାଏ । ଯିଏ ସଫଳ ରାସ୍ତା ଖୋଜିପାଏ ସେ ବାହାଦୂର ବୋଲି ସାବାସି ପାଏ । ଏହି ପ୍ରକାର ରାସ୍ତା ଖୋଜିବା ପାଇଁ ଏବେ ଗୁଡ଼ିଏ ଲୋକ ବାହାରିଛନ୍ତି ଯେଉଁମାନେ ପରାମର୍ଶଦାତା (Consultant) କିମ୍ବା ବିଶାରଦ (Expert) ଭାବରେ ରାସ୍ତା ବତାଇବା ପାଇଁ ମୋଟା ଫିସ୍ ନେଉଛନ୍ତି ।

ମୁଣ୍ଡଖର୍ଚ୍ଚ କରି ବାଟ ବାହାର କରିବା କିମ୍ବା କେଉଁ ବାଟରେ ଗଲେ ସମସ୍ୟାର ସମାଧାନ ହେବ, ପ୍ରଚୁର ଲାଭ ହେବ ଏପରିକି ନିର୍ବାଚନରେ ଜୟଲାଭ ହେବ ଇତ୍ୟାଦି କାମରେ ଏହି କନ୍‌ସଲ୍‌ଟାଣ୍ଟମାନେ ପ୍ରାଧାନ୍ୟ ଲାଭ କରିଛନ୍ତି । ରାଷ୍ଟ୍ରୀୟ ସରକାରମାନେ ଏତେ ବୁଦ୍ଧିଆ ଲୋକଙ୍କୁ ମୋଟା ଦରମା, ଭତ୍ତା,

ମାଗଣା ଅନେକ ସୁବିଧା, ଅବସର ପରେ ସଦ୍ୟ ନିଯୁକ୍ତି, ଶେଷରେ ପେନ୍‌ସନ୍‌ର ବ୍ୟବସ୍ଥା କରି ପୋଷୁଛନ୍ତି । ତଥାପି ରାସ୍ତା ବାହାର କରିବା ପାଇଁ ଆହୁରି ବେଶି ପଇସା ଖର୍ଚ୍ଚ କରି ବୁଢ଼ିଆ ଲୋକଙ୍କୁ ନିଯୁକ୍ତି ଦେଉଛନ୍ତି ।

ରାସ୍ତା ନଥିଲେ କେତେ ଯେ ଅସୁବିଧା ହେଉଥାନ୍ତା, ତାହାର କଳନା ନାହିଁ । କିନ୍ତୁ ରାସ୍ତା ପାଇଁ ଯେ କେତେ ଅସୁବିଧା ଉପୁଜୁଛି, ଗଣ୍ଡଗୋଳ ହେଉଛି, ଜୀବନ ହାନି ଘଟୁଛି ଏବଂ ପ୍ରାଣହାନିର ଆଶଙ୍କା ସବୁବେଳେ ରହୁଛି ତାହା ମଧ୍ୟ ଚିନ୍ତନୀୟ । ଓଡ଼ିଆରେ ଗୋଟିଏ କଥା ଅଛି : 'ଚାଲି ନ ଜାଣି ବାଟର ଦୋଷ ।' ଏବେ ଏତେ ରାସ୍ତା ହେଲାଣି । କେତେ ରାସ୍ତା ବାହାରିଲାଣି । କିନ୍ତୁ ସେଥିରେ ଚାଲିବା କଷ୍ଟକର ବ୍ୟାପାର । ତେଣୁ ଖାଲି ରାସ୍ତା ହେଲେ ଯଥେଷ୍ଟ ନୁହେଁ । ସେଥିରେ ଚାଲିବାର ବାଟ ଖୋଜିବା ମଧ୍ୟ ଦରକାର ।



# ସଡ଼କ

ଗତ ସପ୍ତାହରେ ମୁଁ 'ରାସ୍ତା' ଶୀର୍ଷକରେ ଏହି ସ୍ତମ୍ଭରେ ଲେଖିଥିଲି । ରାସ୍ତା ଯାହା ସଡ଼କ ମଧ ସେଇଆ ବୋଲି ସ୍ଥୂଳ ଅର୍ଥରେ କୁହାଯାଇପାରେ କିମ୍ବା ବୁଝାଯାଇପାରେ । କିନ୍ତୁ ଯଦି କୁହାଯାଏ, ଏହି (ସବୁ) ସମସ୍ୟାର ସମାଧାନର ରାସ୍ତା କିମ୍ବା ବାଟ ବାହାର କରାଯିବ, ତେବେ ତାହା ବଦଳରେ ସମାଧାନର ସଡ଼କ ବ୍ୟବହାର କରାଗଲେ ଭାବଟା ଖାପ ଖାଇବ ନାହିଁ । ତେଣୁ ସବୁବେଳେ ରାସ୍ତା, ବାଟ ଓ ସଡ଼କ ଏକଦମ ସମାନ ଭାବ ଓ ଅର୍ଥ ବ୍ୟକ୍ତ କରିବ ନାହିଁ । ସଡ଼କଟି ପ୍ରାୟତଃ ସ୍ଥୂଳ ଯାତାୟାତ ଅର୍ଥରେ ହିଁ ବୁଝାଯିବ । ସଡ଼କ ନିୟମିତ ଯାନବାହନ ଚଳାଚଳର ମୁଖ୍ୟ ଉପାଦାନ ।

ସଡ଼କ ଯାତାୟାତ ପାଇଁ ଯେତିକି ଆବଶ୍ୟକ, ତାହାଠାରୁ ଅଧିକ ଦରକାର ମାଲ ସରବରାହ ପାଇଁ । ମଣିଷଟି ଯାତାୟାତ କରିପାରେ କିମ୍ବା ଗୋଟିଏ ସ୍ଥାନରେ ସମଗ୍ର ଜୀବନ କାଟିଦେଇପାରେ । ପ୍ରକୃତରେ ଆମ ଭାରତରେ ୯୦ କୋଟି ଲୋକଙ୍କ ମଧ୍ୟରେ ପ୍ରାୟ ୪୫ କୋଟି ଲୋକ ଯିବା ଆସିବା କରନ୍ତି ନାହିଁ । ଯିବା ଆସିବା କରନ୍ତି ନାହିଁ ବୋଇଲେ ବେଶୀ ଦୂରକୁ ଯିବାର ଆବଶ୍ୟକତା ସେମାନଙ୍କର ନାହିଁ । ପ୍ରଥମ କଥା ସେମାନେ ଏତେ ଗରିବ ଯେ, ନିଜ ଗାଁ ଛାଡ଼ି କୁଆଡ଼େ ଯିବାର ଆବଶ୍ୟକତା ସେମାନଙ୍କର ଜୀବନରେ ଘଟେନାହିଁ । ପାଖ ଗାଁରେ ନାଟ ଯାତ୍ରା ଦେଖିବାକୁ ପଡ଼ିଲେ ଚାଲିକରି ଯାଆନ୍ତି । ଚାଲିବା ବାଟ କମାଇବାକୁ ହେଲେ ସର୍ଟକଟ କରି ବିଲ ବାଟେ ହିଡ଼ ଉପରେ ଚାଲିଗଲେ ରାସ୍ତା କମିଯାଏ । ଦୋଳରେ ମେଲଣ ପାଇଁ ଟିକେ ଦୂରକୁ ଗଲେ ଚାଲିଯାଇ ହେବ । ବଡ଼ଓଷାରେ କେହି କେହି ଧବଳେଶ୍ୱର ଯିବାକୁ ପଡ଼ିଲେ ସମଗ୍ର ଜୀବନରେ ଥରେ ଅଧେ ବସ୍ ଚଢ଼ିବାକୁ ପଡ଼ିଥାଏ । ଜମିବାଡ଼ି ମୋକଦ୍ଦମା ପଡ଼ିଲେ ସବ୍‌ଡିଭିଜନ କିମ୍ବା ଜିଲ୍ଲା ସଦର ମହକୁମାକୁ ଯିବାକୁ ପଡ଼େ । କିନ୍ତୁ ଗରିବ ଲୋକ ମୋକଦ୍ଦମାରେ ପଶିବା କଷ୍ଟକର କଥା । ତେଣୁ ଏହି ଧରଣର ଲୋକଙ୍କ ପାଇଁ ସଡ଼କର ବ୍ୟବହାର ଯଥେଷ୍ଟ କମ୍ । ଯାନବାହନର ଆବଶ୍ୟକତା ସେମାନଙ୍କର ନାହିଁ । କିନ୍ତୁ ସେମାନଙ୍କର ତେଲ, ଲୁଣ, ଆଳୁ, ପିଆଜ, ପିଲାଙ୍କ ପାଇଁ ସିଲଟ, ଗାଧୋଇବାରେ କଦବା କ୍ୱଚିତ ସାବୁନ, ଲୁଗାପଟା ସଫା କରିବା ପାଇଁ ସାବୁନ ଆଦି ଦୈନନ୍ଦିନ ବ୍ୟବହାର୍ଯ୍ୟ ସାମଗ୍ରୀ ପାଇଁ ପରିବହନ ଅତ୍ୟାବଶ୍ୟକ । ସେଥିପାଇଁ ଯେଉଁ ବ୍ୟବସାୟୀ ସେମାନଙ୍କର ଚାହିଦା ପୂରଣ କରୁଛି, ସେ ଜିନିଷପତ୍ର ନିଶ୍ଚୟ ଏବେ ସଡ଼କ ପଥରେ ଟ୍ରକ କି ମିନିଟ୍ରକରେ ଆଣି ନିପଟ ମଫସଲରେ ମଧ ପହଞ୍ଚାଉଛି । ଯେଉଁମାନେ ନିଜ ଗାଁରୁ ସହରକୁ ଯାଉଛନ୍ତି, ସେମାନେ ଯିବାପାଇଁ ବସ ବ୍ୟବହାର କରୁଛନ୍ତି, ସେମାନଙ୍କର ସଡ଼କ ଦରକାର । ସଡ଼କ ବିନା ଯାତାୟାତ ଯେପରି ସମ୍ଭବ ନୁହେଁ,

ସେହିପରି ମାଲ ସରବରାହ ପାଇଁ ସଡ଼କ ଅବଶ୍ୟ ଦରକାର । ଏବେ ତ' ଆଉ ଆଗଭଳି ନୁହେଁ ଯେ, କାନ୍ଧରେ ବାହୁଙ୍ଗି ପକାଇ ବୋହି ଆଣିବ କିମ୍ବା ପୁରୀ ଜଗନ୍ନାଥ ଦର୍ଶନ, ସମଲେଶ୍ୱରୀ ଠାକୁରାଣୀ କି ତାରିଣୀ ଦର୍ଶନ ପାଇଁ ଚାଲି ଚାଲି କରି ଯିବ ଅଧିକା ପୁଣ୍ୟ ଅର୍ଜନ କରିବାକୁ । ଆମ ଗାଁରେ ମୋ ପିଲାଦିନେ ତିନିଜଣ ଲୋକଙ୍କୁ ମୁଁ ଜାଣିଛି, ଯେଉଁମାନେ ରେଳଗାଡ଼ି ଦେଖିନଥିଲେ । ସେମାନଙ୍କ ମଧ୍ୟରୁ ଜଣକୁ ମୁଁ ପିଲାବେଳେ ବୁଝେଇ ବୁଝେଇ ଖାସ ଦିନେ ରେଳଗାଡ଼ି ଦେଖି ଆସିବାକୁ ମନେଇ ପାରିଲି । ସେ ପଖାଳ ଭାତ ଖାଇସାରି ଗାମୁଛା କାନିରେ ଗଣ୍ଡିଏ ମୁଡ଼ି ବାନ୍ଧି ୯ ମାଇଲ ଚାଲି ଚାଲି ଗଲେ ରେଳଗାଡ଼ି ଦେଖିବାକୁ ଧାନମଣ୍ଡଳ ଷ୍ଟେସନକୁ । ସେତେବେଳେ ଦିନବେଳେ କେବଳ ଗୋଟିଏ ରେଳଗାଡ଼ି ସେପଟେ ଯାଉଥିଲା । ତାହା କଲିକତା-ପୁରୀ ପାସେଞ୍ଜର । ଆଉ ତା'ର ପାଇଟା ଗାଡ଼ି ପୁରୀ-କଲିକତା ପାସେଞ୍ଜର ରାତିରେ ପହଞ୍ଚୁଥିଲା ଧାନମଣ୍ଡଳ ଷ୍ଟେସନରେ । ସେ ଲୋକ ଜଣକ ରେଳଷ୍ଟେସନ ଭିତରକୁ ବି ପଶିବାକୁ ସାହସ କଲେନି । ଲୁହାବାଡ଼ ବାହାରେ ରହି ରେଳ ଦର୍ଶନ କରି ସଂଧ୍ୟାବେଳକୁ ଫେରିଲେ । ଆଉ ଦୁଇଜଣ ରେଳଗାଡ଼ି ଦେଖିବା ପୂର୍ବରୁ ବୁଢ଼ାହୋଇ ଉପରକୁ ଗଲେ ।

କିନ୍ତୁ ଏବେ ସଡ଼କର ମହାତ୍ମ୍ୟ ବହୁତ ବଢ଼ିଗଲାଣି । ଯାନବାହନ ଏତେ ବଢ଼ିଗଲାଣି ଯେ, ପରସ୍ପର ସହିତ ଧକ୍କାହେବା ଦୁର୍ଘଟଣାର ସଂଖ୍ୟା ବଢ଼ିବାରେ ଲାଗିଛି । ଦୁର୍ଘଟଣା କେବଳ ଗୋଟିଏ ଯାନ ସହିତ ଆଉ ଗୋଟାଏ ଯାନର ସଂଘର୍ଷରେ ସୀମାବଦ୍ଧ ନୁହେଁ । ସଡ଼କରେ ଚାଲୁଥିବା ଲୋକଙ୍କ ସହିତ କୌଣସି ନା କୌଣସି ଯାନର ଧକ୍କା ଲାଗିଲେ ମୃତ କିମ୍ବା ଆହତ ହେବା ମଣିଷଟି ପାଇଁ ନିଶ୍ଚିତ । ସଡ଼କରେ ଚାଲୁଥିବା ଲୋକଟିର କୌଣସି ଦୋଷ ନଥାଇ ମଧ୍ୟ ସେ ମୃତାହତ ହେବାର ଆଶଙ୍କାରୁ ମୁକ୍ତ ନୁହେଁ । ସଡ଼କଟାରେ ଯାନବାହନ ଚଳାଉଥିବା ଲୋକଙ୍କର ଆଧିପତ୍ୟ । ଏହି କଥାଟି ଘଟିଲାବେଳେ ବେଗ ହିଁ ଉନ୍ନତିର ଲକ୍ଷଣ ନୁହେଁ, ଦୁର୍ଗତିର କାରଣ ହୋଇଯାଇଛି । ଯେଉଁମାନେ ସାଇକେଲ, ମଟର ସାଇକେଲ, ସ୍କୁଟର, କାର, ବସ କିମ୍ବା ଟ୍ରକ ଚଲାଉଛନ୍ତି, ସେମାନେ ନିଜ ଦୋଷରୁ ହେଉ କିମ୍ବା ଅନ୍ୟର ଦୋଷରୁ ହେଉ ପ୍ରାଣ ହରାଇବେ କିମ୍ବା ଜୀବନଟାଯାକ ପଙ୍ଗୁ ହୋଇ କାଳ କାଟିବେ । କିନ୍ତୁ ବସରେ ବସି ଯାଉଥିବା କିମ୍ବା କାରରେ ଯାତ୍ରୀ ଭାବରେ ଯାଉଥିବା ମଣିଷର ନିଜର କ'ଣ ଦୋଷ ଅଛି, ଯେଉଁଥିପାଇଁ ମୃତାହତ ହେବାର ସମ୍ଭାବନାକୁ ସାମନା କରିବ । ଧକ୍କା ହେଉଥିବା ଯାନଗୁଡ଼ିକର ଚାଳକମାନଙ୍କର ଦୋଷରୁ ଧକ୍କା ଲାଗିଲେ ଯେଉଁମାନେ କେବଳ ଆରୋହୀ କିମ୍ବା ପଇସା ଖର୍ଚ୍ଚ କରି ଯାତ୍ରୀ ହେବାର ସୁଯୋଗ କିମ୍ବା ଦୁର୍ଯୋଗ ମୂଲେଇଛନ୍ତି, ସେମାନଙ୍କୁ ଜୀବନ ଦେଇ କିମ୍ବା ଶରୀରକୁ କ୍ଷତବିକ୍ଷତ କରିବାର ମୂଲ୍ୟ ଦେବାକୁ ପଡୁଛି । ଅଧିକାଂଶ କ୍ଷେତ୍ରରେ କ୍ଷତିପୂରଣ ମିଳେନାହିଁ । କାରଣ ଏହି ପ୍ରକାର ଘଟଣାରେ ଆପଣାଆପେ ଯେପରି କ୍ଷତିପୂରଣ ମିଳିବା କଥା, ସେପରି ବ୍ୟବସ୍ଥା ଏ ଦେଶରେ ନାହିଁ । ଯେପରି ଉଡ଼ାଜାହାଜ ଦୁର୍ଘଟଣାରେ ମୃତାହତ ହେଲେ ସର୍ବନିମ୍ନ କ୍ଷତିପୂରଣର ସ୍ଥାୟୀ ବ୍ୟବସ୍ଥା ଅଛି, ତାହା ସଡ଼କ ପରିବହନ କ୍ଷେତ୍ରରେ ନାହିଁ । ଆଇନ ଦୃଷ୍ଟିରୁ କ୍ଷତିଗ୍ରସ୍ତ ଲୋକ କିମ୍ବା ତା'ର ପରିବାରର ଲୋକେ ମୋକଦ୍ଦମା କରି ବିଚାରାଳୟରୁ ଅର୍ଡର ଆଣି କିଛି ପାଇପାରନ୍ତି । କିନ୍ତୁ ମୋକଦ୍ଦମା କିପରି କଇଁଛ

ଗତିରେ କେତେ ଅତୁଆ ବାଟ ଦେଇ ଚାଲେ ଏବଂ ଯେତେବର୍ଷ ଲାଗେ, ସେଥିରେ କେତେ ଲୋକଙ୍କର ତାକତ ଅଛି ନ୍ୟାୟ ପାଇବା ପାଇଁ । ଭାରତୀୟ ରେଲୱେ ସରକାରଙ୍କ ମାଲିକାନାରେ ଥିବାରୁ ଦୁର୍ଘଟଣା ଘଟିଲେ କିଛିଟା କ୍ଷତିପୂରଣ ଆପଣାଛାଏଁ ଘୋଷିତ ହୁଏ । କିନ୍ତୁ ବିଭିନ୍ନ କାରଣରୁ ଏହି କ୍ଷତିପୂରଣ ପର୍ଯ୍ୟାପ୍ତ ହୁଏନାହିଁ ଏବଂ ମିଳିବାରେ ବହୁ ବାଧକ ଥାଏ । ସଡ଼କରେ ଯାତାୟାତ କରୁଥିବା ଲୋକଙ୍କ ପାଇଁ ସ୍ଥାୟୀ ଭାବରେ କୌଣସି ଇନ୍‌ସୁରାନ୍‌ସ ବ୍ୟବସ୍ଥା ନାହିଁ । ତାହାହେଲେ ସମ୍ପୃକ୍ତ ପକ୍ଷକୁ ସରକାର, ଇନ୍‌ସୁରାନ୍‌ସ କମ୍ପାନୀ କିମ୍ବା ସମ୍ପୃକ୍ତ ଯାନର ମାଲିକ ତରଫରୁ କ୍ଷତିପୂରଣ ମିଳନ୍ତା । ମୋକଦ୍ଦମା କରି ଏସବୁ ଆଦାୟ କରିବା କେତେ ଗହନ ବ୍ୟାପାର ।

ସଡ଼କ ଦୁର୍ଘଟଣା ଏବେ ଏତେ ଘଟିବାର କାରଣ କ'ଣ ? ସହଜରେ ଚାଳକ ଲାଇସେନ୍‌ସ ମିଳିବା ମୋ ମତରେ ପ୍ରଧାନ କାରଣ । ଅନ୍ୟାନ୍ୟ କାରଣ, ସମସ୍ତେ ସେଥିରେ ଅଛନ୍ତି । ପ୍ରତ୍ୟେକ ଯାନଚାଳକ ଶୀଘ୍ର ପହଞ୍ଚିବାକୁ ଚାହେଁ । ବସର ଚାଳକ ଜଣକ ବୁଝିବାକୁ ପ୍ରସ୍ତୁତ ନୁହେଁ ଯେ, ସେ କେତେଗୁଡ଼ିଏ ଜୀବନର ନିରାପତ୍ତାର ଦାୟିତ୍ୱ ନେଇଛି । ସେ ଅଧିକ ଟ୍ରିପ କଲେ ମାଲିକ ଠାରୁ ପଇସା ଅଧିକ ମିଳିବ । ମାଲିକ ଅଧିକ ଲାଭ କରିବାକୁ ଚାହେଁ । ତେଣୁ ଡ୍ରାଇଭର ଦିନକୁ ଏକାଦିକ୍ରମେ ଲମ୍ବା ଟ୍ରିପ ଓ ଛୋଟ ଟ୍ରିପ୍ କରି ଅଧିକ ପଇସା ଆଣୁ । ଗାଡ଼ି ଅକାଳରେ ବୃଦ୍ଧ ହେଉ କିମ୍ବା ସାମର୍ଥ୍ୟରୁ ଯଥେଷ୍ଟ ଅଧିକ ପାସେଞ୍ଜର ଭର୍ତ୍ତି ହେଉ, ସେସବୁ ପ୍ରତି ଭୃକ୍ଷେପ ନାହିଁ । ଡ୍ରାଇଭିଂ ଦୋରସ୍ତ ନହେଲେ କିଛି କ୍ଷତି ନାହିଁ । ମୁଁ ଜାଣିଛି ଜଣେ ଭଦ୍ରଲୋକ ଆତ୍ମନିଯୁକ୍ତି ଯୋଜନାରେ ନିଜର ଡ୍ରାଇଭିଂ ଲାଇସେନ୍‌ସ ବଳରେ ସରକାରୀ ସଂସ୍ଥାରୁ ଋଣ ନେଇ ପ୍ରଥମେ ଗୋଟିଏ ବସ କିଣିଲେ । ସେଥିରେ ନିଜର ଡ୍ରାଇଭିଂ ଲାଇସେନ୍‌ସ ବଳରେ ଅଳ୍ପ ମାର୍ଜିନରେ ଶୀଘ୍ର ଋଣ ମିଳିଗଲା । ପରେ ସେହି ଋଣଦାନ ସଂସ୍ଥାର ଅନ୍ୟ ଏକ ଶାଖାରୁ ସେହି ଲାଇସେନ୍‌ସ ବଳରେ ଆଉ ଗୋଟିଏ ବସ କିଣିଲେ । ଆଉ ଗୋଟିଏ ଶାଖାରୁ ଟ୍ରକଟିଏ କିଣିଲେ । ତତ୍ତ୍ୱ ହେଲା ସେ ନିଜେ ଗାଡ଼ି ଚଳାଇ ସ୍ୱାବଲମ୍ବୀ ହେବେ । କିନ୍ତୁ ସେ ଭଦ୍ରଲୋକ ଟ୍ରକ, ବସ ତ ଚଳାଇ ପାରିବା ଦୂରର କଥା, କାର କିମ୍ବା ଜିପ୍ ଚଳାଇପାରିବେ ନାହିଁ । କାରଣ ସେ ଡ୍ରାଇଭିଂ ଆଦୌ ଶିଖିନାହାନ୍ତି । ତେବେ ଡ୍ରାଇଭିଂ ଲାଇସେନ୍‌ସ ମିଳିଲା କେମିତି ? ସହଜ ସରଳ କଥା । ପାଞ୍ଚଶହ ଟଙ୍କା ଖର୍ଚ୍ଚକରି ଲାଇସେନ୍‌ସ ପାଇଗଲେ । ଯେଉଁ ସରକାରୀ ସଂସ୍ଥା ଋଣ ଦେଲା, ତାହାର କର୍ମକର୍ତ୍ତାମାନେ ତ ଋଣଗ୍ରହୀତାଙ୍କର ଡ୍ରାଇଭିଂ ପରୀକ୍ଷା କରି ଋଣ ଦେବାର ବ୍ୟବସ୍ଥା ନାହିଁ ।

ଯେପରି ଜଣେ ଜାଲ ସାର୍ଟିଫିକେଟ ଆଣି ଚାକିରି ପାଉଛି, ଠିକ୍ ସେହିପରି ଜଣେ ଚାଳକ ନହୋଇ ଚାଳକର ଲାଇସେନ୍‌ସ ପାଇପାରୁଛି । ତେଣୁ ସଡ଼କ କ'ଣ କରିବ । ସଡ଼କ ଉପରେ ଅତ୍ୟାଚାର ଯଥେଷ୍ଟ । ମୁଁ କାର ଡ୍ରାଇଭିଂ ଶିଖିଲି ୧୯୫୦ ମସିହାରେ । କିନ୍ତୁ ମତେ ଲାଇସେନ୍‌ସ ମିଳିଲା ୧୯୬୨ ମସିହାରେ । କାରଣ କଟକରେ ଏମ.ଭି.ଆଇ. ମତେ ବରାବର ଡ୍ରାଇଭିଂ ଟେଷ୍ଟରେ ଫେଲ କରିଦେଲେ । ମୋର ଜଣେ ସମ୍ପର୍କୀୟଙ୍କ ପୁଅ କାର ଚଳାଇଲା ୧୫ ବର୍ଷ ବୟସରେ । ଲାଇସେନ୍‌ସ ମିଳିଲା ୧୬ ବର୍ଷ ବୟସରେ । ଆଉ କେତେକ ଯୁବକଙ୍କୁ ମୁଁ ଜାଣିଛି । ଯେଉଁମାନେ ଲାଇସେନ୍‌ସ ପାଇବାର ତାଗି

ପାଞ୍ଚ ବର୍ଷ ପୂର୍ବରୁ କାର ଚଳାଇଲେ । ଲାଇସେନ୍‌ସ ଭୁବନେଶ୍ୱରରେ ନ ମିଳିଲେ ଅନ୍ୟ କେଉଁ ସହରକୁ ଯାଇ ଲାଇସେନ୍‌ସ ନେଇ ଆସିଲେ ।

ଏହାର ମୂଳକଥା ହେଲା, ଆଇନର ଶାସନ ଭାଙ୍ଗିପଡ଼ିଛି । ସଡ଼କ ଦେହରେ ଏହାର ବାସ୍ତବ ରୂପ ଭୟଙ୍କର । ଏଥିପାଇଁ ସରକାରୀ ବ୍ୟବସ୍ଥା ଦାୟୀ । କିନ୍ତୁ କେଉଁ ସରକାର ଏହାର ନିରାକରଣ କରିବ ?

ତା୨୬।୧୧।୧୯୯୬



# ପାଳନ

ଆମ ଦେଶରେ ସଭା ସମିତି ଆୟୋଜନ କରିବାର ଏକ ଅଭ୍ୟାସ ରହିଛି । ଏହାକୁ ବିଭିନ୍ନ ରୂପରେ ଦେଖିବାକୁ ମିଳେ । କାହାରି ଜନ୍ମଦିନ ପାଳନ କରିବାକୁ ହେଲେ ତାହା ଜୟନ୍ତୀ ଉତ୍ସବର ଆଖ୍ୟା ପାଏ । ପୁଣି କେତେକ ଅନୁଷ୍ଠାନ କି ପ୍ରତିଷ୍ଠାନର ବାର୍ଷିକ ଉତ୍ସବ, ପ୍ରତିଷ୍ଠା ଦିବସ, ଦଶକ ଦିବସ, ପଚିଶ ବର୍ଷରେ ରୌପ୍ୟ ଜୁବୁଲି, ପଚାଶ ବର୍ଷରେ ସୁବର୍ଣ୍ଣ ଜୁବୁଲି କି ସୁବର୍ଣ୍ଣ ଜୟନ୍ତୀ, ଷାଠିଏ ବର୍ଷରେ ପ୍ଲାଟିନମ ଜୁବୁଲି, ପଚସ୍ତରୀ ବର୍ଷରେ ହୀରକ ଜୟନ୍ତୀ ଏବଂ ଶହେବର୍ଷରେ ଶତବାର୍ଷିକୀ ଉତ୍ସବ ଦିନ ଦିନ ଧରି ପାଳିତ ହୁଏ । ଶତବାର୍ଷିକୀ ଉତ୍ସବ ବର୍ଷେକାଳ ପାଳିତ ହେବାର ପରମ୍ପରା ରହିଛି । ଏବେ ତ ପ୍ରତି ବର୍ଷ ଆନ୍ତର୍ଜାତିକ ପ୍ରତିଷ୍ଠାନମାନେ ଗୋଟାଏ କିଛି 'ବର୍ଷ' ପାଳନ କରୁଛନ୍ତି । ଆନ୍ତର୍ଜାତିକ ମହିଳା ବର୍ଷ, ଶିଶୁବର୍ଷ, ଶ୍ରମିକ ବର୍ଷ, ସ୍ୱାସ୍ଥ୍ୟ ବର୍ଷ ଇତ୍ୟାଦି ନାମକରଣ ଦିଆଯାଇ ବର୍ଷଗୁଡିକ ପାଳିତ ହେଉଛି । ବିଭିନ୍ନ ସଂଗଠନର ପ୍ରତିବର୍ଷ ସପ୍ତାହ ପାଳନ ମଧ୍ୟ ହେଉଛି । ଯଥା: ରେଲୱେର 'ସଫେଇ ସପ୍ତାହ' (Cleanliness Week) ମ୍ୟୁନିସିପାଲିଟି ମାନଙ୍କର ସହରକୁ ସଫାରଖ ସପ୍ତାହ (Keep the city clean Week) ସମବାୟ ସପ୍ତାହ, ସ୍ୱାୟତ୍ତ ଶାସନ ସପ୍ତାହ, ସୌଜନ୍ୟ ସପ୍ତାହ (Courtesy Week) ଇତ୍ୟାଦି କିଛି ନା କିଛିରେ ବର୍ଷସାରା ବାଉନଟି ସପ୍ତାହ କଟି ଯାଉଛି ।

ମୋ ମତରେ ପ୍ରତି ସରକାରୀ ଓ ଅର୍ଦ୍ଧସରକାରୀ ଅଫିସରେ 'କାମ ସପ୍ତାହ' (Work Week) ମଧ୍ୟ ପାଳନ କରାଯିବା ଉଚିତ । ସେହି ସପ୍ତାହଟିରେ ସମସ୍ତ କର୍ମଚାରୀ ଅନ୍ତତଃ ବର୍ଷକର ୬ଟି ଦିନ କିମ୍ବା କେନ୍ଦ୍ର ସରକାରଙ୍କର ସଂସ୍ଥା ହୋଇଥିଲେ ୫ଟି ଦିନ ମନ ଲଗାଇ ନିଷ୍ଠାପର ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରନ୍ତେ । ଅବଶ୍ୟ ଯଦି ସେହି ସପ୍ତାହରେ ଛୁଟି ଦିନ ନଥାଏ । କାରଣ ହାରାହାରି ବାଉନ ସପ୍ତାହ ମଧ୍ୟରୁ ଖୁବ୍ କମ୍ ସପ୍ତାହ ଅଛି, ଯେଉଁଥିରେ ଛୁଟିଦିନ ନଥାଏ । ଆମ ରାଜ୍ୟରେ ଦଶହରା ବେଳକୁ ଛୁଟିର ସପ୍ତାହ ମଧ୍ୟ ମିଳିଯାଏ । ସୌଜନ୍ୟ ସପ୍ତାହ ପାଳନ କରିବା ପଛରେ ରହିଛି ଯେ ବର୍ଷସାରା ଲୋକଙ୍କ ସହିତ ଭଲ ବ୍ୟବହାର କରିବାର ଯେହେତୁ ବାଧ୍ୟତା ନାହିଁ ତେଣୁ ସେହି ସପ୍ତାହଟି ଅନ୍ତତଃ ଲୋକଙ୍କ ସହିତ ଶିଷ୍ଟାଚାର ପାଳନ କରି ସଚେତନ ଭାବରେ ବିନମ୍ର, ବିନୟୀ ହୋଇ ଭଦ୍ର ବ୍ୟବହାର କରିବ । ସଫେଇ ସପ୍ତାହର ଅର୍ଥ ହେଲା ବର୍ଷସାରା ମଇଳା କରିବାର କିମ୍ବା ଆବର୍ଜନା ଜମେଇବାର କାର୍ଯ୍ୟକ୍ରମ ତ ଚାଲୁ ରହିଛି । ବର୍ଷର ସେହି ସପ୍ତାହଟି ଅନ୍ତତଃ ଅଭିନୟ ହେଉ ପଛେ ରାସ୍ତାଘାଟ, ରେଳଡବା ଓ ପ୍ଲାଟଫର୍ମ, ଅଫିସ ଘରଗୁଡାକ ସଫା ସୁତୁରା ରଖିବାର ଉଦ୍ୟମ ହେବ ।

ବର୍ଷସାରା ପଛେ ଅଳିଆ ଆବର୍ଜନା ଜମାହେଉ । ଏହିସବୁ ସପ୍ତାହକୁ ପାଳନ କରିବାପାଇଁ ଯେଉଁ ସବୁ ଅର୍ଥ ମଂଜୁର ହୁଏ, ତାହା 'ପାଳନ ଉତ୍ସବ' ସଭା ସମିତିରେ ଖର୍ଚ୍ଚ ହୁଏ । ପ୍ରତି ସଂଗଠନର ମୁଖ୍ୟଙ୍କ ପ୍ରଭାବ ଅନୁସାରେ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ଅନ୍ୟ ମନ୍ତ୍ରୀ, ବିଭାଗୀୟ ମନ୍ତ୍ରୀ ଓ ବିଭାଗୀୟ ଉଚ୍ଚ ପଦାଧିକାରୀମାନଙ୍କୁ ଆଣି ସଂଧ୍ୟାବେଳିଆ କିମ୍ବା ସେମାନଙ୍କର ସୁବିଧା ଅନୁସାରେ ସକାଳେ ହେଉ ବା ଅପରାହ୍ନରେ ହେଉ ସଭାର ଆୟୋଜନ କରାଯାଏ ।

ଏହି ସଭାରେ କେତେକ ପୁରସ୍କାର କିମ୍ବା ପ୍ରଶଂସାତ୍ମକ ପ୍ରମାଣପତ୍ର ମଧ୍ୟ ଦିଆଯାଏ । ଆୱାର୍ଡ, ପ୍ରାଇଜ ଓ ସାର୍ଟିଫିକେଟ ପାଇବା ପାଇଁ ପ୍ରତିଦ୍ୱନ୍ଦ୍ୱିତା ତ ଥାଏ । ଅନେକ କ୍ଷେତ୍ରରେ ପ୍ରକୃତରେ ଯେଉଁମାନେ ଭଲ କାମ କରି ସବୁଠାରୁ ଯୋଗ୍ୟ ବୋଲି ବିବେଚିତ ହୋଇଥାନ୍ତି, ସେମାନଙ୍କୁ ପୁରସ୍କୃତ କରାଯାଏ । କିନ୍ତୁ ଅନେକ ସମୟରେ ଛଳନାକାରୀ ଓ ଖୋସାମତିଆମାନେ ଉପରିସ୍ଥ ଅଫିସରଙ୍କୁ ଖୁସି କରି ପୁରସ୍କାରଟି ହାସଲ କରି ନିଅନ୍ତି । ଆଜିର ଦୁନିଆରେ ଏସବୁ ସହିବାକୁ ପଡେ । ବର୍ଷକୁ ଏହି ପ୍ରକାର ପାଳନ ଦିବସ, ପାଳନ ସପ୍ତାହ ଓ ପାଳନ ବର୍ଷରେ କେତେ ଖର୍ଚ୍ଚ ହେଉଛି, ତାହାର ଏକ ସର୍ଭେ କିମ୍ବା ମୂଲ୍ୟାୟନ ହେବା ଦରକାର । ତାହା ହେଲେ ଜଣାପଡିବ ଯେ, ଏହି ଅର୍ଥର ବିକଳ୍ପ ଫଳପ୍ରଦ ନିୟୋଜନ କିଛି କରାଯାଇପାରନ୍ତା । ଏହି ପାଳନ ଉତ୍ସବମାନଙ୍କରେ କେତେ ସମୟ, କେତେ ଲୋକଶକ୍ତି (Man hour) ଖର୍ଚ୍ଚହେଉଛି ଏବଂ ଏହାର ଅର୍ଥନୈତିକ ମୂଲ୍ୟ କେତେ ତାହା ମଧ୍ୟ ନିର୍ଣ୍ଣୟ କରାଯିବା ଆବଶ୍ୟକ । ଏଥିରୁ କ'ଣ ଫଳ (Return) ମିଳୁଛି, ତାହାର ମଧ୍ୟ ମୂଲ୍ୟାୟନ ହୋଇପାରିବ । ଏହା ଅର୍ଥନୀତିର ଛାତ୍ର, ଶିକ୍ଷକ ଓ ଯୋଜନା କାର୍ଯ୍ୟରେ ସମ୍ପୃକ୍ତ ଥିବା ଅଧିକାରୀମାନେ  କରିପାରିବେ । ସାମଗ୍ରିକ ସ୍ତରରେ ନିର୍ଭୁଲ ମୂଲ୍ୟାୟନ ହୁଏତ ସମ୍ଭବ ନୁହେଁ ଏବଂ ଏହା ସମୟସାପେକ୍ଷ । କିନ୍ତୁ ମ୍ୟୁନିସିପାଲିଟିମାନଙ୍କ ମଧ୍ୟରୁ ତିନି ସ୍ତରର ଦୁଇଟି ଲେଖାଏଁ ମ୍ୟୁନିସିପାଲିଟି, ଗ୍ରାମପଞ୍ଚାୟତମାନଙ୍କରୁ ପଚିଶିଟିର, ବ୍ଲକସ୍ତରରେ ବିଭିନ୍ନ ଜିଲ୍ଲାର ଦଶଟି ବ୍ଲକର ଓ ତିନିଟି ମହିଳା ସଂଗଠନର ସର୍ଭେ କରାଯାଇ ଏ ପ୍ରକାର ହିସାବ ପ୍ରାୟ ନିର୍ଭୁଲ ଭାବରେ ବାହାର କରାଯାଇ ପାରିବ । ଆମ ରାଜ୍ୟର ଯୋଜନା ଓ ସମନ୍ୱୟ ବିଭାଗ ଏହା ପୂର୍ବରୁ ପ୍ରଚାର ନକରି ଏକ ସର୍ଭେ କରାଇଲେ ଅପବ୍ୟୟର ମାତ୍ରା ଓ ନିଷ୍ଫଳା କାର୍ଯ୍ୟକ୍ରମର ଖର୍ଚ୍ଚ ଜାଣି ପାରନ୍ତେ । ଏହି କାମ ପାଇଁ ମଧ୍ୟ ନିଷ୍ପାପର ବେସରକାରୀ (ଖାସ ଏନ.ଜି.ଓ ନୁହେଁ) ଲୋକଙ୍କୁ ଦାୟିତ୍ୱ ଦିଆଯାଇପାରନ୍ତା । ଉଦାହରଣ ସ୍ୱରୂପ ରାଜ୍ୟର ତିନିଟି ମୁଖ୍ୟ ବିଶ୍ୱବିଦ୍ୟାଳୟର ଅର୍ଥନୀତି, ସମାଜ ବିଜ୍ଞାନ, ନୃତତ୍ତ୍ୱ ଓ ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ ଓ ଛାତ୍ରମାନଙ୍କୁ ସ୍ୱଳ୍ପ ଖର୍ଚ୍ଚରେ ଏପରି ଅନୁଶୀଳନ କରିବା ଦାୟିତ୍ୱ ଦେଇପାରନ୍ତି । ଏଥିରୁ ବେଶ୍ ଚକ୍ଷୁ ଉନ୍ମୋଚନକାରୀ ତଥ୍ୟ ବାହାରିବ, ଯାହାଦ୍ୱାରା ସରକାର ନୂତନ ପଥ ଆବିଷ୍କାର କରିପାରିବେ ।

୩।୧୨।୯୫



# ଚାକିରି

ମୋ ନିକଟକୁ ମାସକୁ ହାରାହାରି ପ୍ରାୟ ପଚିଶି ବା ତିରିଶ ଜଣ 'ଶିକ୍ଷି [illegible] 'ଚାକିରି' ପାଇଁ । ଏ ଦେଶରେ ଏମାନଙ୍କୁ ଶିକ୍ଷିତ ବେକାର କୁହାଯାଏ । ମୁଁ ସେମାନଙ୍କର ସାକ୍ଷାତକାର ନେବାକୁ ଯାଇ କୁହେ ଯେ, ସେମାନେ ସାଙ୍ଗରେ ଦରଖାସ୍ତ ଆଣିଛନ୍ତି କି ? କେହି ଦରଖାସ୍ତ ନେଇ ଆସି ନଥାନ୍ତି । କେହି ନିଜର 'ଶିକ୍ଷା'ର ପ୍ରମାଣପତ୍ର ମଧ ଆଣି ନଥାନ୍ତି । କିଏ ବି.ଏ, ବି.କମ୍, ବି.ଏସସି., ଏମ.ଏ., ବି.ଇଡି. ଇତ୍ୟାଦି 'ପାଶ୍' କରିଥାଆନ୍ତି । ସେମାନଙ୍କୁ କହେ ଗୋଟିଏ ଦରଖାସ୍ତ ଲେଖ । କାଗଜର ଗୋଟିଏ ପିଠିରେ ଓଡିଆରେ ଏବଂ ଅପର ପୃଷ୍ଠାରେ ଇଂରାଜୀରେ ଦରଖାସ୍ତଟିଏ ଲେଖିବାକୁ କହିଲେ ମତେ ଖଣ୍ଡିଏ କାଗଜ ଯୋଗାଇବାକୁ ପଡେ । କଲମ କି ଡଟ୍‌ପେନ୍ ମଧ କେହି ପକେଟ୍‌ରେ ମାରିନଥାନ୍ତି । ତେଣୁ ତାହା ମଧ ଯୋଗାଇବାକୁ ପଡେ । ଶେଷରେ ଯେଉଁ ଦରଖାସ୍ତର ନମୁନା ଦେଖିବାକୁ ମିଳେ, ଉଭୟ ଓଡିଆ ଓ ଇଂରାଜୀ ଭାଷାରେ ତାହା ଅତ୍ୟନ୍ତ ଅଶୁଦ୍ଧ ବନାନ, ଭାବ, ବାକ୍ୟ କେଉଁଥିରୁ (କର୍ତ୍ତା, କର୍ମ, କ୍ରିୟା) ତାହା ଭାଷା ଦୃଷ୍ଟିରୁ ବୋଧଗମ୍ୟ ନୁହେଁ । କେବଳ ଠାସ୍‌କୁ ମାରି କିଏ ବା କ'ଣ ବୁଝିବ ।

ଆଉ ଗୋଟିଏ ପ୍ରଶ୍ନ ପଚାରେ । ''ତୁମେ ଚାକିରି କରିବାକୁ ଆସିଛ ନା କ'ଣ କାମ କରିବାକୁ ଆସିଛ ?'' ଚାକିରି ଓ କାମ ମଧରେ କ'ଣ ଫରକ୍ ସେମାନଙ୍କୁ ବୁଝିବାକୁ ସମୟ ଲାଗେ । ମୁଁ କୁହେ,''କାମ ହୁଏତ ମୁଁ ତୁମକୁ ଦେଇପାରେ କିନ୍ତୁ ଚାକିରି ଦେବା ତ ମୋ ପକ୍ଷରେ ସମ୍ଭବ ନୁହେଁ ।'' କାମଟା ଚାକିରି ନୁହେଁ ଏକଥା ସେମାନେ ବୁଝିବାକୁ ନାରାଜ୍ । କିଛି କାମ କଲେ ତାହା ବଦଳରେ ଆପଣା ଆପେ କିଛି ପ୍ରାପ୍ୟ ମିଳିବ, ତାହା ସେମାନଙ୍କ ମଗଜରେ ପଶେ ନାହିଁ । ଯେ କୌଣସି କାମ କଲେ ତାହାର କିଛି ପାରିଶ୍ରମିକ ମିଳିବ ତାହା ସେମାନେ ବୁଝି ପାରନ୍ତିନି । ଆଉ ଗୋଟିଏ ପ୍ରଶ୍ନ ହେଲା : ''କି କାମ କରିପାରିବ ?'' '' ମୁଁ ଯେକୌଣସି କାମ କରିପାରିବି ।'' ମୋର ଏହାର ଉତ୍ତର ହେଲା: '' ଦିନକୁ ଦୁଇଘଣ୍ଟା ଆସିବ । ଅମ ଘରଟି ଝାଡୁ କରିବ, ବଗିଚାରେ ଗଛରେ ପାଣି ଦେବ । ଠିକା କାମ । ଦିନକୁ କିଛି ମଜୁରି ନେବ । କ'ଣ ପାରିବ ?'' ତା'ପରେ ଆଖିରେ ବିସ୍ମୟ ଦୃଷ୍ଟି । ସେ ଏତେ ପାଠ ପଢିଛି । ଏହି କାମ କେମିତି କରିବ ? ଯେକୌଣସି କାମ ଭିତରେ ଏପରି କାମ ତ ଯାଏନା । ଶିକ୍ଷିତ ଲୋକ । ଟେବୁଲ ଚୌକିରେ ବସି ଉପରେ ପଙ୍ଖା ହାଉଆ ଖାଇ ସିନା ସେ କାମ କରିବ । ଏଗୁଡା କି କାମ । ନାହିଁ ଆଜ୍ଞା ଚାଲିଲି । ସେ କାମ ଖୋଜୁନି । ଚାକିରି ଖୋଜୁଛି ।

ଯେଉଁ ପ୍ରକାର ଚାକିରି ସେ ଖୋଜୁଛି ସେଥିରେ କାମ ନଥିବ କିମ୍ବା ଲେଖା ଲେଖି ପଢାପଢି କାମ ଥିବ । ପହିଲାକୁ ଦରମା ମିଳିବ । ବୋନସ୍ ଏତେ, ଡି.ଏ.ଏତେ, ପରିବାର ପାଇଁ ମେଡିକାଲ ବେନିଫିଟ୍

ଏଡେ, ହାଉସ୍ ରେଣ୍ଟ ଏଡେ, ଲିଭ୍ ସରେଣ୍ଡର ଏଡେ, ଏଲ.ଟି.ସି. ଏଡେ, ଟ୍ରାଭେଲିଂ ଆଲାଉନ୍ସ ଏଡେ ଇତ୍ୟାଦିର 'ଚାକିରି' ସମସ୍ତଙ୍କର ଦରକାର । କାମ କେତେ ସେ କଥାର କୌଣସି ମାପ ନାହିଁ । ଲେଖାପଢା କାମପାଇଁ ସେ ଯୋଗ୍ୟ ନୁହେଁ ତାହା ତା'ର ଦରଖାସ୍ତ ଲେଖାରୁ ସେ ବୁଝିପାରେ ନାହିଁ । ସରକାରୀ ଚାକିରିଟିଏ ହେଲେ ସେ ମୋଟା ଅଙ୍କର ଘୁସ୍ ମଧ୍ୟ ଦେବାକୁ ପ୍ରସ୍ତୁତ । କାରଣ ସରକାରୀ ଚାକିରିରେ 'ଉପୁରି' ଅଛି । ଆଗେ ସବୁ ଜାଗାରେ ନଥିଲା । ଏବେ ପ୍ରାୟ ସବୁଜାଗାରେ କିଛିନା କିଛି ଉପୁରି 'ରୋଜଗାର' ଅଛି । ଉପର ଲିଖିତ ସବୁ ରୋଜଗାର ସହିତ ଚାକିରି ସରିଲେ ଯାବଜ୍ଜୀବନ ପେନସନ ଏବଂ ମୃତ୍ୟୁପରେ ପତ୍ନୀ ମଧ୍ୟ ପେନସନ ପାଇବେ । ସେପରି କିଛି ହାଡଭଙ୍ଗା ଖଟଣୀ ନାହିଁ । ଦାୟିତ୍ୱ ମଧ୍ୟ ବିଶେଷ କିଛି ନାହିଁ । ଭାଷା ଓ ବନାନ ଭୁଲ ହେଲେ କିଛି ଅସୁବିଧା ମଧ୍ୟ ନାହିଁ । ଆଜିକାଲି ଯେ କୌଣସି ସରକାରୀ ଚିଠି ପଢିଲେ ଏହି ପ୍ରକାର ଭୁଲ ସବୁ ଯଥେଷ୍ଟ ଦେଖିବାକୁ ମିଳିବ । କାରଣ ମୂଳ ଡ୍ରାଫ୍ଟ ଏହି ଧରଣର ତଳିଆ କର୍ମଚାରୀ କରନ୍ତି । ଟାଇପିଷ୍ଟ ମଧ୍ୟ ଏହି ଧରଣର ଶିକ୍ଷିତ । ଯେଉଁ ଅଫିସର ଚିଠିରେ ଦସ୍ତଖତ କରନ୍ତି ସେମାନେ ଚିଠିକୁ ଦସ୍ତଖତ ପୂର୍ବରୁ ପଢନ୍ତି ନାହିଁ କିମ୍ବା ପଢିଲେ ଭୁଲ ଗୁଡାକ ଚଳିବ ଭାବି ଦସ୍ତଖତ ମାରିଦିଅନ୍ତି । କିନ୍ତୁ ଏମିତି ଖୁସିବାସିଆ ଚାକିରି ଏ ଦେଶରେ କେତେ ବା ଅଛି ? ଯେଉଁ 'ଶିକ୍ଷା' ଚାଲିଛି ସେଥିରେ ଏହିପରି ଯୋଗ୍ୟ ପିଲା କଳକାରଖାନାରୁ ଦ୍ରବ୍ୟ ଉତ୍ପାଦନ ହେଲା ପରି ସ୍କୁଲ କଲେଜରୁ ଉତ୍ପାଦନ ହେଉଛନ୍ତି । ଏମାନେ ନିଯୁକ୍ତି-ଯୋଗ୍ୟ ନୁହଁନ୍ତି । ତଥାପି କ'ଣ କରାଯିବ । ଏମାନେ ବୁଝୁନାହାଁନ୍ତି କିମ୍ବା ସେମାନଙ୍କର ବାପା ମା ବୁଝୁନାହାଁନ୍ତି କିମ୍ବା ଦେଶର ଶାସନ ଦାୟିତ୍ୱରେ ଥିବା ଲୋକେ ବୁଝୁନାହାଁନ୍ତି ଯେ ଏହି ଶିକ୍ଷା ପଦ୍ଧତି କାମ କରିବା ପାଇଁ ଛାତ୍ରକୁ ଯୋଗ୍ୟ କରୁନାହିଁ । ସେମାନେ 'ଶିକ୍ଷା' ହାସଲ ନ କରିଥିଲେ କିଛି ନା କିଛି କରି ଜୀବିକା ନିର୍ବାହ କରିପାରିଥାନ୍ତେ ।

ଯେଉଁମାନେ ଛୋଟ କାମ କରିପାରୁଛନ୍ତି ସେମାନେ ଜୀବିକା ଅର୍ଜନ କରିପାରୁଛନ୍ତି । ବରଂ ସେମାନଙ୍କର ଆବଶ୍ୟକତା ଠାରୁ ଅଧିକ ଅର୍ଜନ କରୁଛନ୍ତି । ରାସ୍ତା କଡରେ ସିଝାଅଣ୍ଡା ଯିଏ ବିକ୍ରି କରିପାରୁଛି ସେ ଦିନକୁ ତିରିଶ ଟଙ୍କାରୁ ପଚାଶ ଟଙ୍କା ରୋଜଗାର କରୁଛି । କେବଳ ସଂଧ୍ୟା ବେଳର କାମ । ଦିନସାରା ପଡିଛି ଯାହା କରିପାରିବ । ଠେଲାଗାଡିରେ ଯିଏ ଗୁପଚୁପ୍ ବିକୁଛି, ଯିଏ କଦଳୀ ବିକୁଛି, ଯିଏ ଚାଟ ବିକୁଛି, ମାଛ ବିକୁଛି, ପରିବା ବିକୁଛି ସେମାନେ କେତେ ରୋଜଗାର କରୁଛନ୍ତି ତାହାର ହିସାବ କ'ଣ ଏହି ଶିକ୍ଷିତ ଯୁବକମାନେ ନେଉଛନ୍ତି ? କିନ୍ତୁ ଯେତେ ରୋଜଗାର କଲେ ବି ସେମାନେ ଏସବୁ ଛୋଟକାମ କରିବେ ନାହିଁ । କାରଣ ସେମାନେ 'ଶିକ୍ଷିତ' । ଏବେ ଦେଖିବାକୁ ମିଳୁଛି କେତେକ ଶିକ୍ଷିତ ବେକାର ବର୍ଷକୁ ବର୍ଷ ରାସ୍ତା କଡରେ କନା ଘେରାଇ ଖ୍ରୀସ୍‌ମାସ୍ କାର୍ଡ, ନୂଆବର୍ଷ କାର୍ଡ, ରାକ୍ଷୀ, ଦିୱାଲି ବେଳେ ବାଣ, ଦୋଳବେଳେ ଅବିର ଓ ରଙ୍ଗ ଇତ୍ୟାଦିର ଦୋକାନ କରି ଭଲ ପଇସା ରୋଜଗାର କରୁଛନ୍ତି । ମୁଣ୍ଡ ଲଗେଇଲେ ଏହିପରି କେତେପ୍ରକାର ଛୋଟ ବ୍ୟବସାୟ କରିହେବ । କିନ୍ତୁ କାମ ନକରି ଚାକିରି ଖୋଜିଲେ କ'ଣ ସମସ୍ତଙ୍କ ପାଇଁ ଚାକିରି ଅଛି ? ଆମର ନୂଆ ଅର୍ଥନୀତି ଫଳରେ ନିଯୁକ୍ତିଯୋଗ୍ୟ କେତେ ଲୋକ ବେକାର ହେଉଛନ୍ତି । ସେକଥା ଆଉ କେବେ ।

୨୪।୧୨।୯୫

❑❑❑

# ମାନସିକତା

ପ୍ରତି ମଣିଷର ଚେର ଅଛି । ଯେମିତି ଗଛର ଚେର ଅଛି ଠିକ୍ ଆକ୍ଷରିକ ଅର୍ଥରେ ନହେଲେ ମଧ୍ୟ ଭାବ ଓ ତତ୍ତ୍ୱ ଦୃଷ୍ଟିରୁ ମଣିଷ ଚେର ବିନା ବଞ୍ଚିବନି କିମ୍ବା ବଢ଼ିବନି । ମଣିଷ କେଉଁଠି ଜନ୍ମ ହୋଇଥିଲା, କେଉଁମାନେ ତା'ର ଜନ୍ମଦାତା, କେଉଁ ଭୂଇଁରୁ ସେ ଉଠିଛି ଏ ସବୁ ମଣିଷ ପାଇଁ ଆବଶ୍ୟକ । ଯେଉଁ ମଣିଷ ଯେତିକି ମାତ୍ରାରେ ଚେରଗୁଡାକ ଛାଡି ବଢିବା ଆରମ୍ଭ କରେ, ତା'ର ସତ୍ତା ଓ ସତ୍ତ୍ୱ ସେତିକି ମାତ୍ରାରେ ଦୁର୍ବଳ ହୋଇହୋଇ ଯାଏ । ବାହାରକୁ ସେ ଯେତେ ଯଶସ୍ୱୀ ଦେଖାଯାଉ ତାହାର ମନ ଗହନର କୌଣସି ନା କୌଣସି କଣରେ ଏକ ଚୋରା କ୍ଷତ ଥାଏ । ସେ କ୍ଷତରୁ କେବେ ନା କେବେ ରକ୍ତ ବାହାରେ, ଯାହାକୁ ସେ ନିଜସ୍ୱ କରି ରଖିବାକୁ ଚାହେଁ । ଗୋପନ କରି ରଖିବାକୁ ଚାହେଁ । କିନ୍ତୁ ଚେରକୁ ସେ ପଦାକୁ ଆଣିବାକୁ ଚାହେଁନା । କାରଣ ଏହି ଚେର ହୁଏତ ତା'ର ସାଂପ୍ରତିକ ସ୍ଥିତିକୁ ପ୍ରକାଶ୍ୟ ଆଘାତ ଦେଇପାରେ । ମଣିଷଟା ଅତି ବିଚିତ୍ର ଭାବରେ ଦୁର୍ବଳ । ଦୁର୍ବଳତା ତା'ର ଅନ୍ତର ମହଲକୁ ଘୁଣ ପରି ଖାଉଥାଏ । ଏ ଦୁର୍ବଳତାର ଊର୍ଦ୍ଧ୍ୱକୁ ଯିବାକୁ ସେ ଚାହେଁନାହିଁ । କିନ୍ତୁ ଏହି ଦୁର୍ବଳତାରୁ ଥରେ ମୁକ୍ତି ପାଇଗଲେ ସେ ଯେ କେତେ ଶକ୍ତିଶାଳୀ ହୋଇପାରନ୍ତା, ସେ ବୁଝେନାହିଁ । ଏହି ଦୁର୍ବଳତାରୁ ମୁକ୍ତି ପାଇଲେ ତା'ର ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱର ବିକାଶ ହୁଅନ୍ତା । ସେ ଆଉ ହୀନମନ୍ୟତାର ଶିକାର ହୁଅନ୍ତା ନାହିଁ ।

ଦରିଦ୍ର ଲୋକ ଧନୀ ହେଲେ ଅନ୍ୟ ଦରିଦ୍ରଙ୍କ ପାଇଁ ସହାନୁଭୂତିଶୀଳ ହୁଏନାହିଁ । ବରଂ ଦରିଦ୍ରଙ୍କ ପ୍ରତି ସେ କଠୋର ମନୋଭାବ ପୋଷଣ କରେ । ଅନେକ ସମୟରେ ଦରିଦ୍ରକୁ ସେ ଘୃଣାକରେ । ସେମାନଙ୍କୁ ଇତର ଦୃଷ୍ଟିରେ ଦେଖେ । ଦାରିଦ୍ର୍ୟ ଯେ ସ୍ୱେଚ୍ଛାକୃତ ନୁହେଁ, ସେ କଥା ସ୍ୱୀକାର କରିବାକୁ ଚାହେଁନା । ଦାରିଦ୍ର୍ୟର ଚେର ତା' ପାଇଁ ଗର୍ବର ବିଷୟ ନୁହେଁ । କାରଣ ସେ ଆଉ ଦରିଦ୍ର ନୁହେଁ । ଦରିଦ୍ରର ମାନସିକତା ଯେହେତୁ ସେ ଅତିକ୍ରମ କରିପାରେ ନାହିଁ, ତେଣୁ ଦରିଦ୍ର ସହିତ ସେ ସଂପର୍କ ରଖିବାକୁ ଚାହେଁନାହିଁ ।

ଏପରିକି ମାନସପଟରେ ସେ ଦାରିଦ୍ର୍ୟ ପ୍ରତି ମହାନୁଭବତାର ମଧ୍ୟ ଉଦ୍ରେକ କରିପାରେ ନାହିଁ । ଦରିଦ୍ରକୁ ସେ ଅତ୍ୟନ୍ତ ତୁଚ୍ଛ ଦୃଷ୍ଟିରେ ଚାହେଁ । ଦରିଦ୍ରକୁ ସେ କାତର ଭାବରେ ଦୟା(Pity) କରେ । ସେ ମୋଟେ ସହ୍ୟ କରିପାରେ ନାହିଁ ଯେ, କାଳର ଚକ୍ରରେ ଦରିଦ୍ରରୁ ବଡ ଲୋକ (ଧନୀ) ହୋଇଛି ଏବଂ ହୁଏତ କାଳଚକ୍ରରେ ସେ ନିଜେ କିମ୍ବା ତା'ର ଉତ୍ତର ପୁରୁଷ ପୁଣି ତା' ଜୀବନର ତା'ର ପୂର୍ବ ପୁରୁଷର ଦାରିଦ୍ର୍ୟକୁ ଫେରିଯାଇପାରନ୍ତି ।

ମୁଁ ଏପରି କେତେ ଜଣଙ୍କୁ ଜାଣିଛି, ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ କଥା ମନକୁ ଆସୁଛି । ଏହା ବାସ୍ତବ

ଜୀବନର ଦୃଷ୍ଟାନ୍ତ(Case History) ମୋ ପାଇଁ । ଜଣେ ୩୦ ବର୍ଷ ତଳେ କୌଣସି ଏକ ସହରରେ ଅତ୍ୟନ୍ତ ଦାରିଦ୍ର୍ୟ ଜର୍ଜରିତ ଜୀବନଯାପନ କରୁଥିଲେ । ସ୍କୁଲ ଶିକ୍ଷା ମଧ୍ୟ ସମାପ୍ତ କରିବାର ସୁଯୋଗ ନଥିଲା । ଯା ତା' ପଛରେ ଗୋଡାଇ ଛୋଟ କଣ୍ଟ୍ରାକ୍ଟରୀ କାମ ଆର ଭ କରିବା ପାଇଁ ମଧ୍ୟ ସାମାନ୍ୟ ପୁଞ୍ଜି ନଥିଲା । ୧୯୬୦ ଦଶକରେ ଗୋଟିଏ ନୂଆ ପ୍ରକଳ୍ପରେ ପାଞ୍ଚଶ ହଜାରେ କି ଦି' ହଜାର ଟଙ୍କା ଧାରଧୁରା କରି କାମ ଆରମ୍ଭ କଲେ । ନୂଆ ପ୍ରକଳ୍ପ ମାନଙ୍କରେ ଚୋରିଚୂରା କରିପାରିଲେ, ଇଂଜିନିୟରମାନଙ୍କୁ ଖୋସାମତ କରିପାରିଲେ ଅଧିକ ଅର୍ଥ ଲାଭ ହୁଏ । ତାହା ହିଁ ଏହି ଦରିଦ୍ର କଂଟ୍ରାକ୍ଟରଙ୍କ ହାବୁଡରେ ପଡିଲା । ସବୁ ହିନସ୍ତା କାମ ସେ କରିଛନ୍ତି ମୋ ଜାଣନ୍ତରେ । ସେ 'ବଡଲୋକ' ହେବା ଆରମ୍ଭ କଲେ । ମାଟି ଘର ଓ ଚାଳଛପର ଭଡା ଘରୁ ସେ ପକ୍କା ମେଜିଆର ଟାଇଲ ଘର ଭଡାନେଲେ ।

ତା' ପରେ ପଛକୁ ଫେରି ଚାହିଁବାକୁ ତାଙ୍କର ଆଉ ମନେନାହିଁ । ୧୯୭୫ ମସିହା ବେଳକୁ ସେ କୋଟିପତି ହୋଇଥିଲେ କି ନାହିଁ ସେ ହିଁ କହିପାରିବେ । କିନ୍ତୁ ୧୯୮୦ ମସିହା ବେଳକୁ ସେ କୋଟିପତି ହୋଇଗଲେଣି ବୋଲି ତାଙ୍କର ବ୍ୟବସାୟୀ ବନ୍ଧୁମାନେ କହିବା ଆରମ୍ଭ କଲେ । ଏବେ ସେ ହିଁ ନିଜେ କହିପାରିବେ । କଂଟ୍ରାକ୍ଟରୀ ସହିତ ଆଉ ସବୁ ନୂଆ ବ୍ୟବସାୟ(କିଣାବିକା, ଏଜେନ୍ସି ଓ କାରଖାନା ବସାଇ ବିଭିନ୍ନ ଦ୍ରବ୍ୟ ଉତ୍ପାଦନ କରିବା) ମେଳାଇ ଏବେ ରାଜ୍ୟର ଗଣ୍ୟମାନ୍ୟ ଧନୀ ବଡଲୋକ । କିନ୍ତୁ ଧନୀ ହେବା ସହିତ ସେ ଅନ୍ୟମାନଙ୍କ ସହିତ ବ୍ୟବହାର ପ୍ରଦର୍ଶନରେ ତୁଚ୍ଛତା ଦୃଷ୍ଟିଭଂଗୀ ନେଲେ । କଥା କଥାରେ ଜଣାଇଲେ ଯେ, ଟଙ୍କାରେ ସେ କେତେ ଉଚ୍ଚକୁ ଯାଇଛନ୍ତି । ଏପରିକି ଯେଉଁମାନେ ତାଙ୍କର ଭୟଙ୍କର ଦାରିଦ୍ର୍ୟ ଦେଖିଛନ୍ତି, ସେମାନଙ୍କ ଆଗରେ ମଧ୍ୟ ଧନୀର ଅହଂକାର ନେଇ କଥାବାର୍ତ୍ତା କଲେ । ଦରିଦ୍ର ଲୋକ ତାଙ୍କ ପାଖକୁ ଗଲେ ସେ ଏବେ ତୁଚ୍ଛଭାବ ପ୍ରଦର୍ଶନ କରନ୍ତି, ଅପମାନଜନକ ଭାଷା ବ୍ୟବହାର କରନ୍ତି ଦେଖିଲେ ଏହି ଧନୀ ଲୋକଟାର ଦୁର୍ବଳତା ପ୍ରତି ଦୟା ଆସିବ ।

ଆଉ ଜଣେ ଏତେ ଦରିଦ୍ର ଥିଲେ ଯେ, ସ୍କୁଲପଢା ଶେଷ କରିବା ପୂର୍ବରୁ ପାଠରେ ଡୋରି ବାନ୍ଧି ବସିଥିଲେ । କିଛି ଲୋକଙ୍କ ସାହାଯ୍ୟ, କିଛି ଟିଉସନ କରି ପାଠ ପଢିଲେ । ସ୍ନାତକୋତ୍ତର ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଜଣେ ଧନୀ ବ୍ୟବସାୟୀଙ୍କ କନ୍ୟାକୁ ବିବାହ କରିବାର ସୁଯୋଗ ମିଳିଲା । ବ୍ୟବସାୟୀଙ୍କ କନ୍ୟା ମାଟ୍ରିକ ମାତ୍ର ପାସ କରିଥିଲେ । ତେଣୁ ଜ୍ୱାଇଁ କିଣିବାକୁ ଯାହା ଆବଶ୍ୟକ, ତାହା ଖର୍ଚ୍ଚ କଲେ । ସହରରେ ଘର କରିଦେଲେ । ଜ୍ୱାଇଁ ମଧ୍ୟ ଦାରିଦ୍ର୍ୟରୁ ଉପଶମ ପାଇଁ ବିଶେଷ ସୁନ୍ଦରୀ ହୋଇନଥିବା କନ୍ୟାର ହାତଟି ଗ୍ରହଣ କରିବାକୁ ଉନ୍ମୁଖ ହୋଇ ପଡିଲେ । ତା'ପରେ ଶ୍ୱଶୁରଙ୍କ ପାଣ୍ଠିରେ ପି.ଏଚ.ଡି. କରି ବିଦେଶ ଗଲେ । ବିଦେଶରୁ ଉଚ୍ଚତର ଡିଗ୍ରୀ ହାସଲ କରି ଓଡିଶା ବାହାରେ ଏକ ବିଶ୍ୱବିଦ୍ୟାଳୟରେ କିଛି ଦିନ ଅଧ୍ୟାପନା କରିବା ପରେ ଏକ ବଡ ବ୍ୟବସାୟ ସଂସ୍ଥାରେ ମୋଟା ଦରମାରେ ଚାକିରି ଆରମ୍ଭ କଲେ । ସେଠାରୁ ଭାରତ ସରକାରଙ୍କ ଏକ ବଡ ସଂସ୍ଥାରେ କାମ କଲେ । ଏହି ସଂସ୍ଥାରେ ଥିଲାବେଳେ ଅନୁପାର୍ଜିତ ଆୟର ବିପୁଳ ସୁଯୋଗ ମିଳିଗଲା । ଧନୀ ହୋଇଗଲେ । ଉଚ୍ଚଶିକ୍ଷାର ସମ୍ମାନ ଥିଲା । ଧନୀ ଶ୍ୱଶୁର ସାଂଗକୁ ନିଜର ଦୁର୍ନୀତିଗ୍ରସ୍ତ ଜୀବନରେ ବିପୁଳ ସଂପତ୍ତିର ଅଧିକାରୀ ହେଲେ ।

ବଂବେରେ ଘର, ଦିଲ୍ଲୀରେ ଘର, ବାଂଗାଲୋରରେ ଘର ଏବଂ ଓଡିଶାରେ ବିରାଟ ଘର ସହିତ ୫୦ ଏକରର ଫାର୍ମ ହାଉସ କରିଛନ୍ତି । ଏବେ ଅବସର ନେବାର ସମୟ ଆସିଲାଣି । ତାଙ୍କ କଥାବାର୍ତ୍ତାରେ ବଡଲୋକୀ । ଦାରିଦ୍ର୍ୟ ଓ ଦରିଦ୍ର ପ୍ରତି ଘୃଣାଭାବ । ଜ୍ୱାଇଁ ଆଇ.ଏ.ଏସ ଅଫିସର ଓଡିଶା ବାହାରେ । ପୁଅ ଏମ.ବି.ଏ. ପାସ୍ କଲା ଆମେରିକାରେ । କିନ୍ତୁ ତାଙ୍କ ଭିତରେ ସେହି ଚେରଟିର ଆଘାତ ଏବେ ମଧ୍ୟ ସୁସ୍ପଷ୍ଟ । ସବୁ କଥାରେ ପଇସା ଏବଂ ପୋଜିସନ୍‌ର ପ୍ରଶଂସା ଏବଂ ଅହଂକାର । ଅନାବଶ୍ୟକ ଭାବରେ ଏହା କାହିଁକି ସେ କରନ୍ତି ଜାଣିହୁଏ ନା । ପୁଣି ଯେଉଁମାନେ ତାଙ୍କର ଚେର କେଉଁଠୁ ଆସିଛି ଜାଣନ୍ତି, ସେମାନଙ୍କ ନିକଟରେ ପ୍ରୌଢୀ । ଚରମ ହୀନମନ୍ୟତାର ଏ ଚିହ୍ନ ନୁହେଁ ତ ଆଉ କ'ଣ ? ତାଙ୍କର ଉଚ୍ଚଶିକ୍ଷା ଏବଂ ସାମାଜିକ ଅଭିଜାତ ଷ୍ଟାଟସ ମଧ୍ୟରେ ରୁଚି ଓ ମଣିଷ ପଣିଆର ସ୍ୱାଭାବିକତା ନାହିଁ । ଚେରଟି ଶୁଖିଯିବାରୁ ଏପରି ବ୍ୟକ୍ତିତ୍ୱର ପ୍ରକାଶ ପାଇଛି । ସେ ବି ଏକ ଦୟନୀୟ ବସ୍ତୁ । ଏ ଦୁଇଟି ଉଦାହରଣ ଦେବାର ଉଦ୍ଦେଶ୍ୟ ହେଲା ଦୁଇଜଣ ଦରିଦ୍ର । ଜଣେ ସାମାନ୍ୟ ପାଠ ପଢିଛନ୍ତି । ଆଉ ଜଣେ ବହୁତ ବିଦ୍ୱାନ ହୋଇ ଉଚ୍ଚତର ସୋପାନରେ ପହଞ୍ଚିଛନ୍ତି । ଉଭୟ ଅଣ-ସଚ୍ଚୋଟ ଉପାୟରେ ଧନୀ ହୋଇଛନ୍ତି । କିନ୍ତୁ ମୌଳିକ ବିଚାର ଦୃଷ୍ଟିରୁ ଉଭୟଙ୍କର ବୌଦ୍ଧିକ ସ୍ତର ଏବଂ ରୁଚି ସମାନ । କାରଣ ଉଭୟ ନିଜର ଚେରକୁ କାଟି ଦେଇ ପ୍ରକୃତ ବ୍ୟକ୍ତିତ୍ୱକୁ ଢାଙ୍କିବାକୁ ଚେଷ୍ଟା କରୁଛନ୍ତି ।

ଆଉ ଗୋଟାଏ ଧରଣର ଚେର କଥା ମନକୁ ଆସୁଛି । ଜଣେ ଭଦ୍ରଲୋକ ଆମେରିକା ଯାଇ ସଫଳତା ହାସଲ କରିଛନ୍ତି । ବର୍ଷକୁ ଅଢେଇ ଲକ୍ଷ ଡଲାର ଦରମା ପାଆନ୍ତି । ପ୍ରତି ଡଲାରର ଭାରତୀୟ ମୁଦ୍ରାରେ ମୂଲ୍ୟ ଏବେ ୩୫ ଟଙ୍କା । ଅର୍ଥାତ୍ ବର୍ଷକୁ ଦରମା ୮୭ ଲକ୍ଷ ୫୦ ହଜାରଟଙ୍କା । ଆମେରିକାର ନାଗରିକତ୍ୱ ଗ୍ରହଣ କରିଛନ୍ତି । ଝିଅ ଦୁଇଟି ଓ ପୁଅ ଦୁଇଜଣ ଡାକ୍ତର ଏବଂ ଇଂଜିନିୟର । ସେମାନେ ମଧ୍ୟ ମୋଟା ରୋଜଗାର ଆରମ୍ଭ କଲେଣି । ଭଦ୍ରଲୋକ ଏବଂ ତାଙ୍କ ପତ୍ନୀ ଆସିଛନ୍ତି ଓଡିଶା, ଓଡିଆ ବୋହୂ ଏବଂ ଓଡିଆ ଜ୍ୱାଇଁ ଖୋଜିବାକୁ । ସେମାନେ ଖାଲି ଓଡିଆ ହେଲେ ଚଳିବନି । ସେମାନେ ବ୍ରାହ୍ମଣ ମଧ୍ୟ ହେବା ଆବଶ୍ୟକ । ଆମେରିକାର ନାଗରିକ ଭାରତରୁ ଏବଂ ଓଡିଶାରୁ ଓଡିଆ ବ୍ରାହ୍ମଣ ଘର ଝିଅ ପୁଅ ଆମଦାନୀ(Import) କରିବେ । ଏ କଥାର ତାତ୍ପର୍ଯ୍ୟ ହେଲା ସେମାନେ ନିଜର ଚେରକୁ ଭୁଲିନାହାଁନ୍ତି । ତାଙ୍କ ଚେର ଭାରତର ଓଡିଶାରେ ବ୍ରାହ୍ମଣ କୁଳରେ । ଆମେରିକାନ ନାଗରିକତ୍ୱ ତେବେ କାହିଁକି ଗ୍ରହଣ କଲେ । ଆମେରିକାନ ହୋଇ ସୁଦ୍ଧା ସେ ଓଡିଶା ବ୍ରାହ୍ମଣ ରହିବାକୁ ଚାହାଁନ୍ତି । ଏଠିକା ଚେର ସେଠାରେ ରୋପଣ କରିବାକୁ ଚାହାଁନ୍ତି ବୋଧହୁଏ । ତାଙ୍କର ପୁଅଝିଅମାନେ ଆମେରିକାର ଚାଲିଚଳନି ଓ ହାୱାରେ ବଢିଛନ୍ତି । ସେମାନେ ନିପଟ ଓଡ଼ିଶା ସ୍ୱାମୀ ଓ ପତ୍ନୀଙ୍କୁ କାହିଁକି ଓ କିପରି ନେଇ ଚଳିବେ । ତଥାପି ବାପା ମା'ଙ୍କ ଚେର ଖୋଜିବା ସହିତ ନିଶ୍ଚୟ ଏକମତ ହୋଇଥିବେ । ନଚେତ ଏ ବରକନ୍ୟା ଖୋଜା ଏଠାରେ କାହିଁକି ? ସ୍ୱଦେଶ ପ୍ରେମ ଥିଲେ ଭାରତୀୟ ନାଗରିକତ୍ୱରୁ ଇସ୍ତଫା କାହିଁକି ଦେଇଥାନ୍ତେ । ସେମାନେ ଓଡିଆ ବ୍ରାହ୍ମଣ । ଭାରତୀୟ ମଧ୍ୟ ନୁହଁନ୍ତି । କାରଣ ଆମେରିକାରେ ଯଥେଷ୍ଟ ଭାରତୀୟ ଅଛନ୍ତି । ତେଣୁ ଓଡିଆ ନହେଲେ ବି ଅନ୍ୟ ରାଜ୍ୟ ଅନ୍ୟ ଭାଷାଭାଷୀଙ୍କ ମଧ୍ୟରେ ବରକନ୍ୟା

ମଧ ଖୋଜି ପାଇଥାନ୍ତେ । ଆମେରିକାର ଓଡିଆ ମଧ ଯଥେଷ୍ଟ ସଂଖ୍ୟକ ଅଛନ୍ତି । ସେମାନଙ୍କ ମଧରେ ମଧ ଜ୍ୱାଇଁ ଓ ବୋହୂ ଖୋଜାଯାଇ ପାରନ୍ତା । ପରିବାରର ସମସ୍ତେ ଆମେରିକାର ନାଗରିକ । ଅନ୍ୟ ଆମେରିକୀୟ ପରିବାରଙ୍କ ସହିତ ମଧ ବିବାହ ବନ୍ଧନ ଖୋଜାଯାଇ ପାରନ୍ତା । କିନ୍ତୁ ଚେର ଯେ ଓଡିଆ ବ୍ରାହ୍ମଣ ଘରେ । ଏ ଆଉ ଏକ ଚେରର ନମୁନା । ଏ ମାନସିକତା ଆଉ ଏକ କିସମର । ଆମେରିକାର ନାଗରିକତ୍ୱ ଗ୍ରହଣ କରିବାରେ ଦ୍ୱିଧା ନାହିଁ । ତେଣୁ ଭାରତରୁ ଚେର କଟାଇ ଦିଆଯାଇପାରିଲା । କିନ୍ତୁ ଝିଅପୁଅ ବିବାହ ବେଳକୁ ଚେର ଖୋଜା ଚାଲିଛି ।

୩୧।୧୨।୯୫



# ପଶ୍ଚିମୋଦୟ

ଆମ ସଂସ୍କୃତି ଓ ଚଳନୀ କ୍ଷେତ୍ରରେ ଏବେ ପଶ୍ଚିମରୁ ସୂର୍ଯ୍ୟ ଉଦୟ ହେବାରେ ଲାଗିଛି । ଗତ ୪୫ ବର୍ଷ ମଧ୍ୟରେ ବ୍ରିଟିଶ ଶାସନ ଏଠାରୁ ଯିବାପରେ ଏହି ପ୍ରକ୍ରିୟାଟି କ୍ଷୀପ୍ରତର ହୋଇଛି । ବ୍ରିଟିଶ ଶାସନ କାଳରେ ଆମେ ଧୋତିରୁ ହାଫ ପ୍ୟାଣ୍ଟ, ଫୁଲ ପ୍ୟାଣ୍ଟ(ପ୍ରକୃତରେ ଇଂରାଜୀରେ ଏହା ପ୍ୟାଣ୍ଟସ୍) ପିନ୍ଧିବା ଆରମ୍ଭ କଲୁ । ଯେଉଁମାନେ ଇଂରାଜୀ ପାଠରେ 'ଉପରକୁ' ଚାଲିଗଲେ ସେମାନେ ପାଶ୍ଚାତ୍ୟ ଲୋକଙ୍କର ଅନୁକରଣରେ ଏ ପୁରୁଷରୁ ଆର ପୁରୁଷ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଢାଞ୍ଚାରେ ବସ୍ତ୍ରରୁ ଆରମ୍ଭ କରି ଖାଦ୍ୟପେୟ ଇତ୍ୟାଦି ମଧ୍ୟ ବଦଳାଇବାରେ ଲାଗିଲେ ।

ଗାଁରେ ଚୂଡା, ମୁଢି ଓ ପଖାଳ ଯେଉଁମାନେ ଖାଉଥିଲେ ଉଚ୍ଚତର ପାଠ ପଢିବାପାଇଁ ଯେତେବେଳେ ସହରକୁ ଆସିଲେ ବରା, ପିଆଜି, ଗୁଲଗୁଲା ସକାଳ ଜଳଖିଆରେ ଖାଇବା ଆରମ୍ଭ କଲେ । ଯେଉଁ ଛାତ୍ରମାନେ ଗାଁରୁ ଚୂଡା ଆଣି ଚିନି କି ଗୁଡ ଗୋଳେଇ ଛାତ୍ରାବାସରେ ଖାଇଲେ ସହରୀ ପିଲା ଏହି ଧରଣର ମଫସଲର(ମଫସଲୀ) ପିଲାଙ୍କୁ 'ଚୂଡା' ଆଖ୍ୟା ଦେଲେ । ଆଜି ପର୍ଯ୍ୟନ୍ତ ଏହି ଆଖ୍ୟା ଚାଲୁ ରହିଛି । ପାଶ୍ଚାତ୍ୟ ସଂସ୍କୃତି କ୍ରମେ ସହରୀ ସଂସ୍କୃତିର ରୂପ ନେଲା ।

ପ୍ୟାଣ୍ଟପିନ୍ଧା ଲୋକେ ଏବଂ ଧୋତିପିନ୍ଧା ଲୋକେ ଯଥାକ୍ରମେ ପାଶ୍ଚାତ୍ୟ ଏବଂ ଭାରତୀୟ ସଂସ୍କୃତିର ପ୍ରତିନିଧି ଭାବରେ ଆତଯାତ କଲେ । ସ୍କୁଲ ପଡାରେ ସାମାନ୍ୟ ଇଂରାଜୀ ପଢିଥିବା ଲୋକ କେବଳ ଓଡିଆ ପଢିଥିବା କିମ୍ବା ଇଂରାଜୀ ପଢିନଥିବା ଲୋକଠାରୁ ନିଜକୁ ଉଚ୍ଚତର ସୋପାନରେ ବସାଇବା ଆରମ୍ଭ କଲେ ।

ଇଂରାଜୀ 'ସଭ୍ୟତା' ଆଧୁନିକତା ବୋଲି ପରିଗଣିତ ହେଲା । ବ୍ରିଟିଶ ଶାସନ ଥିବା ପର୍ଯ୍ୟନ୍ତ ଏହି ରୋଗଟା ଏତେ ଉତ୍କଟ ହୋଇନଥିଲା । ବ୍ରିଟିଶ ଶାସନ ଶେଷ ହେଲା ବେଳକୁ ପଶ୍ଚିମା ସଂସ୍କୃତି ଆମ ସମାଜରେ ଠେଲି କରି ପଶିବା ଆରମ୍ଭ ହେଲା । ପ୍ରଥମ ଏବଂ ଶକ୍ତିଶାଳୀ ଅପରାଧୀ ଏ କ୍ଷେତ୍ରରେ ହେଲା ଚଳଚ୍ଚିତ୍ର । ସିନେମା ଜରିଆରେ ପ୍ରଥମତଃ ଘରର ସାଜସଜ୍ଜାରୁ ଆରମ୍ଭ କରି ସମ୍ବୋଧନରେ ଇଂରାଜୀ ପଶିଆସିଲା । ପୁରୁଣା ହିନ୍ଦି ଚିତ୍ର ଦେଖିଲେ ଜାଣିହେବ ଯେ ବାପା ମାଙ୍କୁ ଡାଡି ମମିରେ ସମ୍ବୋଧନ କରିବା ବ୍ୟାପକ ଭାବରେ ପ୍ରଚାରିତ ଏବଂ ପ୍ରସାରିତ ହେଲା । ସିନେମାରେ ଯେଉଁ ପରିବାରମାନଙ୍କ ବିଷୟ କଥାବସ୍ତୁରେ ଦେଖାଯାଏ ତାହା ସାଧାରଣତଃ ବଡ(ଧନୀ) ଲୋକଙ୍କ ଜୀବନ ସଂପର୍କିତ ଥାଏ । ବଡ ଲୋକମାନେ ସାଧାରଣତଃ ଭାରତୀୟତାରୁ କ୍ରମେ ପାଶ୍ଚାତ୍ୟ ସଂସ୍କୃତି ଆଡକୁ ଆଗେଇବାରେ ଲାଗନ୍ତି । ତଥାପି ସ୍ୱାଧୀନତା ଆସିଲାବେଳକୁ ଏହି ପଶ୍ଚିମା ରୋଗ ମହାମାରୀରେ ପରିଣତ ହୋଇ ନଥିଲା । ଏପରିକି ସହରମାନଙ୍କରେ ବସବାସ କରୁଥିବା ଲୋକେ ବାପା, ବୋଉ, ମା, ବାବା ଇତ୍ୟାଦି

ନିଜର ପିଲାମାନଙ୍କୁ ଶିଖାଉଥିଲେ । କାଳକ୍ରମେ ବଡ ଅଫିସର ନିଜକୁ ସାହେବ ଆଖ୍ୟା ଦେବା ଆରମ୍ଭ କଲେ । ସାହେବ ପୁରୁଣା କାଳରେ ଗୋରା ଚମଡାର ଲୋକଙ୍କୁ ବୁଝାଉଥିଲା । ସାହେବ କିମ୍ବା ସା'ବ ଡାକ ଶୁଣିବା ଭାରତୀୟ ଅଫିସର ସ୍ତରର ଲୋକଙ୍କ ପାଇଁ ମର୍ଯ୍ୟାଦାର ବିଷୟ ହୋଇପଡିଲା । ଘର ଚାକର କିମ୍ବା ଅଫିସ ପିଅନ ଅଫିସରଙ୍କୁ 'ବାବୁ' ବୋଲି ସମ୍ବୋଧନ କଲେ ଘରଣୀ ତାଗଦା କରି ଉଠିଲେ '' ବାବୁ ବୋଲି କ'ଣ କହୁଛୁ ? ସାହବ ବୋଲି କହିବୁ ।'' ଭାରତୀୟ ବାବୁମାନେ ଯଦି ସାହେବରେ ପରିଣତ ହେଲେ ତେବେ ଘରଣୀ ଓରଫ ମା' ଓରଫ ସାହେବଙ୍କ ପତ୍ନୀମାନେ ମେମ୍‌ରେ ପରିଣତ ହେଲେ । ସେମାନଙ୍କୁ '' ମେମ୍ ସା'ବ'' ବୋଲି ଡାକିବାର ବାଧ୍ୟତା ଦେଖାଦେଲା । କେବଳ ଡାକରାରେ ଏହା ସୀମିତ ହୋଇ ରହିଲାନି । କଥାବାର୍ତ୍ତା ନେଲେ ମଧ୍ୟ ଏହି ଶବ୍ଦ ଏବଂ ଭାଷାସବୁ ଚଳନୀରେ ପରିଣତ ହେଲା ।

ମାତୃଭାଷାଟି ଏହି ଦଳାଚକଟା ମଧ୍ୟରେ ବଳି ପଡିଗଲା । କେବଳ ମାତୃଭାଷାରେ ଶିକ୍ଷାଦାନ ପଦ୍ଧତି ପ୍ରଥମେ ସ୍କୁଲର ପ୍ରାଥମିକ ସ୍ତର ପର୍ଯ୍ୟନ୍ତ ଚଳୁଥିଲା । ଉପର ଶ୍ରେଣୀକୁ ଆସିଲେ ଇଂରାଜୀ ଭାଷା ପଢା ଆରମ୍ଭ ହେଉଥିଲା । ଇଂରାଜୀ ଭାଷା ଶିକ୍ଷା ପରେ ଇଂରାଜୀ ସାହିତ୍ୟ ପଢା ଆରମ୍ଭ ହେଲା । ଆହୁରି ଉପରକୁ ଉଠିଲେ ଓଡିଆ କ୍ରମେ ଭାଷା ଓ ସୀମିତ ଭାବରେ ସାହିତ୍ୟ ପଢା ଭାବରେ ରହିଲା । ଅନ୍ୟସବୁ ବିଷୟ ଇଂରାଜୀରେ ପଢିବାକୁ ଓ ଲେଖିବାକୁ ହେଉଥିଲା । ତଥାପି ମାତୃଭାଷା ଉପରେ ଗୁରୁତ୍ୱ ରହୁଥିଲା । ସ୍ନାତକ ପର୍ଯ୍ୟନ୍ତ ଓଡିଆ କଳା, ବିଜ୍ଞାନ ଏବଂ ବାଣିଜ୍ୟ ପାଠରେ ବାଧ୍ୟତାମୂଳକ ଥିଲା । କ୍ରମେ ଏହାକୁ ଏମ.ଆଇ.ଏଲ(ଇଂରାଜୀରେM.I.L. ଅର୍ଥାତ୍Modern Indian Language) ନାମରେ ଆଖ୍ୟାୟିତ କରାଗଲା । ଏଥିରୁ ବୁଝାଯିବ ଯେ, ଓଡିଆ(ସେହି ଅର୍ଥରେ ବଙ୍ଗଳା, ମରାଠୀ, ହିନ୍ଦି, ଗୁଜରାତି ପ୍ରଭୃତି) ଏକ ଆଧୁନିକ ଭାରତୀୟ ଭାଷା । କେବଳ ବୋଧହୁଏ ସଂସ୍କୃତ ହିଁ ପୁରାତନ ଭାରତୀୟ ଭାଷା ଭାବରେ ଗଣାଯିବ । କିନ୍ତୁଆମେ କ'ଣ ଓଡିଆକୁ ଆଧୁନିକ ଆଖ୍ୟା ଦେଇ ଅଢେଇଶହ ବର୍ଷ ହେବ ଏ ଦେଶକୁ ଆସିଥିବା ଇଂରାଜୀ ଭାଷାକୁ ଆମର ମୌଳିକ ଭାଷା ବୋଲି ଗ୍ରହଣ କରୁଛେ ? ଶେଷରେ ଏପରି ହୋଇଛି ଯେ ଏମଆଇଏଲ ପରିବର୍ତ୍ତେ ଜଣେ ଛାତ୍ର ବିକଳ୍ପ ଇଂରାଜୀ ଭାଷା ସାହିତ୍ୟ ପରୀକ୍ଷା ଦେଇପାରିବ । ପୁଣି ଏବେ ମଧ୍ୟ ବିଭିନ୍ନ ପ୍ରଦେଶର ଲୋକଙ୍କ ମଧ୍ୟରେ ଇଂରାଜୀ ହିଁ ସଂଯୋଗ ଭାଷା (Link Language) ଭାବରେ ଏକମାତ୍ର ଆଶ୍ରୟ । ଯଦି କୌଣସି ପ୍ରଦେଶର ଇଂରାଜୀ ପାଠ ପଢିନଥିବା ଅନ୍ୟ ଏକ ପ୍ରଦେଶର ଇଂରାଜୀ ପଢିନଥିବା କିମ୍ବା ଇଂରାଜୀ ପଢିଥିବା ଲୋକ ସହିତ କଥାବାର୍ତ୍ତା କରିବାର ଆବଶ୍ୟକତା ପଡେ, ତେବେ ବଡ ବିଷମ ପରିସ୍ଥିତି ସୃଷ୍ଟି ହୁଏ । ବିଶେଷକରି ଯଦି ଆପଣ ରାଷ୍ଟ୍ରଭାଷା କୁହାଯାଉଥିବା ହିନ୍ଦି ଭାଷା ବ୍ୟବହାର କରନ୍ତି, ତେବେ ଦକ୍ଷିଣ ଭାରତର ଅଧିକାଂଶ ଲୋକ ଆପଣଙ୍କ ସହିତ କଥାବାର୍ତ୍ତା କରିବାକୁ ହୁଏତ ଅସମର୍ଥ ହେବେ କିମ୍ବା ବିମୁଖ ହେବେ । ସେମାନେ ହିନ୍ଦି ସିନେମା ଦେଖିବାକୁ ପାଗଳ ହୁଅନ୍ତି । କିନ୍ତୁ ବ୍ୟକ୍ତିଗତ ସ୍ତରରେ ହିନ୍ଦି କହିବାକୁ କିମ୍ବା ବୁଝିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ଆମ ଓଡିଶାରେ ଆଗେ ଜନ୍ମଦିନ ପାଳିତହେଉଥିଲା, ଠାକୁରଙ୍କ ପାଖରେ ଭୋଗରାଗ କରି ଏବଂ ଘରେ ଚକୁଳି ପିଠା ଓ କ୍ଷିରୀ କରି । ଏବେ ଜନ୍ମଦିନ ପାଳନ ହେଉଛି ବାର୍ଥଡେ ସେଲିବ୍ରେସନରେ (Birthday

Celebration) କେକ୍ କାଟି ମହମବତୀ ଲିଭାଇ । ବାର୍ଥ ଡେ ପାର୍ଟି ଘରେ ହେଉଛି କିମ୍ବା ହୋଟେଲମାନଙ୍କରେ ଖୁବ୍ ଚାକ୍ ଚମକରେ ନିମନ୍ତ୍ରଣପତ୍ର ବାଣ୍ଟିବା ପରେ । ଏପରି କି କଟକ ଓ ଭୁବନେଶ୍ୱର ମଧ୍ୟରେ ଜନ୍ମଦିନ ନିମନ୍ତ୍ରଣ(ବିବାହ ପରି) ପାଳନ ପାଇଁ କାର୍ଡ ବାଣ୍ଟିବାକୁ ପିତାମାତା ଆସୁଛନ୍ତି । ଚକୁଳି ପିଠା ଓଡ଼ିଆର ସଂସ୍କୃତି ଥିଲା । ଏହି ସଂସ୍କୃତି ଗାଁ ଗଣ୍ଡାରେ ଏବେ ମଧ ଅଛି । କିନ୍ତୁ କ୍ରମଶଃ ହଜି ହଜି ଯାଉଛି । କେକ୍ କାଟିବାର ଓ ମହମବତୀ ଜଳାଇ ଫୁଙ୍କି ଲିଭାଇ '' ହାପି ବାର୍ଥ-ଡେ ଟୁୟୁ''ର ଚଳନୀ ସହିତ ଆମେ କ୍ରମେ ଅଭ୍ୟସ୍ତ ହେବାରେ ଲାଗିଲୁଣି । ଏବେ ଏକ ଘଟଣା ମୋ ଜାଣିବାରେ ଘଟିଛି । ଜଣେ ଭଦ୍ରଲୋକଙ୍କ ଘରେ କୁକୁରଟିଏ ଅଛି । କୁକୁରଟିର ପ୍ରଥମ ଜନ୍ମବାର୍ଷିକୀ ପାଳନ କରିବା ପାଇଁ ସେ ଘରର ଜଣେ ସହାୟକ ସ୍ଥିର କଲା । କୁକୁରଟି  ସହାୟକ ଦ୍ୱାରା ପାଳିତ । ସହାୟକ କୁକୁରଟିକୁ ଖୁବ୍ ଭଲ ପାଏ ଏବଂ କୁକୁରଟି ମଧ ତା'କୁ ଭଲ ପାଇବାର ପ୍ରତିଦାନ ଦିଏ । ପ୍ରଥମ ଜନ୍ମବାର୍ଷିକୀ ଦିନ ଗୋଟିଏ ୨୫ ଟଙ୍କିଆ କେକ୍ ସେ କିଣି ଆଣିଲା । ମିଠା ମଧ କିଣିଲା । କେକ୍ ଉପରେ  ୧୨ଟି ମହମବତୀ ପୋତିଦେଲା । ଯେହେତୁ ସେ ଟେଲିଭିଜନରେ ବାର୍ଥ ଡେ ପାର୍ଟିରେ କେକ୍ କଟାଯିବାର ଦେଖିଛି । ତେଣୁ ସେହି ଢାଞ୍ଚାରେ ସେ କୁକୁରର ଜନ୍ମଦିନ ପାଳନ କଲା । ସେ କିନ୍ତୁ ଜାଣିନାହିଁ ଯେ ବୟସ ଅନୁସାରେ ସମାନ ସଂଖ୍ୟକ ମହମବତୀ କେକ୍‌ରେ ପୋତାଯାଏ । ଯା'ହଉ କୁକୁର କଟା କେକ୍‌ର ପ୍ରଥମ ଖଣ୍ଡିକ ଖାଇ ଖୁସି ହେଲା । ତା'ର ପାଳକ ମଧ ଆନନ୍ଦରେ ବିଭୋର ।

ତା୭।୧।୯୬



# ଅଭ୍ୟାସ

ଜନ୍ମ ହେବା ମାତ୍ରେ ଆମେ ପ୍ରତ୍ୟେକ ଜୀବନସାରା କେତେଗୁଡିଏ ଅଭ୍ୟାସର ଦାସ ହୋଇପଡୁ । ଜୀବନ ଯେତିକି ଆଗକୁ ଯାଉଥାଏ, ଆମେ ଆହୁରି ନୂଆ ଅଭ୍ୟାସର କର୍ତ୍ତୃତ୍ୱ ସ୍ୱୀକାର କରୁଥାଉ । ଶିଶୁଟି ଜନ୍ମ ହେଲାମାତ୍ରେ କୁଆଁ କୁଆଁ ଚିତ୍କାର କରେ । ଏହାର ଅନେକ କୈଫୟତ ଦିଆଯାଏ । କେହି କହନ୍ତି, ଭୂମିଷ୍ଠ ହେବାମାତ୍ରେ ଶିଶୁଟି ଈଶ୍ୱରଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ସ୍ୱରୂପ କାନ୍ଦେ । ଆଉ କେହି କହନ୍ତି ସେ ମାତୃଗର୍ଭରେ ରୁଦ୍ଧ ଅବସ୍ଥାରେ ଥାଏ । ତା'ର ବାକ୍ ସ୍ୱାଧୀନତା ନଥାଏ । ବାହାରକୁ ଆସିଲାମାତ୍ରେ ସେ ନିଜର ସ୍ଥିତି ଓ ଅଧିକାର ସମ୍ପର୍କରେ ପୃଥିବୀକୁ ଜଣାଏ ଯେ, '' ମୁଁ ଆସିଲି । ମତେ ସ୍ୱୀକୃତି ମିଳୁ ।'' କେହି କହନ୍ତି ସେ ଗର୍ଭାବସ୍ଥାରେ ମା'ର ରକ୍ତ ମାଂସରୁ ଖାଦ୍ୟ ନେଇ ବଞ୍ଚେ ଏବଂ ବଢୁଥାଏ । ବାହାରକୁ ଆସିଲାମାତ୍ରେ ତା'ର କ୍ଷୁଧା ଏବଂ ତୃଷା ନିବାରଣ ପାଇଁ ଦାବି ଜଣାଏ । କିନ୍ତୁ ସାଧାରଣତଃ ତା'କୁ ତତ୍କ୍ଷଣାତ୍ ଜିଛି ପୃଥିବୀର ଖାଦ୍ୟ ଦିଆଯାଏନା । କେହି କହନ୍ତି ମା'ର ଗର୍ଭରେ ସେ ଏତେ ଚାପିଚୁପି ହୋଇ ବନ୍ଦୀ ଅବସ୍ଥାରେ ଥାଏ ତା'ର କୌଣସି କସରତ ନଥାଏ । ତେଣୁ ବାହାରକୁ ଆସିଲେ ସେ ମୁକ୍ତିର ସ୍ୱର ଉତ୍ତୋଳନ କରେ ଏବଂ ଶରୀର ପାଇଁ କସରତ ଆରମ୍ଭ କରେ । ଗବେଷକମାନେ ଆହୁରି କେତେ ତତ୍ତ୍ୱ ଜାଣିଥିବେ । କିନ୍ତୁ ଅସଲ କଥା ହେଲା ଯେ ମା'ର ଗର୍ଭରେ ତା'ର ନିଜସ୍ୱ କୌଣସି ଅଭ୍ୟାସ ନଥାଏ । ଗର୍ଭାବସ୍ଥାର ସ୍ୱାଭାବିକ ପ୍ରକ୍ରିୟା ମଧ୍ୟରେ ସ୍ୱାଧୀନ ଭାବରେ ନିଜସ୍ୱ ଚାହିଦା ଏବଂ ଅଭ୍ୟାସର ସୁଯୋଗ ନଥାଏ । ଏପରି ଏକ ଅଦ୍ୱିତୀୟ ବନ୍ଦୀଶାଳାରୁ ବାହାରି ଆସିଲା ପରେ ଶିଶୁର ସ୍ୱାଧୀନତା ଆରମ୍ଭ ହୁଏ ।

ମାର୍କ୍ସବାଦୀମାନେ ଯାହା କହନ୍ତି ମଣିଷ ମୁକ୍ତ ହୋଇ ଜନ୍ମ ନିଏ କିନ୍ତୁ ସବୁଆଡେ ଜଞ୍ଜିରର ବେଢି ଭିତରେ ରହିବାକୁ ପଡେ (Man is born free, but in chains everywhere) । ମୋ ମତରେ ଆସୁଛି, ମଣିଷଟି ଜନ୍ମ ମୁହୂର୍ତ୍ତରେ ମୁକ୍ତ ଥାଏ । କିନ୍ତୁ ପରକ୍ଷଣ ଠାରୁ ବିଭିନ୍ନ ଅଭ୍ୟାସ ଯୋଗୁଁ ସ୍ୱାଧୀନତା ହରାଇ ବସେ । ଏହି ଅଭ୍ୟାସଗୁଡିକ ହିଁ ତାର ଜଞ୍ଜିର । ପ୍ରଥମ ଅଭ୍ୟାସ ସେ ଖାଇବା ଦରକାର କରେ । ବିନା ଖାଦ୍ୟରେ ସେ ବଞ୍ଚିବା କଷ୍ଟକର । ବିନା ଖାଦ୍ୟରେ ସେ ତିଷ୍ଠି ପାରେନା । ଜଳବାୟୁ ପାଇଁ ତାର ବସ୍ତ୍ରର ଆବଶ୍ୟକତା ପଡେ । ବଞ୍ଚିବା ପାଇଁ ତାର ଅମ୍ଳଜାନ ମିଶ୍ରିତ ବାୟୁ ଦରକାର ପ୍ରଥମ ମୁହୂର୍ତ୍ତରୁ । ଖାଦ୍ୟ ସହିତ କିମ୍ୱା ଖାଦ୍ୟ ବିନା ତାର ଜଳ ମଧ୍ୟ ଆବଶ୍ୟକ । ବାସସ୍ଥାନ ଆବଶ୍ୟକ । ଏସବୁ ଅତି ଅପରିହାର୍ଯ୍ୟ ଆବଶ୍ୟକତା ମଣିଷକୁ ସେହି ସବୁ ଅଭ୍ୟାସର ବଶ କରିନିଏ । ସେଥିରୁ ମୁକ୍ତି ପାଇବା ଏକରକମ ଅସମ୍ଭବ । କାରଣ ଏହି ଅଭ୍ୟାସଗୁଡିକ ତ୍ୟାଗ କରିପାରିଲେ ସେ 'ଦେବଲୋକ'କୁ ଚାଲିଯାଇପାରେ । କିନ୍ତୁ ମର୍ତ୍ତ୍ୟରେ

ବଞ୍ଚିବା ଅସମ୍ଭବ ।

ଶିଶୁଟି ଯେତେବେଳେ ବଢିବା ଆରମ୍ଭ କରେ ତା'ର ଅଭ୍ୟାସ ସବୁ ବୃଦ୍ଧି ପାଏ । ସେଗୁଡିକ ଆବଶ୍ୟକତା ମଣି ସେ ଅଭ୍ୟାସ ସଂଖ୍ୟା ତାର ଅଜାଣତରେ ମଧ୍ୟ ବୃଦ୍ଧି ପାଏ । ଲଙ୍ଗଳା ଶିଶୁଟିର ଦେହ ଆବୃତ୍ତ କରିବାକୁ କେବଳ ପୋଷାକ ଚାହେଁନା । ବିଭିନ୍ନ କିସମର ପୋଷାକ ପିନ୍ଧିବା ଅଭ୍ୟାସ କରେ । ଆର୍ଥିକ ସାମର୍ଥ୍ୟ ଅନୁସାରେ ପୋଷାକର କିସମ ବୃଦ୍ଧି ପାଏ କିମ୍ବା ସୀମିତ ରହେ । ଯେତେ କମ ପିନ୍ଧିଲେ ମଧ୍ୟ ଶରୀରର କେତେକ ଅଂଶ ଆବୃତ୍ତ ରଖିବାର ବାଧ୍ୟତା ଥାଏ । ଗରିବ (ମଣିଷ) ପୁରୁଷଟି ଅଣ୍ଟା ତଳକୁ ଜଂଘ ପର୍ଯ୍ୟନ୍ତ ସର୍ବନିମ୍ନ ଅଂଶ ଢାଙ୍କିବାକୁ ବାଧ ହୁଏ । ସେହିପରି ନାରୀଟି ଅଣ୍ଟାରୁ ଜଂଘ ଏବଂ ବକ୍ଷାଂଶର କେତେ ଅଂଶ ଆବୃତ୍ତ ରଖିବାକୁ ଚାହେଁ କିମ୍ବା ବାଧ ହୁଏ । ଅବଶ୍ୟ ଏହା ମଧ୍ୟରେ ମୁଁ ମିଳିନ୍ଦ ସୋମନ କିମ୍ବା ମଧୁ ସାପ୍ରେଙ୍କ ପରି ଦୁଃସାହସୀ ଏବଂ ଅସୁନ୍ଦର ମାନସିକତାର 'ବଡ ଶିଶୁ'ଙ୍କ କଥା କହୁନାହିଁ କିମ୍ବା ସୌନ୍ଦର୍ଯ୍ୟ (ସୁନ୍ଦରୀ) ପ୍ରତିଯୋଗିତାରେ ଅଂଶଗ୍ରହଣ କରୁଥିବା କନ୍ୟା ମାନଙ୍କ କଥା ମନକୁ ଆଣୁନାହିଁ । ମଣିଷ ଖାଇବାରୁ 'ପିଇବା' ଅଭ୍ୟାସକୁ ଯାଏ । ପାନ, ବିଡି, ସିଗାରେଟ, ଗଞ୍ଜେଇ, ଅଫିମ୍, ହାସିସ୍, ହେରୋଇନକୁ ମଧ୍ୟ ଅଭ୍ୟାସର ପରିସର ଭିତରକୁ ଆଣେ ।ଏପରି ଅଭ୍ୟାସ ଗୁଡିକର ଚରମ ଦାସରେ ପରିଣତ ହେଲାପରେ ମଣିଷଟି ଏସବୁ ବିନା ବଞ୍ଚିପାରିବନି ବୋଲି ତା'ର ବିଶ୍ୱାସ ଜନ୍ମେ ।

ମଣିଷ କ୍ରମେ ବିବାହ ବନ୍ଧନରେ ବାନ୍ଧି ହୋଇଯାଏ । ପତ୍ନୀ, ପତି, ପୁତ୍ର, କନ୍ୟା ଆଦି ଅର୍ଜନ କରିବା ପୂର୍ବରୁ ସେ ନିଜର ମା ବାପାଙ୍କ ସହିତ ମଧ୍ୟ ଏକ ଅଛିଣ୍ଡା ବନ୍ଧନରେ ବାନ୍ଧିହୋଇଯାଏ । ବିବାହ ପରେ ପିତା ମାତାଙ୍କର ଦାସତ୍ୱରୁ ସେ ପତ୍ନୀ, ପତି, ସନ୍ତାନ ବନ୍ଧନର ଦାସ ହେବା ଆରମ୍ଭ ହୁଏ । ବଡ ହେବାର ମୋହ, ଧନ ଅର୍ଜନର ଲାଳସା, ଯଶ ଖ୍ୟାତିର ଲୋଭ ଇତ୍ୟାଦିର ଦାସତ୍ୱର ବନ୍ଧନରେ ମଣିଷଟି (ପୁରୁଷ କିମ୍ବା ନାରୀ) କ୍ରମେ ବୁଡିଯାଏ ।

ଏହି ବନ୍ଧନରୁ ମୁକ୍ତି ପାଇବା ସମ୍ଭବ ହୁଏନା । ଯେଉଁ ମଣିଷ ଗୁଡାକ ପାନ ସିଗାରେଟର ଅଭ୍ୟାସରୁ ନିଜକୁ ମୁକ୍ତ କରିପାରନ୍ତି ନାହିଁ ସେମାନେ ପରିବାରର ଦାସତ୍ୱରୁ ବା ମୁକ୍ତି ପାଇବେ କିପରି ? ମଣିଷର ସବୁଠାରୁ ବଡ ଦାସତ୍ୱ ହେଲା ବଞ୍ଚିବାର ଲୋଭ । ମଣିଷଟି ଜାଣିଛି ଯେ ମୃତ୍ୟୁ ଅବଶ୍ୟମ୍ଭାବୀ । ତା' ସାମନାରେ ତାର ପୂର୍ବପୁରୁଷ ଏବଂ ଅନେକ ସମୟରେ କନିଷ୍ଠ ମାନଙ୍କର ମୃତ୍ୟୁ ଘଟେ । ତଥାପି ମଣିଷ ବଞ୍ଚିଥିବା ସମୟରେ ମୃତ୍ୟୁର ସମ୍ଭାବନାକୁ ଅଭ୍ୟାସରେ ପକାଏନାହିଁ । ମୃତ୍ୟୁର ଦାସତ୍ୱ ଅପରିହାର୍ଯ୍ୟ । ଏହି ଦାସତ୍ୱକୁ ବରଂ ଗ୍ରହଣ କରିନେଲେ ମଣିଷ ପ୍ରକୃତରେ ଚିରନ୍ତନ ସ୍ୱାଧୀନତାର ସନ୍ତାନ ହୋଇପାରନ୍ତା । ତାହା ହିଁ ସତ୍ୟ । ମୃତ୍ୟୁ ଥରେ ତ ନିଶ୍ଚିତ ଆସିବ । ତେଣୁ ବଞ୍ଚିବାଟାକୁ ଅଭ୍ୟାସ ନକରି ସତ୍ୟକୁ ଅଭ୍ୟାସ କରିବା କ'ଣ ଭୁଲ ହେବ ।

ତା୧୪।୧।୯୬



# ଭୟ

ଆମ ଓଡ଼ିଶାର ଶିଶୁମାନଙ୍କୁ କଥା ମାନିବା ପାଇଁ ବିଭିନ୍ନ ଧରଣର ଭୟ ଦେଖାଯାଏ । ଏକଦମ ଛୋଟ ଅବସ୍ଥାରେ ଶିଶୁଟିକୁ ଦୁଧ ପିଆଇବା ପାଇଁ ଭୂତ, ବାୟା, ଡାଆଣୀ ଆଦି ଭୟ ଦେଖାଇ ଦିଆଯାଏ । ସେହିପରି ଜଲଦି ଶୋଇପଡିବାକୁ ମଧ୍ୟ ତଦ୍ରୂପ ଡର ସୃଷ୍ଟି କରାଯାଏ । ପିଲାପାଠ ପଢିବାକୁ ଗଲେ ମାଷ୍ଟ୍ରକୁ ଭକ୍ତି କରିବା ଠାରୁ ଅଧିକ ଭୟ କରେ । ଛାତ୍ର (ମେଧାବୀ) ମଧ୍ୟ ପାଠପଢା ଠାରୁ ପରୀକ୍ଷାକୁ ବେଶ୍ ଭୟ କରେ । ପାଠ ପଢି ସାରିଲା ପରେ ଚାକିରି ନ ପାଇବାଟାକୁ ମଣିଷ ଭୟ କରେ । ଚାକିରି ପାଇଁ ଇଣ୍ଟରଭ୍ୟୁକୁ ଗଲାବେଳେ ଏବଂ ଇଣ୍ଟରଭ୍ୟୁ ଦେଲାବେଳେ ମଧ୍ୟ ଭୟ ପ୍ରଚୁର । ଚାକିରି ମିଳିବା ବଡ଼ କଷ୍ଟକର ବ୍ୟାପାର । ମିଳିଗଲେ ଅସ୍ଥାୟୀ ଭାବରେ ବହୁବର୍ଷ କାଟିବାକୁ ପଡ଼େ । ଅସ୍ଥାୟୀ ଅବସ୍ଥାରେ ଥିଲା ବେଳେ ମୁକରିର ହେବା ପର୍ଯ୍ୟନ୍ତ ଚାକିରିଟି ହାତରୁ ଖସିଯିବାର ଭୟ ମଧ୍ୟ ସର୍ବଦା ରହିଥାଏ ।

ସନ୍ତାନଟିଏ ଗର୍ଭରେ ରହିଲେ ବାପ ମା'ଙ୍କର ଭୟ ଥାଏ କାଳେ ଝିଅଟିଏ ହେବ କିମ୍ବା କାଳେ ପୁଅଟିଏ ନହେବ । ଅବଶ୍ୟ କମ୍ ସଂଖ୍ୟକ ହେଲେ ମଧ୍ୟ କେତେକ ବାପା ମା' ଝିଅଟିଏ ପାଇବାକୁ ଚାହାଁନ୍ତି । ପୁଅଟିଏ ହେଲେ ନୈରାଶ୍ୟ ଆସେ । ମୋ ନିଜ ଜୀବନରେ ଏପରି ନୈରାଶ୍ୟ ମୁଁ ଅନୁଭବ କରିଛି । ଏବେ କିନ୍ତୁ ଏପରି ବୈଜ୍ଞାନିକ ପଦ୍ଧତି ବାହାରିଲାଣି ଯେ, ଗର୍ଭଧାରଣ ପୂର୍ବରୁ ସଂପୃକ୍ତ ଦମ୍ପତି ଠିକଣା ଚିକିତ୍ସା ବିଶାରଦଙ୍କ ପରାମର୍ଶ ଅନୁସାରେ କାମ କଲେ ଇଚ୍ଛାନୁସାରେ ପୁତ୍ର କିମ୍ବା କନ୍ୟା ଲାଭ କରିପାରିବେ । ଅବଶ୍ୟ ଏ ପ୍ରକାର ଚିକିତ୍ସା ବମ୍ବେରେ ଆରମ୍ଭ ହୋଇଥିବା କଥା ମୁଁ ଜାଣିଛି । ଗର୍ଭଧାରଣ ହେବାପରେ ଆଉ ଏହିପ୍ରକାର ଇଚ୍ଛା ପୂରଣ କରାଯାଇ ପାରିବ ନାହିଁ ବୋଲି କୁହାଯାଏ ।

ସାମାଜିକ ଜୀବନରେ ଅଧିକାଂଶ ଲୋକ ବିଭିନ୍ନ କିସମର ଭୟର ସମ୍ମୁଖୀନ ହେଉଥାଆନ୍ତି । ଭୟ ଏକ ମାନସିକ ପ୍ରବୃତ୍ତି । ଏତେପ୍ରକାର ଦୁର୍ବଳତା ମଧ୍ୟରେ ପ୍ରତ୍ୟେକ ମଣିଷ ଥାଏ । କୌଣସି ନା କୌଣସି ପ୍ରକାର ଭୟ କିମ୍ବା ଅନେକ ପ୍ରକାରର ଭୟକୁ ସାଙ୍ଗରେ ନେଇ ଜୀବନଯାପନ କରେ । ଚାକିରିଆ ଲୋକ (ବିଶେଷକରି ସରକାରୀ ଚାକିରିଆ) ବହୁପ୍ରକାର ଭୟ ଭିତର ଦେଇ ଗତିକରନ୍ତି । ପ୍ରଥମ ଭୟ ହେଲା ଉପରିସ୍ଥ କର୍ମକର୍ତ୍ତାଙ୍କୁ । ଚାକିରିଟିର ଭଲ ମନ୍ଦ ପାଇଁ ଉପରିସ୍ଥ ଅଫିସରଙ୍କର ଆଶୀର୍ବାଦ ନରହିଲେ ଚଳିହେବ । କିନ୍ତୁ କ୍ରୋଧ କିମ୍ବା ଆକ୍ରୋଶ ରହିଲେ ତ ଅସମ୍ଭାଳ ଅବସ୍ଥା । ପ୍ରଥମେ ଚରିତ୍ରଲିପି ଲେଖିଲା ବେଳେ ଏପରି କିଛି ଉପର ହାକିମ ଲେଖି ଦେବେ ଯଦ୍ଵାରା ଭବିଷ୍ୟତ ଅନେକଟା ଅନ୍ଧକାର ହୋଇଯାଏ । ସବୁଠାରୁ ବଡ଼ ଭୟ ବଦଳି । ଏ ଚାକିରିଆମାନେ ଯେକୌଣସି ସ୍ଥାନରେ ଥରେ ଜମିଗଲେ କିଛିଟା

ନ୍ୟସ୍ତସ୍ୱାର୍ଥ ସୃଷ୍ଟି ହୋଇଯାଏ । କେବଳ ଗୋଟିଏ ସ୍ଥାନ ନୁହେଁ, ଗୋଟିଏ ଆସ୍ଥାନ ଯାହାକୁ ସେମାନେ ସିଟ୍ କହନ୍ତି, ସେଠାରୁ ଅନ୍ୟତ୍ର ଯିବାକୁ ଚାହାଁନ୍ତି ନାହିଁ । କାରଣ ସେହି 'ଆସ୍ଥାନ' ବା 'ସିଟ୍'ରେ ତାଙ୍କର କର୍ତ୍ତୃତ୍ୱ କ୍ରମେ ପୂର୍ଣ୍ଣାଙ୍ଗ ହୋଇଯାଏ । ରୁଲସ୍, ସର୍କୁଲାର ଏବଂ ନଜିର ଇତ୍ୟାଦିକୁ ବ୍ୟବହାର କରି ଫାଇଲକୁ ଆଗ, ପଛ, ଉପର, ତଳ, ବାମ, ଦକ୍ଷିଣ ଯେଉଁଆଡକୁ ଚାହିଁବେ ଚଳାଇପାରିବେ । ଉପର ଅଫିସର ଅସ୍ଥାୟୀ । କୁଆଡୁ ଆସିଥିଲେ ପୁଣି କୁଆଡେ ଯିବେ । ସେ କାହୁଁ ସେ ବିଭାଗ କିମ୍ବା ସେ ସିଟ୍‌ର ମାତବରି କଥା ଗୁଡାକ ଜାଣିବେ ? ଏବେ ତଳବାଲା ଉପର ହାକିମଙ୍କୁ ଆଗ ପରି ଡରିବା କମିଲାଣି । ବରଂ ଉପରବାଲା ତଳବାଲାଙ୍କୁ ଭୟ କରୁଛନ୍ତି । ତଳବାଲା ଯାହା 'ନୋଟ୍' ଦେବେ, ତାକୁ ଖଣ୍ଡନ କରିବା କିମ୍ବା ଅତିକ୍ରମ କରିବାର ସ୍ପୃହା ନାହିଁ । ତାହା କଲେ ଦୁର୍ନୀତି କିମ୍ବା ପ୍ରିୟାପ୍ରୀତି ତୋଷଣ କଲେ ବୋଲି ଖବର ବାହାରିଯିବ । ସେ ଡିଲିଙ୍ଗ ଆସିଷ୍ଟାଣ୍ଟ ଯାହା ନୋଟ୍ ଦେଇଛି ତାହା ଆହୁରି ଉପରକୁ ପଠାଇଦେଲେ ଦୋଷ ଗଲା । ତା'ପରେ ପୁଣି ଅଣଗେଜେଟେଡ୍ କର୍ମଚାରୀଙ୍କର ୟୁନିଅନ ଅଛି । କିଏ ଏତେ ବଳାରେ ପଶେ । ଏମାନେ ତ ପୁଣି ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ଶାସନ ସଚିବଙ୍କୁ ମାଡ଼ ଦେଇଥିବାର ନଜିର ଅଛି । ସ୍ୱର୍ଗତଃ ଭାଗେ ଗୋବର୍ଦ୍ଧନ ଆଇ.ଏ.ଏସ. ଅଫିସର ଥିଲାବେଳେ ତ ଭଲ ଖାଉଥିଲେ । ମଜବୁତ ଶରୀର ସେମିତି ଥିଲା ବୋଲି ସେ ଏତେ ମାଡ଼ ସିନା ସମ୍ଭାଳି ନେଲେ ।

ଅଫିସରଙ୍କର ମନ୍ତ୍ରୀଙ୍କୁ ଆହୁରି ଅଧିକ ଭୟ । ବିଶେଷ କରି ଯେଉଁ ଅଫିସରଙ୍କର ମୁଖ୍ୟମନ୍ତ୍ରୀ କିମ୍ବା ସେପରି କୌଣସି ଟାଣୁଆ ମନ୍ତ୍ରୀ କିମ୍ବା ତିନି ପାଞ୍ଚଜଣ ମୁଖିଆ ଏମ.ଏଲ.ଏ.ଙ୍କ ପର୍ଯ୍ୟନ୍ତ ପହୁଁଚ ନାହିଁ, ସେମାନେ ନିଜ ମନ୍ତ୍ରୀଙ୍କୁ କିଛିଟା ଖୁସ୍ ରଖି ନିଜ କାମ ହାସଲ କରିବାକୁ ଚାହାଁନ୍ତି । କିନ୍ତୁ ଅଫିସରମାନଙ୍କର ମଧ୍ୟ ବଦଳିକୁ ବେଶ ଭୟ । ବିଶେଷ କରି ଯେଉଁମାନେ ବେଶୀ ଉପରକୁ ଯାଇନାହାନ୍ତି । ବେଶୀ ଉପରକୁ ଯେଉଁମାନେ ଯାଇଛନ୍ତି, ସେମାନେ ମଧ୍ୟ ଭୟରୁ ମୁକ୍ତ ନୁହଁନ୍ତି । କେଉଁ ବିଭାଗର ସଚିବ ହେବେ ତାହା ଉପରେ ନିଜର ମର୍ଯ୍ୟାଦା ନିର୍ଭର କରେ । ସଚିବ ସ୍ତରୀୟ ଅଫିସର ମୁଖ୍ୟମନ୍ତ୍ରୀଙ୍କର ଭଲ ଚାହାଣୀରେ ରହିବାକୁ ଚାହାଁନ୍ତି । ନଚେତ୍ କେଉଁ କର୍ପୋରେସନକୁ ଯିବେ, ଯାହାର ଆଗ ପଛରେ କ୍ଷତି ହିଁ କ୍ଷତି । ସରକାର ଅର୍ଥାତ୍ ମୁଖ୍ୟମନ୍ତ୍ରୀ କିମ୍ବା ଟାଣୁଆ ମନ୍ତ୍ରୀ ଚାହିଁଲେ ଅଫିସ କୋଠରୀ, ଟେବଲ ଚଉକୀ ନଥାଇ ଅଫିସର ଅନ୍ ସ୍ପେଶାଲ ଡ୍ୟୁଟି କରି ସେକ୍ରେଟେରିଏଟ୍ କରିଡରରେ ବୁଲିବାକୁ ନିଯୁକ୍ତି ଦିଆଯାଇପାରେ । ଏ ଗଲା ଚାକିରିଆଙ୍କ ଭୟ ।

ମନ୍ତ୍ରୀ ଆଉ ରାଜନୀତିଜ୍ଞଙ୍କର ଭୟ ନିଜ ଦଳର ସୁବିଧା ଭୋଗ କରୁନଥିବା ସଭ୍ୟମାନଙ୍କୁ । ଶାସକ ଦଳ ପାଇଁ ଏ କଥାଟା ବେଶୀ ପ୍ରଯୁଜ୍ୟ । ମନ୍ତ୍ରୀ ନ ହୋଇପାରିଲେ ଅନ୍ତତଃ କେଉଁ କର୍ପୋରେସନର ଚେୟାରମ୍ୟାନ ତ ହେବା ଦରକାର । ନଚେତ୍ ଡିସିଡେଣ୍ଟ ହୋଇ ସରକାରକୁ ଟଳମଟଳ କରାଯିବ । ଯେତେଜଣ ମନ୍ତ୍ରୀ କରାଗଲେ ମଧ୍ୟ ତଥାପି କିଛି ନିଜକୁ ମନ୍ତ୍ରୀପଦ ଯୋଗ୍ୟ ଭାବୁଥିବା ଲୋକେ ବଳକା ରହିଯିବେ । ମୁଖ୍ୟମନ୍ତ୍ରୀ ନିଜ ମନ୍ତ୍ରିମଣ୍ଡଳକୁ ସୁରକ୍ଷିତ ରଖିବା ପାଇଁ ଏହି ପଦବିହୀନ ଖାଲି ଏମ.ଏଲ.ଏ.ଙ୍କୁ ଯେଉଁ ବାଟରେ ହେଲେ ସନ୍ତୁଷ୍ଟ ରଖିବାକୁ ହେବ । ବିପକ୍ଷ ଦଳମାନଙ୍କର ମଧ୍ୟ ସାଙ୍ଗଠନିକ କର୍ମକର୍ତ୍ତା ହେବାପାଇଁ

ମାନ ଅଭିମାନ ଓ ଡିସିଡେଣ୍ଟ ହେବାର ଯୋଜନା ।

ରାଜନୀତି କରୁଥିବା ବିଶେଷ କରି କ୍ଷମତାରେ ଥିବା ଲୋକଙ୍କର ଆହୁରି ଡର ଖବରକାଗଜବାଲାଙ୍କୁ । ସାମ୍ବାଦିକତାର ଧ୍ୱଜା ବାହି ଅନେକ ବୁଲୁଛନ୍ତି ଯେଉଁମାନଙ୍କର କୌଣସି 'କାଗଜ' ନାହିଁ ଲେଖିବାକୁ କିମ୍ବା ଯେଉଁ 'କାଗଜ' ଅଛି, ତାହାର ନିୟମିତତା ନାହିଁ । ତେଣୁ ବିଜ୍ଞାପନ ଆସିଲେ ଦୈନିକ ପତ୍ରିକା ମାସକୁ ଦି ତିନିଥର ଅଳ୍ପ କେତୋଟି କପି ବାହାରେ, ଯାହା ସେହି ବିଜ୍ଞାପନଦାତାମାନଙ୍କୁ କେବଳ ଦିଆଯାଏ । କିମ୍ବା ସେହି କାଗଜଗୁଡିକ ବାହାରେ ମନ୍ତ୍ରୀଙ୍କୁ ତୁଷ୍ଟ କରି କିମ୍ବା ଖୋସାମତିଆ ଲେଖା ଲେଖି କିମ୍ବା ଅସନାମସନା ଲେଖି ଦୁର୍ନୀତିଗ୍ରସ୍ତ ମନ୍ତ୍ରୀ କିମ୍ବା ଅଫିସରଙ୍କ ଠାରୁ ବିଜ୍ଞାପନ ଆଦାୟ କରିବା ପାଇଁ । ଯେଉଁମାନେ ଏମାନଙ୍କୁ ପୃଷ୍ଠପୋଷକତା ଦିଅନ୍ତି, ସେଇମାନେ ହିଁ ଏହି ପ୍ରକାର ସାମ୍ବାଦିକମାନଙ୍କୁ ପଛରେ ଗାଳି ଦିଅନ୍ତି କିମ୍ବା ଘୃଣା କରନ୍ତି । କିନ୍ତୁ ନିଜର ଏତେ ଗଳତି ଯେ ଭୟରେ ପିଠି ଆଉଁସିନ୍ତି । ଏହି ପ୍ରକାର ସାମ୍ବାଦିକ ଏବେ ବହୁ ସଂଖ୍ୟାରେ ମାଛି ମଶା ପରି ବଢିଗଲେଣି । ଏବେ ଯେଉଁମାନେ ସାମ୍ବାଦିକ ସମ୍ମିଳନୀ ଡାକୁଛନ୍ତି କିମ୍ବା ଡାକିବାକୁ ଇଚ୍ଛା କରୁଛନ୍ତି, ଏହି ପ୍ରକାର ସାମ୍ବାଦିକମାନଙ୍କୁ ମଧ୍ୟ ଡରୁଛନ୍ତି । କାରଣ ବିନା ଡାକରାରେ ଏମାନେ ଯାଇ ପହଞ୍ଚି ଯାଉଥିବାର ଦେଖାଯାଉଛି । ଯେଉଁ ସାମ୍ବାଦିକମାନେ ସେଠାକୁ ନିମନ୍ତ୍ରିତ ହୋଇ ଯାଇଛନ୍ତି, ସେମାନେ ଏପରି ଦୁଷ୍ଟସଙ୍ଗ ପରିତ୍ୟାଗ କରି ଯଥାସମ୍ଭବ ସମ୍ମାନର ସହିତ ସେଠାରୁ ଯଥାଶୀଘ୍ର ଫେରି ଯାଉଛନ୍ତି । ଏପରିକି ଅନେକ ସଂଗଠନର କର୍ତ୍ତାମାନେ ଗୋପନୀୟତାର ସହିତ ପ୍ରକୃତ ସାମ୍ବାଦିକମାନଙ୍କୁ ଭେଟୁଛନ୍ତି ।

ସାଧାରଣ ନାଗରିକ ଏବେ ସବୁଠାରୁ ବେଶୀ ଭୟ କରୁଛନ୍ତି ପୋଲିସ୍‌କୁ । କେହି ନାଗରିକ ଗୁଣ୍ଡାଙ୍କ ଦ୍ୱାରା ଅତ୍ୟାଚାରିତ ହୋଇ ଥାନାକୁ ଗଲେ ଅଧିକାଂଶ ଘଟଣାରେ ପୋଲିସ କୌଣସି ପଦକ୍ଷେପ ନେଉନାହାନ୍ତି । ଫେରାଦ ହେବାକୁ ଯାଉଥିବା ନିରୀହ ନାଗରିକ ଥାନାରେ ଆହୁରି ଅତ୍ୟାଚାରିତ ହେଉଛି । ସେଠାରୁ ସସମ୍ମାନେ ଫେରି ଆସିବାକୁ ହେଲେ ଅନେକ ସମୟରେ ଓଲଟା କିଛି ଅର୍ଥଶ୍ରାଦ୍ଧ କରିବାକୁ ପଡୁଛି । ତେଣୁ ଚାରିଆଡ଼େ ଏବେ ଭୟର କଳାବାଦଲ ।

ତା ୨୧।୧।୧୯୯୬

❑❑❑

# ବ୍ରାହ୍ମଣ

ହିନ୍ଦୁଧର୍ମୀମାନେ ଏବେ ଶେଷରେ ନାମମାତ୍ର ହିନ୍ଦୁରେ ପରିଣତ ହୋଇଗଲେଣି । ତେଣେ ହିନ୍ଦୁତ୍ୱ ଓ ହିନ୍ଦୁବାଦ ଉପରେ ସୁପ୍ରିମକୋର୍ଟ ମଧ୍ୟ ଏପରି ଏକ ରାୟ ଦେଇଛନ୍ତି ଯେ, ଯିଏ ଯାହା ଚାହିଁବ ସେପରି ବୁଝିବ । କିମ୍ବା ଯେଉଁ ପାଖକୁ ଚାହିଁବ ଟାଣିଓଟାରି ବ୍ୟାଖ୍ୟା କରିପାରିବ । ହିନ୍ଦୁଧର୍ମକୁ ଧରି ଯେଉଁମାନେ ରାଜନୀତି କରିବାକୁ ଚାହୁଁଛନ୍ତି, କ୍ଷମତା ଦଖଲ କରିବାକୁ ଚାହୁଁଛନ୍ତି ସେମାନେ ମଧ୍ୟ ସୁପ୍ରିମକୋର୍ଟ ରାୟର ନିଜ ପକ୍ଷର ଫାଇଦା ନେବାକୁ ତାକତ ପାଇଯାଉଛନ୍ତି ।

କେଉଁଠି ହିନ୍ଦୁତ୍ୱ ଗୋଟାଏ ଜୀବନ ପ୍ରଣାଳୀ ହେଲାଣି(Way of Life) ତ ଆଉ କେଉଁଠି ହିନ୍ଦୁବାଦଟା ସାଂପ୍ରଦାୟିକ ଭାବନାର ପ୍ରତୀକ ହେଲାଣି । ଯେଉଁମାନେ ସାଧାରଣ ଲୋକ ଏବଂ ହିନ୍ଦୁ ବୋଲି ନିଜକୁ ଭାବନ୍ତି, ତାଙ୍କୁ ଯଦି ପଚରାଯାଏ ସେ ନିଜକୁ କାହିଁକି ହିନ୍ଦୁ ବୋଲି ଭାବୁଛନ୍ତି, ସେମାନେ କିଛି ବୁଝି ପାରିବେନି କିମ୍ବା ବୁଝାଇ ପାରିବେନି । ସେମାନେ କହିବେ ଆମେ ହିନ୍ଦୁ ନୁହେଁ ତ ଆଉ କ'ଣ ? ହିନ୍ଦୁ ସେମାନେ କାହିଁକି ହେଲେ ଓ କିପରି ହେଲେ ବୋଲି ପଚାରିଲେ ସେମାନେ ଅଧିକାଂଶ ବିଶେଷ କିଛି କହି ନପାରି ବିରକ୍ତ ହେବେ କିମ୍ବା ବଲ ବଲ କରି ଚାହିଁବେ । ହିନ୍ଦୁତ୍ୱ ଆଉ ହିନ୍ଦୁବାଦ ମଧ୍ୟରେ ଫରକ କ'ଣ ବୋଲି ପଚାରିଲେ ସେମାନେ ସେସବୁ କିଛି ଜାଣି ନାହାଁନ୍ତି ବୋଲି ସରଳ ଭାବରେ ସ୍ୱୀକାର କରିଯିବେ । ଯିଏ ଏପରି ପଚାରିବେ ତା' ମୁଣ୍ଡର ସ୍କ୍ରୁଗୁଡ଼ା ଢିଲା ହୋଇଯାଇଛି ବୋଲି ହୁଏତ ସାଧାରଣ ଲୋକେ ଭାବିବେ । ଏସବୁ ସୂକ୍ଷ୍ମ ତତ୍ତ୍ୱ ଭିତରେ ପଶିବାର କ'ଣ ଆବଶ୍ୟକତା ଅଛି ?

ହିନ୍ଦୁ ତ ହିନ୍ଦୁ । ତା' ଭିତରେ ପୁଣି ଉଚ୍ଚନୀଚ ହିନ୍ଦୁ ଅଛନ୍ତି । ହିନ୍ଦୁଙ୍କ ଭିତରେ ସବୁଠୁ ଉଚ୍ଚା ହେଲେ ବ୍ରାହ୍ମଣ ହିନ୍ଦୁ । ବ୍ରାହ୍ମଣ ୧୧ ବର୍ଷରେ ବଡ଼ୁ ହୁଅନ୍ତି । କାହିଁକି ବଡ଼ୁ ହୁଅନ୍ତି ପଚାରିଲେ ଯିଏ ବଡ଼ୁ ହେଉଛି, ସେ ହୁଏତ ପିଲାଲୋକ, ସେ କଥା ବୁଝିନି, ତେଣୁ ସେ ହତବଡ଼େଇ ଯିବ । କିନ୍ତୁ ବଡ଼ୁ ହେଉଥିବା ପୁଅଟିର ବାପା କି ମା' ମଧ୍ୟ ଅଧିକାଂଶ କ୍ଷେତ୍ରରେ ସେ କଥା ଜାଣି ନାହାନ୍ତି । ତେଣୁ ବୁଝାଇବା ସମ୍ଭବ ନୁହେଁ । ବ୍ରାହ୍ମଣ ଘର ପୁଅଟି ସିନା ବଡ଼ୁ ହୁଏ । ଝିଅଟି କାହିଁକି ହୁଏ ନାହିଁ, ତା'ର କୈଫିୟତ କିଛି ନାହିଁ । ଝିଅଟି ବ୍ରାହ୍ମଣ ଅଥଚ ବଡ଼ୁ ହେବାର ଅଧିକାର ତା'ର ନାହିଁ । ଅବଶ୍ୟ ପୁରୁଷ ଓ ନାରୀ ମଧ୍ୟରେ ଚିରନ୍ତନ ଓ ସାର୍ବଜନୀନ ବୈଷମ୍ୟ ରହିଛି । ବ୍ରାହ୍ମଣ ଘରେ ମଧ୍ୟ ସେହି ବୈଷମ୍ୟ । ତଥାପି ସେ ଝିଅଟି ବ୍ରାହ୍ମଣ ଝିଅ । ତେଣୁ ବ୍ରାହ୍ମଣ ପୁଅଟିକୁ ହିଁ ବାହା ହେବ । ଆମେ ଯେହେତୁ ହିନ୍ଦୁ, ଆମର ପ୍ରତ୍ୟେକ 'ପୁଣ୍ୟ' କାମରେ କିମ୍ବା 'ପାପ' କାର୍ଯ୍ୟରେ ବ୍ରାହ୍ମଣ ଅବଶ୍ୟ ଦରକାର । ହିନ୍ଦୁଟିଏ ବ୍ରାହ୍ମଣ ହୋଇଥିଲେ ମଧ୍ୟ ଏହି ପ୍ରକାର

କାମରେ ଆଉ ଗୋଟିଏ ବ୍ରାହ୍ମଣ ଦରକାର । ବ୍ରାହ୍ମଣଟି ନିଜର 'ପୁଣ୍ୟ' କିମ୍ବା 'ପାପ' କାମରେ ନିଜେ ସେହି ବ୍ରାହ୍ମଣ କାମ କରି ପାରିବନି ।

ସେହି ଦୃଷ୍ଟିରୁ ବିଚାର କଲେ ସେ ଜଣେ ନିତାନ୍ତ 'ଅବ୍ରାହ୍ମଣ' । ବ୍ରାହ୍ମଣଟିଏ ଯଦି ବ୍ରାହ୍ମଣର କାମଟି କରି ନପାରେ, ସେ କିପରି ବ୍ରାହ୍ମଣ ରହିବ ବୁଝା ନପଡ଼ିଲେ ମଧ୍ୟ ସେ ବ୍ରାହ୍ମଣ ହୋଇ ରହିବ । କାରଣ ତା' ବାପ ତାକୁ ୧୧ ବର୍ଷରେ ବଡୁ କରାଇଛନ୍ତି । ବଡୁ କର୍ମଟି ଆଉ ଜଣେ ବ୍ରାହ୍ମଣ କରିଥିବେ । ୧୧ ବର୍ଷରେ ବଡୁ ହୋଇଥିବା ବ୍ରାହ୍ମଣର ୯ ଖିଏ ପଇତା । ଆଉ ଯେଉଁ କ୍ଷତ୍ରିୟମାନେ ବଡୁ ହୁଅନ୍ତି ତାଙ୍କର ୯ ବର୍ଷରେ ବଡୁ କର୍ମ ହୁଏ । ସେମାନେ ୬ ଖିଅର ପଇତା ପକାନ୍ତି । ୧୧ ବର୍ଷରେ ବଡୁ ହୋଇଥିବା ୯ ଖିଏ ପଇତା ପକାଇ ମଧ୍ୟ ବ୍ରାହ୍ମଣର କାମ କରନ୍ତି ନାହିଁ । କାରଣ ସେମାନେ 'କର୍ମକାଣ୍ଡ' ଜାଣନ୍ତି ନାହିଁ । ତେଣୁ କର୍ମକାଣ୍ଡ ନ ଜାଣି ମଧ୍ୟ ସେମାନେ ବ୍ରାହ୍ମଣ ହୋଇ ଚଳୁଥାନ୍ତି । ସେମାନେ ଇଂରାଜୀ ମାଧ୍ୟମରେ ବିଦ୍ୟାଭ୍ୟାସ କରନ୍ତି । ଓଡ଼ିଆ କିମ୍ବା ସଂସ୍କୃତ ପଢ଼ାଲେଖା କରି ପାରନ୍ତି ନାହିଁ । ତଥାପି ବ୍ରାହ୍ମଣ ହୋଇ ଥାଆନ୍ତି । ବ୍ରାହ୍ମଣ ଝିଅ ବାହା ହୁଅନ୍ତି ବେଦୀରେ ବସି । ଯଦିଓ ବେଦୀରେ ବସି କ'ଣ ସବୁ ହୁଏ ତାହା ସେମାନେ ଜାଣନ୍ତି ନାହିଁ । ଜଣେ ବ୍ରାହ୍ମଣ ନ ହୋଇ ମଧ୍ୟ ଯଦି କର୍ମକାଣ୍ଡ ଅଧୟନ କରେ ଏବଂ 'ପୁଣ୍ୟ' କି 'ପାପ' କାମରେ ଯାହା ବ୍ରାହ୍ମଣ କରିବାର କଥା ତାହା ଅଧିକ ଯୋଗ୍ୟତାର ସହିତ ସଂପନ୍ନ କରିପାରେ, ତଥାପି ସେ ବ୍ରାହ୍ମଣ ହୋଇ ପାରିବନି । କାରଣ ସେ ବ୍ରାହ୍ମଣ 'ନୁହେଁ' । ସେ ହିନ୍ଦୁ ହୋଇପାରେ । କିନ୍ତୁ ତଳସ୍ତରର ହିନ୍ଦୁ । ବ୍ରାହ୍ମଣ ଯେ 'ଉଚ୍ଚା' ହିନ୍ଦୁ ।

ଏ କଥାଟା ଉଠିଲା କାହିଁକି ? ଏବେ କେଇଦିନ ତଳେ ସରସ୍ୱତୀ ପୂଜା ଗଲା । ମୁଁ ଚାରି/ପାଞ୍ଚଟି ଶିକ୍ଷାନୁଷ୍ଠାନ ସହିତ ସଂପର୍କିତ । ଏହି ଅନୁଷ୍ଠାନ ଗୁଡ଼ିକରୁ ନିମନ୍ତ୍ରଣ (ପତ୍ର) ମିଳିଲା ସରସ୍ୱତୀ ପୂଜାରେ ଯୋଗଦେଇ ପୁଷ୍ପାଞ୍ଜଳି ଦେବାକୁ । ନିମନ୍ତ୍ରଣରେ ଯେଉଁ ସମୟ ନିର୍ଘଣ୍ଟ ଥିଲା କୌଣସିଟି ସ୍ଥାନରେ ସେହି ସମୟରେ ପୂଜା ଆରମ୍ଭ ହୋଇ ପାରିବ ନାହିଁ । କାରଣ କ'ଣ ଜାଣନ୍ତି ? 'ବ୍ରାହ୍ମଣ' ଠିକ୍ ସମୟରେ ଆସି ପାରିଲେ ନାହିଁ । କାରଣ କ'ଣ ? ବ୍ରାହ୍ମଣ ବଡ଼ ଅଭାବ । ସବୁ ଅନୁଷ୍ଠାନରେ 'ବ୍ରାହ୍ମଣ' ଛାତ୍ର, ଶିକ୍ଷକ, ଅଧ୍ୟାପକ ଅଛନ୍ତି । କିନ୍ତୁ ସେମାନେ ବ୍ରାହ୍ମଣ ନୁହଁନ୍ତି । କାରଣ ସେମାନେ ପୂଜାର କର୍ମକାଣ୍ଡ ଜାଣନ୍ତି ନାହିଁ । ଯଦିବା କିଏ ଜାଣିଥିବେ ସେମାନେ ପ୍ୟାଣ୍ଟ, ସାର୍ଟ, ଜୋତା, ମୋଜା ପିନ୍ଧିଛନ୍ତି । ପୂଜା କର୍ମକାଣ୍ଡ କରିବା ପାଇଁ ଧୋତି ପିନ୍ଧି କାନ୍ଧରେ ଗାମୁଛା ପକାଇବା ଦରକାର । ଭିତରେ ନିଶ୍ଚୟ ୯ ଖିଅର ପଇତା ଥିବ । ବାପ (ମା) ୧୧ ବର୍ଷରେ ବଡୁ କରାଇଥିବେ । କିନ୍ତୁ ପୂଜାକାଣ୍ଡ ପାଇଁ ବ୍ରାହ୍ମଣ କରାଇ ନାହାନ୍ତି । ଏହା ହିଁ ବ୍ରାହ୍ମଣତ୍ୱର ବିଡ଼ମ୍ବନା । ଆଉ ଯେଉଁ ବ୍ରାହ୍ମଣ କର୍ମକାଣ୍ଡ ଜାଣନ୍ତି ତାଙ୍କୁ ସରସ୍ୱତୀ ପୂଜା (କିମ୍ବା ଗଣେଶ ପୂଜା, ବିଶ୍ୱକର୍ମା ପୂଜା, ଦୁର୍ଗା କି କାର୍ତ୍ତିକ କି ଲକ୍ଷ୍ମୀପୂଜା) ଦିନ ହିଁ ଖୋଜା ପଡ଼େ । ମଇଳା ମକଚିଆ ଅସ୍ୱାସ୍ଥ୍ୟକର ଧୋତି ଗାମୁଛା ପିନ୍ଧି ମଧ୍ୟ ସେ ହିଁ ଅସଲ ବ୍ରାହ୍ମଣ । ଏମିତିଆ ବ୍ରାହ୍ମଣଙ୍କ ସଂଖ୍ୟା ପୁଣି ଏତେ କମିଗଲାଣି ଯେ ଏହି ପୂଜା କର୍ମଦିନ ସେମାନଙ୍କର ଚାହିଦା ଥିବାରୁ ବହୁତ ଜାଗାରେ ତାଙ୍କର ବଇନା ଧରାହୋଇଥାଏ । ସେମାନେ ଗୋଟିଏ ଗୋଟିଏ ଜାଗାରେ ପୂଜା ସାରି ଅନ୍ୟ ଜାଗାଗୁଡ଼ିକୁ ପହଞ୍ଚିବାରେ

ସ୍ୱାଭାବିକ ବିଳମ୍ବ ଘଟେ । କିନ୍ତୁ ସେ ନଆସିଲେ ତ 'ଅବ୍ରାହ୍ମଣ'ଙ୍କ ଦ୍ୱାରା ପୂଜା ସମ୍ଭବ ନୁହେଁ । ତେଣୁ ସବୁଠାରେ ପୂଜା ବିଳମ୍ବିତ । ସେ ପହଞ୍ଚିଲା ପରେ ପୂଜାର ଆୟୋଜନ କରିବେ । ତାହାପରେ ସରସ୍ୱତୀଙ୍କ (ବା ଅନ୍ୟ ଯେକୌଣସି ଠାକୁର, ଠାକୁରାଣୀ) ମୂର୍ତ୍ତି ମୁହଁରେ ଗୁଡ଼ା ହୋଇଥିବା କାଗଜ କିମ୍ବା କନା ଖୋଲିବେ । ସେ ପର୍ଯ୍ୟନ୍ତ ସରସ୍ୱତୀ ସେ ମୂର୍ତ୍ତିରେ ବିଜେ ହୋଇ ନାହାଁନ୍ତି । ସେ କ'ଣ ମନ୍ତ୍ର ପଢ଼ନ୍ତି କେହି ବୁଝନ୍ତି ନାହିଁ । କାରଣ ବାକି ସମସ୍ତେ ଅଜ୍ଞ । ସେ ହିଁ କେବଳ ବିଜ୍ଞ । ଅନେକ ସମୟରେ ବ୍ରାହ୍ମଣ ବହିଟିଏ ଆଣି ସେଥିରୁ ପୃଷ୍ଠା ଖୋଜି ପଢ଼ନ୍ତି । ଏବେ ସେ ସବୁ ବହି ସଂସ୍କୃତରେ ନାହିଁ । ଓଡ଼ିଆରେ ସେ ବହି ଛପା ହେଲାଣି । କିନ୍ତୁ ଆମେ ସୂଚୀପତ୍ର ଖୋଜି ପୃଷ୍ଠା ଲେଉଟାଇ ସେ ପାଠ ପଢ଼ି ପୂଜା ବାଢ଼ିବାକୁ ଯୋଗ୍ୟ ନୋହୁଁ । କାରଣ ଆମେ ସେହିପରି ବ୍ରାହ୍ମଣ ନୋହୁଁ ।

ବିବାହ, ବ୍ରତ (ବଡୁ), ଭୂମିପୂଜା, ଶିଳାନ୍ୟାସ, ଗୃହ ପ୍ରତିଷ୍ଠା, ଠାକୁର ପୂଜା, ବିବାହ ପୂର୍ବରୁ ନିର୍ବନ୍ଧ ଆଦି ଯାବତୀୟ ପୁଣ୍ୟ (କିମ୍ବା ଶୁଭକାମ)ରେ ବ୍ରାହ୍ମଣର (ଏହିପରି ବ୍ରାହ୍ମଣ) ଆବଶ୍ୟକତା । ସେହିପରି ମୃତ୍ୟୁ ପରେ ଶବଦାହ ପୂର୍ବରୁ, ଶବଦାହ ପରେ, ଅଶୌଚ କାମରେ, ଦଶାହରେ ଦୁଠ କ୍ରିୟା, ଏକାଦଶ, ଦ୍ୱାଦଶ ଇତ୍ୟାଦି କାମରେ ପୁଣି ବ୍ରାହ୍ମଣ ଦରକାର । ଆପଣ ପାପ କାମ କିଛି କରିଥିଲେ ସ୍ୱର୍ଣ୍ଣଦାନ କିମ୍ବା ଅସ୍ଥି ଯଦି ଗୟା କି ପ୍ରୟାଗରେ ପକାଇବାର ଖର୍ଚ୍ଚ କରିବାର ଶକ୍ତି ଆପଣଙ୍କର ନାହିଁ ତେବେ ସ୍ୱର୍ଣ୍ଣଦାନ (ବା ତା ବଦଳରେ ଅର୍ଥଦାନ) ଦେଲେ ବ୍ରାହ୍ମଣ ଅସ୍ଥି ମଧ୍ୟ ଗିଳିବାର ପ୍ରଥା ରହିଛି । ବ୍ରାହ୍ମଣ ପେଟକୁ ପ୍ରେତର ଛୋଟ ହାଡ ଖଣ୍ଡିକ ଗଲେ ତାହା ଗୟା-ପ୍ରୟାଗରେ ଗଙ୍ଗାରେ ପଡ଼ିବା ସହିତ ସମାନ । କେବଳ ଦୁଠରେ ଶୁଦ୍ଧିକାମ ଏବଂ ଅସ୍ଥିଭକ୍ଷଣ କରୁଥିବା ବ୍ରାହ୍ମଣମାନେ ତଳସ୍ତରର ବ୍ରାହ୍ମଣ । କାରଣ ତାହା ଏକରକମ ପାପ କାମ ।

ହିନ୍ଦୁ ଧର୍ମରେ ହରିଜନ ଓରଫ ଦଳିତମାନେ ମଧ୍ୟ ଅନ୍ତର୍ଭୁକ୍ତ । ସେମାନଙ୍କର ବିବାହ ଓ ଶୁଦ୍ଧି କ୍ରିୟାରେ ବ୍ରାହ୍ମଣମାନେ ଅଂଶଗ୍ରହଣ କରନ୍ତି ନାହିଁ । ସେହିପରି ଆଦିବାସୀମାନଙ୍କ ସାମାଜିକ ବ୍ରାହ୍ମଣଯୋଗ୍ୟ କର୍ମରେ ବ୍ରାହ୍ମଣମାନେ ଯୋଗ ଦିଅନ୍ତି ନାହିଁ । ତଳ ଜାତିର ଲୋକଙ୍କ କାମରେ ବ୍ରାହ୍ମଣମାନେ ବାଛି କରି ଯୋଗ ଦିଅନ୍ତି । ଏହି ବ୍ରାହ୍ମଣମାନେ ପୁରୋହିତ ଭାବରେ ଯେଉଁ କାମ କରନ୍ତି ସେହି କାମ ପାଇଁ ହିନ୍ଦୁମାନଙ୍କ ମୌଳିକ ଶାସ୍ତ୍ରାନୁମୋଦିତ ବିଦ୍ୟାରେ ଏହି ପୁରୋହିତମାନଙ୍କର ଯୋଗ୍ୟତା କିମ୍ବା ନିଷ୍ଠା ନାହିଁ । ତଥାପି ଏହି ସମାଜରେ ଯେଉଁମାନେ ବିନା କାରଣରେ କିମ୍ବା ବିନା ଯୁକ୍ତିରେ ନିଜକୁ ହିନ୍ଦୁ ବୋଲି ମଣନ୍ତି ସେମାନେ ଏହି ଭଣ୍ଡ ବ୍ରାହ୍ମଣବାଦର ଅସହାୟ ଅଥଚ ସମ୍ମତ ଶିକାର ହୋଇ ରହିଛନ୍ତି ।

୦।୨୮।୧।୧୯୯୬



# ରୁକାୱଟ୍

ଅନେକ ସମୟରେ ଆମ ଦୂରଦର୍ଶନ କାର୍ଯ୍ୟକ୍ରମ ଚାଲୁଥିବା ବେଳେ ହଠାତ୍ ଟେଲିଭିଜନ ସ୍କ୍ରିନ୍ ଉପରେ ଠପ୍ କରି 'ରୁକାୱଟ୍ କେ ଲିୟେ ଖେଦ ହୈ' ଦେଖିବାକୁ ପାଇବେ । ଦର୍ଶକମାନେ ଏତେ ଆଗ୍ରହର ସହିତ ଧାରାବାହିକର ଗୋଟାଏ ଗୋଟାଏ ମନୋମୁଗ୍ଧକାରୀ ଦୃଶ୍ୟ ମଝିରେ ବିରକ୍ତିଭରା ମନରେ ଉତ୍ସୁକତାର ସହିତ ଅନାଇଥିବେ ପୁଣି କେତେବେଳେ ସେହି ରୋମାଞ୍ଚକର ନୃତ୍ୟଗୀତ କିମ୍ବା ସେହିପରି କୌଣସି ପ୍ରେମଭରା ଦୃଶ୍ୟ ଫେରିଆସିବ ପରଦାକୁ । ଆଉ ତ ଅନେକ ସମୟରେ ଆମ ସ୍ଥାନୀୟ ରିଲେ କରୁଥିବା କେନ୍ଦ୍ରରୁ କିମ୍ବା ଟ୍ରାନ୍ସମିଶନ ଟାୱାରରୁ ବିଜୁଳି କଟିଯାଇଥିବା ଯୋଗୁ ଆମ ଦର୍ଶକମାନେ (ଶ୍ରୋତା ମଧ୍ୟ) କାର୍ଯ୍ୟକ୍ରମର ମଜେଦାର ଦୃଶ୍ୟରୁ ବଂଚିତ ହୁଅନ୍ତି । ଏହା ଓଡ଼ିଶାର ନିତିଦିନିଆ ଘଟଣା । ଅନେକ ସମୟରେ ୧୫ ମିନିଟ୍‌ରୁ ଅଧଘଣ୍ଟା ଘଣ୍ଟାଏରୁ ଅଧିକ ଲାଇନ କଟିଯାଇ ଧାରାବାହିକଟି ସରିଯାଏ କିମ୍ବା ସିନେମା ଚିତ୍ରର ଏପରି ଅଂଶ କଟିଯାଏ ଯେ, କାହାଣୀଟିର ହଜି ଯାଉଥିବା ଅଂଶ ଯୋଗୁ ଆଉ କଥାଟା ଯୋଡି ହୁଏନାହିଁ । ''ରୁକାୱଟ୍ କେ ଲିୟେ ଖେଦ ହୈ' ପାଇଁ ଦର୍ଶକଙ୍କ ମନରେ ଯେଉଁ ଖେଦ ହୁଏ ତାହାର ତ କ୍ଷତିପୂରଣ ମିଳେନା ।

'ରୁକାୱଟ୍ କେ ଲିୟେ ଖେଦ ହୈ'ର ଅର୍ଥ ହେଲା ବାଧା ପାଇଁ ଦୁଃଖିତ । କିନ୍ତୁ ଏହା ମଧ୍ୟ ଏକ ପ୍ରତୀକ ଧର୍ମୀ ଅଙ୍ଗୀକାର ଦୂରଦର୍ଶନର ଭଦ୍ରତା ରକ୍ଷା କରୁଥିବା ପରିଚାଳକମାନଙ୍କର । ପ୍ରକୃତରେ ଭାରତବର୍ଷର ପ୍ରତି ପଦେ ପଦେ ଛନ୍ଦେ ଛନ୍ଦେ ରୁକାୱଟ୍ ଅର୍ଥାତ୍ ବାଧାର ଅସୁମାରୀ ଲାଇନ ଲାଗିଛି । ଅନେକ ସମୟରେ ଭାବିଲେ ଦେଖିହେବ ଏଠାରେ ସବୁ କାମ ବାଧା ଭିତରେ ହିଁ ଚାଲେ । ବାଧା ନପାଇ କେଉଁ କାମଟି ଏଠି ସହଜ ସଳଖ ସରଳ ଭାବରେ ହୁଏ ତାହାର ଦୃଷ୍ଟାନ୍ତ ଖୋଜିବାକୁ ବହୁତ ସମୟ ଲାଗିବ । ବହୁତ ଭାବିବାକୁ ପଡ଼ିବ, ଏପରି କୌଣସି କଥା ବା କାମ ଅଛି କି ଯାହା ଏ ଦେଶରେ ଭାବିଲାମାତ୍ରେ କିମ୍ବା କରିବାକୁ ଆରମ୍ଭ କଲାମାତ୍ରେ ଧଡ଼ ଧଡ଼ କରି ବିନା ବାଧାରେ ସହଜରେ ହୋଇଯାଏ । ବୋଧହୁଏ କେବଳ ଜଣେ ନାରୀ ଅଥବା ନାରୀମାନେ ଖୁବ୍ ସହଜରେ ଗର୍ଭରେ ସନ୍ତାନ ଧାରଣ କରିପାରିବେ । କିନ୍ତୁ ବନ୍ଧ୍ୟା ନାରୀ କିମ୍ବା ବନ୍ଧ୍ୟା ପୁରୁଷ ହୋଇଥିଲେ ଅବଶ୍ୟ ସେଥିରେ ବାଧା ଆସେ । କାରଣ ଗୋଟିଏ ହାତରେ ତାଳି ବାଜେନା । କିନ୍ତୁ ନବେକୋଟିରୁ ଉର୍ଦ୍ଧ୍ୱ ଜନସଂଖ୍ୟାର ଦେଶରେ ଏପରି ଲୋକଙ୍କ ସଂଖ୍ୟା କେତେ ? ପରିସଂଖ୍ୟାନ ଦିଆଗଲେ ଶୂନ ଦଶମିକ ଶୂନ ଶୂନ ଶୂନ- କେଜାଣି କେତେ ଶୂନ ପରେ ଏକଟିଏ ବସିବା । କିନ୍ତୁ ଗର୍ଭଧାରଣ ଯେତେ ବିନାବାଧାରେ ହୁଏ, ଜନ୍ମଟି ଏବଂ ଜନ୍ମ ପରେ ବଂଚିବା ପାଇଁ କେତେ ବାଧା ତାହାର

ହିସାବ ରଖି ହେବନି । ଜନ୍ମ ପରେ ଏବଂ ମରିବା ପର୍ଯ୍ୟନ୍ତ ନୁହେଁ ମରିବା ପରେ ମଧ୍ୟ ବାଧାର ଅର୍ଥାତ୍ ଗୁକାଓ୍ବଟ୍‌ର ଯେଉଁ ଲମ୍ବାଧାଡି ଭିତର ଦେଇ ଜୀବନର ପ୍ରତି ମୂହୁର୍ତ୍ତ କାଟିବାକୁ ହୁଏ ତାହା ଅସରନ୍ତି ।

ସବୁ କଥାର ବର୍ଣ୍ଣନା କଲେ ତାହା ଏନସାଇକ୍ଲୋପେଡିଆ ବ୍ରିଟାନିକାଠାରୁ ବଡ଼ ବହି ହେବ । ଅଳ୍ପ କେତେଟାର ଅବତାରଣା କରି ବାକିସବୁ ଭାବି ଦେଖିବାକୁ ପାଠକଙ୍କ କଳ୍ପନା ରାଜ୍ୟକୁ ଛାଡ଼ି ଦିଆଯାଇପାରେ । ବାପା ମା'ଙ୍କ ପୁଅ ବା ଝିଅ ଜଣେ ହେଲାପରେ ଯଦି ଅନ୍ୟ ସହୋଦର ଭାଇ କିମ୍ବା ଭଉଣୀ ଥାଆନ୍ତି ତେବେ ପରିବାର ଭିତରେ ମଧ୍ୟ ସମାନ ସୁବିଧା, ସୁଯୋଗ ଏବଂ ସମାନ ସ୍ନେହ ପାଇବାରେ ବାଧା ଜନ୍ମିବା ଅସ୍ୱାଭାବିକ ବ୍ୟାପାର ନୁହେଁ । ଝିଅଟିଏ ପୁଅଟି ଠାରୁ ଊଣାରେ ରହିବ, ଏ କଥା ଯେଉଁ ପରିବାରରେ ଘଟେ ନାହିଁ ଜାଣିବ ତାହା ଏକ ଅତି ନିଆରା ପରିବେଶ । ସବୁ ଝିଅ ସେହିପ୍ରକାର ଘରେ ଜନ୍ମିବାକୁ ମା' ପେଟରୁ ତପସ୍ୟା କରିବେ । ଉପାସ, ବ୍ରତପାଳନ ଓ ମାନସିକ ପାଳନ କରିବେ । ଏକାଦଶୀ, ସଂକ୍ରାନ୍ତି କରିବେ । ଯେଉଁ ସନ୍ତାନଟି ଦେଖିବାକୁ ସୁନ୍ଦର ଅନ୍ତତଃ ନାକ ନକ୍‌ସା ଭଲ ନହୋଇ ମଧ୍ୟ ଯଦି କେବଳ ଚମଡ଼ାଟା ଗୋରା ହୋଇଥାଏ, ସେହି ଅନୁପାତରେ ବାପା ମା'ଙ୍କର ଗେହ୍ଲା ହେବେ । ବାହାରକୁ ପ୍ରକାଶ ନକଲେ ମଧ୍ୟ ମନଭିତରେ ସେ କଥାଟା ରହିଯାଏ । ପୁଣି ଯେଉଁ ପିଲା ଭଲ ପାଠ ପଢେ, ତା' ଉପରେ ବାପା ମା' ଅଧିକ ହର୍ଷ ହୁଅନ୍ତି । ଗୋଟିଏ ହଳ ବାପା ମା'ଙ୍କ ଠାରୁ ଜନ୍ମିତ ପିଲାମାନେ ସମାନ ସୁଯୋଗ ଓ ସ୍ନେହ ପାଆନ୍ତି ନାହିଁ । ରୂପ ଗୁଣ ଅନୁପାତରେ ଓଜନ ବଢେ କିମ୍ବା କମେ । ଏହି ବାଧାଟି ସମଗ୍ର ଜୀବନକାଳ ପାଇଁ ସ୍ଥାୟୀ ହୋଇ ରହିଥାଏ ।

ଶିଶୁଟିର ପାଠପଢିବା ବୟସ ହେଲେ 'ଭଲ' ସ୍କୁଲରେ ଭର୍ତ୍ତି କରିବାରେ ମଧ୍ୟ ଅନେକ ଗୁକାଓ୍ବଟ୍ । ସହରଗୁଡିକରେ ଶିକ୍ଷାର ସୁଯୋଗ ପାଇବାରେ ବାଧା ଅନେକ । ସହରଟି ଯଦି ବୃହତ୍ ହୁଏ ବିଶେଷ କରି ମହାନଗରୀମାନଙ୍କରେ ଶିଶୁର ଶିକ୍ଷାୟତନ ଖୋଜି ପାଇବାରେ ବାପାମା'ଙ୍କର ମାନସିକ ଚାପ ରକ୍ତଚାପରେ ପରିଣତ ହୁଏ । ପ୍ରାଥମିକ ସ୍କୁଲ ଯଦି ସରକାରୀ ହୋଇଥାଏ ତେବେ ମଧ୍ୟ ସହରମାନଙ୍କରେ ସ୍ଥାନ ପାଇବାରେ ବାଧା ବହୁତ ଯଦିବା ଭର୍ତ୍ତି ହୋଇଗଲା ପିଲାଟା ପାଠପଢିବା ସହଜର କଥା ମଧ୍ୟ ନୁହେଁ । ପ୍ରଥମ କଥା, ଭଲ ମାଷ୍ଟ ସେଠି ମିଳିବେ କେମିତି ? ଯେଉଁ କୋଠରୀରେ ୨୫ଟି ପିଲା ବସିପାରିବେ ଚଟାଣରେ ସେଠାରେ ଯଦି ୧୦୦ଟି ପିଲାଙ୍କୁ ଭର୍ତ୍ତି କରିଦିଆଯାଏ ତେବେ ଆବଶ୍ୟକ ସ୍ଥାନ ମଧ୍ୟ ମିଳିବ କେମିତି ? ସେଠାରେ ମଧ୍ୟ ଗୁକାଓ୍ବଟ୍‌ର ମାତ୍ରା ଅଧିକ ଯାହାର କୌଣସି ନିରାକରଣ ନାହିଁ । ପୁଣି ଯଦି ସ୍କୁଲ ଖାତାରେ ନାମ ଭର୍ତ୍ତି ହୋଇଗଲା ବହି ତ ମିଳିବା ଦରକାର । ଏହିସବୁ ବହିକୁ ''ପାଠ୍ୟ ପୁସ୍ତକ'' ଆଖ୍ୟା ଦିଆଯାଇଛି । ଓଡ଼ିଶାର ନାମଯାଦା ଲେଖକ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ଭାଷାରେ ଏହିସବୁ ବହି କେବଳ ପାଠ୍ୟ ପୁସ୍ତକ ଅନ୍ୟ ସମସ୍ତ ବହି ଅପାଠ୍ୟ । କିନ୍ତୁ ପାଠ୍ୟପୁସ୍ତକ ସବୁ ଯଥେଷ୍ଟ ସଂଖ୍ୟାରେ ବର୍ଷ ସରିବା ପୂର୍ବରୁ ମିଳିବାରେ ପ୍ରଚୁର ଗୁକାଓ୍ବଟ୍ । ଏହି ପାଠ୍ୟପୁସ୍ତକଗୁଡ଼ିକ ଛାପିବା ଦାୟିତ୍ୱ ସରକାର ନେଇଛନ୍ତି । କାରଣ ଘରୋଇ ପାଠ୍ୟପୁସ୍ତକ ବ୍ୟବସାୟୀମାନେ ପ୍ରଚୁର ଲାଭ ରଖି ପାଠ୍ୟପୁସ୍ତକର ଦରବୃଦ୍ଧି କଲେ । ସରକାର ସେଥିପାଇଁ ପାଠ୍ୟପୁସ୍ତକ ଉପରୁ ତଳ ଯାଏ ସ୍କୁଲ ସ୍ତରର

ପାଠ୍ୟପୁସ୍ତକ ପ୍ରଣୟନ, ମୁଦ୍ରଣ ଓ ବଣ୍ଟନ ବ୍ୟବସ୍ଥାକୁ ଜାତୀୟକରଣ କଲେ ବୋଲି ଘୋଷଣା କରି ନିଜ ଉପରକୁ ଦାୟିତ୍ୱ ନେଇଗଲେ । ଯାହା ହେବା କଥା ତାହାହିଁ ଘଟିଲା । ପାଠ୍ୟପୁସ୍ତକ ଆବଶ୍ୟକୀୟ ସଂଖ୍ୟାରେ ଠିକ୍ ସମୟରେ ପ୍ରକାଶ ପାଇଲା ନାହିଁ । କାରଣ ସରକାର ଯେଉଁ ଦାୟିତ୍ୱ ନିଜ ପାଖରେ ରଖନ୍ତି ସେଥିରେ ବହୁତ ରୁକାଓ୍ୱଟ୍ । ପାଠ୍ୟପୁସ୍ତକ ପାଇଁ ଯେଉଁ କାଗଜ କିଣାଯାଏ ତାହା ଯଥା ସମୟରେ ସଂଗ୍ରହ କରିବାରେ ବାଧା ଢେର୍ । ଯେଉଁ କାଗଜକଳ ତାହା ଯୋଗାଇବ ତାଙ୍କ ସହିତ ଯୋଗାଯୋଗ କରି କମିଶନ ଛିଡ଼ାଇବାରେ ବାଧା ବହୁତ । କାରଣ ଗୋଟାଏ କାଗଜକଳ ଯଦି ଅଧିକ କମିଶନ ଦିଏ ତା'ଠାରୁ ଯେତେ ଅଧିକ କାଗଜ କିଣାଯାଇପାରିବ ତାହା ହିଁ ନିଷ୍ପତ୍ତି ହୁଏ । କିଏ ସର୍ବନିମ୍ନ ଦରରେ କାଗଜ ଯୋଗାଇବ ଅଥଚ ଅଧିକ କମିଶନ ଦେବ ତାହାର ନିଷ୍ପତ୍ତିରେ ମଧ୍ୟ ଅନେକ ବାଧା ଓ ବିଳମ୍ବ । ଶେଷରେ ସରକାରଙ୍କ ନିଜ ଛାପାଖାନାରେ କେତେ ରୁକାଓ୍ୱଟ । ସରକାରୀ ଛାପାଖାନାର ଶ୍ରମିକମାନେ ନିୟମ ଅନୁସାରେ କାମ (Work to Rule) କରନ୍ତି । ୟୁନିଅନ ଅଛି । ଓଭରଟାଇମ ପାଇବା ପାଇଁ କାମର ପରିମାଣ ନିଜ ଇଚ୍ଛାନୁସାରେ କରନ୍ତି ।

ପାଠପଢ଼ି ସାରି କାମ ଖୋଜିବା ପାଇଁ ଏବେ ଛାତ୍ରମାନେ ଆଉ ଏତେ ପରିଶ୍ରମ କରିବାକୁ ନାରାଜ । ସେମାନଙ୍କ ପାଇଁ ବାପା ମା' ଦୌଡନ୍ତି ରାଜନୀତିଆ ଲୋକଙ୍କ ପାଖକୁ । ଯାହାର ସିଧାଯୋଗାଯୋଗ ନାହିଁ, ରାଜନୀତିଆଙ୍କର ବଡ଼ୀପେଲାଙ୍କୁ ଧରିବାକୁ ହୁଏ । ଆଜିକାଲି ଧରାଧରି କରିବାର ଅନ୍ୟ ଅର୍ଥ ପଇସା ଖର୍ଚ୍ଚ କର । ନଇଲେ ତମ ଜାତିର କେହି ଅଫିସର ଅଛନ୍ତି ଯଦି ତାଙ୍କୁ କୁହାବୋଲା କର । କୁହାବୋଲାରେ ଯେ ଖର୍ଚ୍ଚ ନାହିଁ ତାହା ମଧ୍ୟ ନୁହେଁ । ଚାକିରିଟିଏ ପାଇବାରେ ଯେତେ ବାଧା ସେମିତିଆ ବାଧା ଆଉ କୋଉଥିରେ ନାହିଁ । ପଇସା ନେଲେ ଯେ ଚାକିରି ବିନା ରୁକାଓ୍ୱଟ୍‌ରେ ହୋଇଯିବ ତାହା ମଧ୍ୟ ନୁହେଁ । ଦରବୃଦ୍ଧି ଯେତେ ଘଟୁଛି ସେଥିରେ ଯେଉଁ ଚାକିରିଟି ୧୦ ହଜାରରେ ହୋଇଯାଇଥିଲା ଏବେ ଲକ୍ଷେ ଦେଲେ ବି ହେଉନାହିଁ । ତା'ଛଡ଼ା ଏତେ ଟଙ୍କା କେତେ ଲୋକଙ୍କ ପାଖରେ ଅଛି ? ପୁଣି ଚାକିରି ସଂଖ୍ୟା କମ୍ । ତାହା ଭିତରେ ସଂରକ୍ଷଣ ପୁଣି ଅଛି । ତେଣୁ ଯେତେ ଟଙ୍କା ଦେଲେ ବି ଚାକିରି ସେହି ସଂଖ୍ୟାରେ ଥିଲେ ତ ! ସବୁଠାରୁ ସହଜ କଥା ହେଲା ଛାତ୍ରାବସ୍ଥାରୁ କୌଣସି ଗୋଟାଏ ରାଜନୈତିକ ଦଳର ଛାତ୍ର ସଂଗଠନରେ ପଶିଯାଅ । ଆମ ଓଡ଼ିଶାରେ ଛାତ୍ରକଂଗ୍ରେସ ନଚେତ ଛାତ୍ରଜନତା । ତା ପଛକୁ ବିଜେପିର ଛାତ୍ର ସଂଗଠନ ଅଖିଳ ଭାରତ ବିଦ୍ୟାର୍ଥୀ ପରିଷଦ । କାରଣ ସେ ଦଳ ଏବେ କ୍ଷମତା ଦରଜାରେ ହାତ ମାରିବାକୁ ଲାଗିଲାଣି । କିଏ ଜାଣେ । ଛାତ୍ର ସଂଗଠନରେ ଯେଉଁମାନେ ମାତବରି ନେତା ଥିବେ ତାଙ୍କ ପାଖାପାଖି ରହିବାକୁ ଚେଷ୍ଟା କରିବାକୁ ହେବ । ସେଠାରେ ମଧ୍ୟ ବହୁତ ପ୍ରତିଦ୍ୱନ୍ଦ୍ୱିତା । ପୁଣି ରାଜନୀତିରେ ଯୁବନେତା ହେବାକୁ ଚେଷ୍ଟା କଲେ ଭଲ । ଅନେକ ଛାତ୍ର ଏବେ ମୂଳରୁ ନିଜକୁ ଛାତ୍ରନେତା କିମ୍ବା ଯୁବନେତା ଉପାଧି ସହିତ ପରିଚୟ ଦେଉଛନ୍ତି । ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜରେ ନାମ ଦରଜ କରି ବିଶେଷ ଲାଭ ନାହିଁ । କାରଣ ସେଠାରେ ବହୁତ ବାଧକ । ସେଠାରୁ ନାମଟି ସଂପୃକ୍ତ ନିଯୁକ୍ତିଦାତାଙ୍କ ପାଖରେ ଇଣ୍ଟରଭ୍ୟୁ ପାଇଁ ପଠାଇବାକୁ ହେଲେ ପୂର୍ବକାଳରେ ତିରିଶଟି ଟଙ୍କା ଦେବାକୁ ପଡୁଥିଲା । ଅବଶ୍ୟ

ସେତେବେଳେ ଡଲାର ମୂଲ୍ୟ ୮ ଟଙ୍କା ଥିଲା । ଏବେ ତ ବ୍ୟାଙ୍କ ହାରରେ ଡଲାର ମୂଲ୍ୟ ୩୭ ଟଙ୍କାରେ ପହଞ୍ଚିଲାଣି । ବ୍ଲାକ୍ ମାର୍କେଟରେ ଡଲାର ମୂଲ୍ୟ ଏବେ ୪୫ରୁ ୫୦ ଟଙ୍କା । ସେତେବେଳେ ଟଙ୍କାକୁ ଏକ କିଲୋ ଚାଉଳ ମିଳୁଥିଲା । ଏବେ ଗୋଡିମିଶା ଚାଉଳ କିଲୋ (ମୋଟା ଉଷୁନା ଚାଉଳ) ଆଠରୁ ନ' ଟଙ୍କା । ତେଣୁ ନାମଟି ପ୍ରେରଣ ପାଇଁ ତିନିଶହ ଟଙ୍କା ପଡୁଛି । ପୁଣି ଇଣ୍ଟରଭ୍ୟୁରେ ଠିଆ ହେଲେ କ'ଣ ଚାକିରି ମିଳୁଛି ? ଚାକିରି ପାଇବାବାଲା ଗୋପରେ ବଢୁଛି । ଇଣ୍ଟରଭ୍ୟୁଟା ଗୋଟାଏ ନାଟକ । ତେଣୁ ମଣିଷ ପାଇଁ ଭାରତବର୍ଷରେ କେତେ ଲୁକାଓ୍ୱାଟ୍ । କିନ୍ତୁ ମୁଖ୍ୟମନ୍ତ୍ରୀ ଜାନକୀବାବୁ ଯେତେବେଳେ କହିଥିଲେ ଯେ, ଓଡ଼ିଶାରେ ୪୦ ହଜାର କୋଟି ଟଙ୍କାର ପୁଞ୍ଜି ବିନିଯୋଗ ହେବ, ସେତେବେଳେ ୨୦ ଲକ୍ଷ ଯୁବକ ଯୁବତୀଙ୍କୁ ନିଯୁକ୍ତି ମିଳିବ ବୋଲି କହିଥିଲେ । ଏବେ ଜାନକୀବାବୁ ୧ ଲକ୍ଷ କୋଟି ଟଙ୍କା ବିନିଯୋଗ ହେବ ବୋଲି ଦୃପ୍ତକଣ୍ଠରେ ଘୋଷଣା କଲେଣି । ଅଙ୍କରେ ହିସାବ କଲେ ୨୦ ଲକ୍ଷର ଅଢେଇ ଗୁଣ ଯୁବକ ଯୁବତୀଙ୍କୁ ନିଯୁକ୍ତି ମିଳିବ । ସେହି ହିସାବରେ ୫୦ ଲକ୍ଷ ଯୁବକ ଯୁବତୀଙ୍କୁ ନିଯୁକ୍ତି ମିଳିବାରେ କୌଣସି ଲୁକାଓ୍ୱଟ୍ ନାହିଁ । ତେଣୁ 'ଲୁକାଓ୍ୱଟ୍ କେ ଲିୟେ ଖେଦ କ୍ୟୁଁ ?''

ତା ୪।୨।୯୬



# ଯୌବନର ଅଭିନେତା

ଗୋଟିଏ ସାଲୁନରେ ମୁଁ ନିୟମିତ ପ୍ରତି ଦୁଇମାସ ଅଢେଇ ମାସରେ ଥରେ ବାଳ କାଟେ । ଥରେ ଏମିତି ବାଳ କାଟିଲା ବେଳେ ବାଳକାଟିଲା ଲୋକଟି ମତେ କହିଲା, ''ଆଜ୍ଞା ବାଳ ଡାୟ(Dye) କରି ଦିଅନ୍ତୁ ।'' ମୁଁ କହିଲି, 'କାହିଁକି ?' ଉତ୍ତର ଦେଲା ଭଲ ଦେଖାଯିବ । ମୁଁ କହିଲି, '' ଥରେ ଡାୟ କଲେ କେତେଦିନ ବାଳ କଳା ରହିବ ?'' ସେ କହିଲା, '' ଆଜ୍ଞା ମାସକୁ ଥରେ କରିବାକୁ ହେବ ।'' ମୁଁ ପଚାରିଲି, '' କ'ଣ ମୋ ବୟସର ଲୋକେ ନିୟମିତ ଡାୟ କରୁଛନ୍ତି ଏଇ ସାଲୁନରେ ?'' '' ହଁ ଆଜ୍ଞା, ଆପଣଙ୍କ ବୟସ ଆଉ ବେଶୀ ବୟସର ଲୋକେ ଡାୟ କରୁଛନ୍ତି । ଆମର ଏଠି ଭଲ ଡାୟ ହେଉଛି ।'' ମୁଁ ଥରକୁ କେତେ ପଇସା ପଡୁଛି ବୋଲି ପଚାରିବାରୁ ସେ କହିଲା, '' ଆମର ରେଗୁଲାର ଗରାଖ ତିରିଶ ଟଙ୍କା ଦିଅନ୍ତି । କଦବା କ୍ୱଚିତ କିଏ କଲେ ୪୦ ଟଙ୍କା ଆମେ ନଉ । ସୁପର ଡାୟ କଲେ ପଚାଶ ଟଙ୍କା । ସୁପର ଡାୟଟା ଭଲ ।'' ମୁଁ ତାକୁ କହିଲି, '' ମୁଁ ଡାୟ କରିବାକୁ ଚାହେଁନା । ମତେ ବୟସ ହେଲାଣି, ବାଳ ପାଚିବା କଥା । ମଣିଷ ବୁଢା ହେଲେ ଆସ୍ତେ ଆସ୍ତେ ବାଳ ପାଚେ । ତାକୁ କଳାକରି ଧଳାବାଳକୁ ଲୁଚାଇବା କ'ଣ ଦରକାର ?'' ସେ କହିଲା '' ହଁ ଆଜ୍ଞା, ଠିକ୍ କଥା ।''

ମୋର ବାଳଗୁଡା ପିଲାଦିନୁ ଉପୁଡିବା ଆରମ୍ଭ ହୋଇଥିଲା । ସେହି ହାରରେ ଉପୁଡିବା ଚାଲୁ ରହିଥିଲେ ଏବେ ମୋ ମୁଣ୍ଡରେ ବାଁ ଡାହାଣ ଯେପରି ଦି' କଡ ଚନ୍ଦା ହୋଇ ପଶିଯାଇଛି, ତାହା ପୂରା ଗୋଲ ବୁଲି ଯାଇଥାଆନ୍ତା । ଏଇଠି ହଠାତ୍ ଗୋଟିଏ କଥା ମନେ ପଡିଯାଉଛି । ପ୍ରାୟ କୋଡିଏ ବର୍ଷ ପୂର୍ବରୁ କଟକ ବାଦାମବାଡି ବସ୍‌ଷ୍ଟାଣ୍ଡ ଆଜିକା ପରି ହୋଇନଥିଲା । ଘରୋଇ ବସ୍ କଟକ, ଭୁବନେଶ୍ୱର ଭିତରେ ଚାଲୁନଥିଲା ଆଜିକା ପରି । ବାଦାମବାଡିରୁ ପାସେଞ୍ଜର ଟାକ୍ସି ଚାଲୁଥିଲା ଭୁବନେଶ୍ୱରକୁ । ଜଣକୁ ପ୍ରଥମେ ଦୁଇଟଙ୍କା ପଡୁଥିଲା । ପରେ ଭଡା ବଢି ତିନିଟଙ୍କା ପଚାଶ ପଇସାରେ ପହଂଚିଲା । ପୁଣି ପାଞ୍ଚଟଙ୍କା ପର୍ଯ୍ୟନ୍ତ ଉଠିଲା ବେଳକୁ କଟକ-ଭୁବନେଶ୍ୱର ବସ୍ ଚଳାଚଳ ଆରମ୍ଭ ହେଲା, ଟ୍ୟାକ୍ସିଗୁଡାକ କ୍ରମେ ବନ୍ଦ ହୋଇଗଲା । କାରଣ ବସ୍ ଭଡାଠୁ ଟାକ୍ସି ଭଡା ଡବଲରୁ ଅଧିକ ଦେଇ କିଏ ଯିବ । ଥରେ କଟକରୁ ମୁଁ ପାସେଞ୍ଜର ଟାକ୍ସିରେ ରାଜଧାନୀକୁ ଆସୁଥିଲି । ମୁଁ ପଛ ସିଟ୍‌ରେ ବସିଥିଲି । ମୋ ସାମ୍ନାରେ ଜଣେ ଯୁବକ ବସିଥିଲେ, ଯିଏ କି ଗାଡିର ଦରଜା ପଟକୁ ବସିଥିବାରୁ ତାଙ୍କ ମୁଣ୍ଡରେ ପବନ ବାଜୁଥିଲା । ସେ ବାରଂବାର ପ୍ରାୟ ପ୍ରତି ପାଞ୍ଚ ଦଶ ସେକେଣ୍ଡରେ ଥରକୁ ଥର ମୁଣ୍ଡର ଘଂଚ ବାଳଗୁଡାକୁ ବାଁ ହାତରେ ଚାପୁଥିଲେ କିମ୍ବା ଥାପୁଡଉଥିଲେ । କଟକ ସହରରୁ ସେତେବେଳେ ବାହାରିଲା ପରେ ବିଶେଷତଃ କାଠଯୋଡି

ପୋଲ ପାର ହେଲା ପରେ ପବନର ଗତି ଓ ଶକ୍ତି ସେ ସମୟରେ ବେଶୀ ଥିଲା । ପୁଲନଖରା ପାର ହେବାର ପ୍ରାୟ ମାଇଲିଏ ପରେ ହଠାତ୍ ସାମନାରେ ବସିଥିବା ଯୁବକଙ୍କ ବାଳଗୁଡାକ ଉଡିଆସି ମୋ ଡାହାଣରେ ବସିଥିବା ଜଣେ ଯାତ୍ରୀଙ୍କ ଛାତି ଉପରେ ପଡିଗଲା । ଯୁବକ ଜଣକ ହଠାତ୍ ଡାହାଣ ଓ ବାଁ ହାତ ଦୁଇଟାକୁ ମୁଣ୍ଡ ଉପରେ ଚାପି ଧରିବାକୁ ସ୍ୱତଃ ଚେଷ୍ଟା କଲା ବେଳକୁ ବାଳ କେରାକ ମୁଣ୍ଡ ଉପରୁ ଖସିଆସିଥିଲା । ବାଳଟା ନକଲି ଥିଲା ଏବଂ ମୁଣ୍ଡଟା ଗୋଲ ଚିକ୍କଣ ଚନ୍ଦା ହୋଇ ଚକ୍ ଚକ୍ ମାରୁଥିଲା । କେବଳ ବେକ ପଛପଟର ଉପରକୁ ଅଳ୍ପ କିଛି ବାଳ ଏହି ନକଲି ବାଳ ତଳେ ଛପି ରହିଥିଲା । ଯୁବକ ବଡ ଅପ୍ରତିଭ ହୋଇ ପଛପଟକୁ ବୁଲି ଲାଜରା(ଗୋରା ମୁହଁ ଲାଲ ହୋଇଥିଲା) ମୁହଁରେନିଜର ବାଳ କେରାଟା ସଂଗ୍ରହ କରିନେଲେ । ମୋର ସହଯାତ୍ରୀଗୁଡିକ ନିଜକୁ ସମ୍ଭରଣ କରି ନପାରି ଫିକ୍‌ଫାକ୍ କରି ହସିଉଠିଲେ । ମୁଁ କଥାଟା ସମ୍ଭାଳିବାକୁ ସେମାନଙ୍କୁ ସାମାନ୍ୟ ତାଗିଦା ଏବଂ ସାମନ୍ୟ ପରାମର୍ଶ ଭାଷାରେ ବୁଝାଇଲି ଯେ ଏପରି ହସିବାଟା ଠିକ୍ ନୁହେଁ । ଯୁବକଙ୍କ ବୟସ ସେତେବେଳେ ୨୫ କି ୨୬ ରୁ ବେଶୀ ହେବନାହିଁ ।

ବୟସ୍କ ଏବଂ ବୁଢାମାନଙ୍କର ମୁଣ୍ଡବାଳକୁ ଡାୟକରି କଳା କରିବା ଏବଂ ଯୁବକମାନେ ଚନ୍ଦା ହୋଇଯିବା ଏକ ଅପ୍ରାକୃତିକ ପ୍ରକ୍ରିୟା । ଏବେ ଭାରତରେ ଲୋକମାନେ ବୟସ ବଢିବା ସହିତ ନିଜ ମନକୁ ଖାପଖୁଆଇ ପାରୁନାହାଁନ୍ତି । ଏମାନଙ୍କ ସଂଖ୍ୟା ବଢୁଛି । ମୁଣ୍ଡବାଳକୁ କଳା ରଙ୍ଗେଇବା ସହିତ ନିଶର ଧଳାବାଳକୁ କୌଣସି ଉପାୟରେ କଳା କରିବା ଅଭ୍ୟାସରେ ପକାଇବା ଲୋକଙ୍କ ସଂଖ୍ୟା ବଢୁଛି । ପଛରେ ହଜାଇ ଦେଇଥିବା ଯୌବନାବସ୍ଥାକୁ ମନେପକାଇ ଯୁବକସୁଲଭ ଚେହେରା ବାଗେଇବାରେ ଏବେ ବୟସ୍କମାନଙ୍କ ବାସନା ବଢୁଛି ଏବଂ ଅନୁଭୂତ ହେଉଛି । ଚକଚକିଆ ଗାଢ ରଙ୍ଗର ପୋଷାକ, ପ୍ୟାଣ୍ଟସ୍ ଜାଗାରେ ଜିନ୍ ପିନ୍ଧିବା, ଛିଟ ସାର୍ଟ ପିନ୍ଧିବା, ଡାହାଣ ହାତରେ ଘଡି ବାନ୍ଧିବା, ଲମ୍ବା ବାଳ କାନ୍ଧ ତଳ ପର୍ଯ୍ୟନ୍ତ ଓହଳାଇବା, ଗେଞ୍ଜି କିମ୍ବା ଚକମକ କରୁଥିବା ଟି' ସାର୍ଟ ଗଳେଇବାଠୁ ଆରମ୍ଭ କରି ହାଫ ପ୍ୟାଣ୍ଟ କିମ୍ବା ସର୍ଟସ ପିନ୍ଧି ବୁଲିବା ଆଦି ବହୁ ମାର୍କାଧାରୀ ବୟସ୍କ(ବୁଢା ବରଂ) ଲୋକେ ଏବେ ବହୁଳ ପରିମାଣରେ ଦେଖିବାକୁ ମିଳୁଛନ୍ତି । ବୁଢା ଅଧ୍ୟାପକମାନେ (ପ୍ରଫେସର) ଯୁବତୀ ଛାତ୍ରୀଙ୍କୁ ସ୍ନାତକୋତ୍ତର ପରୀକ୍ଷାରେ ପୋଜିସନ ଦେଇ ପାଶ୍ କରାଇବା ପାଇଁ ଯୁବକସୁଲଭ ଆଚରଣ ପ୍ରଦର୍ଶନ ଏବେ ଷ୍ଟାଣ୍ଡାର୍ଡ ପ୍ରାକ୍ଟିସ ହେଲାଣି । ଏମ.ଫିଲ. କିମ୍ବା ଡକ୍ଟରେଟ ପାଇବାକୁ ଅଧିକ ମୂଲ୍ୟ ଦେବାକୁ ପଡୁଛି କେତେକ ଗବେଷିକାଙ୍କୁ । କେହି ଏସବୁ ପଢି ଖରାପ ଭାବନ୍ତୁ ନାହିଁ । ଏହାତ ଆଜିକାର ଜୀବନର ଦୃଶ୍ୟ । ବୟସ୍କ ଲୋକେ ଦେଶର ଦୁରବସ୍ଥା, ଆସନ୍ନ ସମସ୍ୟାର ବହୁଳତା ସଂପର୍କରେ ଉଦ୍‌ବେଗର ସମ୍ମୁଖୀନ ହେଉନାହାନ୍ତି । ପରିଣତ ବୟସରେ ମଧ୍ୟ ସେମାନେ ନିଜର ସୁଖ ସମ୍ଭୋଗ ଏବଂ ଯୁବସୁଲଭ ଉପଭୋଗରୁ ନିଜକୁ ବଞ୍ଚିତ କରିବାକୁ ଆଦୌ ଆଗ୍ରହୀ ନୁହନ୍ତି । ବେଳେବେଳେ ଦେଖିବାକୁ ମିଳୁଛିଯେ, ଏହି ଧରଣର ଜୀବନ ପ୍ରତିଯୋଗିତାରେ ବୟସ୍କ(ବୃଦ୍ଧ) ମାନଙ୍କର ଆଗୁଆ ଚଳଣି ସହିତ ସେମାନଙ୍କର ପୁଅ-ଝିଅମାନେ ପାଦ ପକାଇ ଚାଲିବାରେ ପଛରେ ପଡିଯାଉଛନ୍ତି ।

ବୟସ୍କମାନେ ବୟସ ଲୁଚାଇବାକୁ କାହିଁକି ଆଗ୍ରହୀ ହୁଅନ୍ତି ବୁଝାପଡେ ନାହିଁ । ସେମାନେ ଧଳା ପାଚିଲା ବାଳକୁ ମଧ୍ୟ କଳା ରଙ୍ଗରେ କାହିଁକି ଲୁଚାଇବାକୁ ଚାହାଁନ୍ତି ତାହା ମଧ୍ୟ ଠିକ୍ କରି ଜଣାପଡେନାହିଁ । ଅନେକ ବୟସ୍କ ଲୋକଙ୍କର ବାଳ ବହୁତ ପାଚିଲା ସତ୍ତ୍ୱେ ମନର ସାତ୍ତ୍ୱିକତା ଚେହେରାରେ ପ୍ରତିଫଳିତ ହୁଏ । ସେମାନଙ୍କର ବାର୍ଦ୍ଧକ୍ୟ ସେମାନଙ୍କ ଦେହ, ମନ ଓ ମୁହଁରେ ଏତେ ସୌନ୍ଦର୍ଯ୍ୟ ସୃଷ୍ଟି କରେ ଯେ ସେମାନଙ୍କ ସାନ୍ନିଧ୍ୟ ପାଇବାକୁ ଅପେକ୍ଷାକୃତ କନିଷ୍ଠ ଏପରିକି ପରିଣତ ଯୁବତୀମାନେ ମଧ୍ୟ ଆକୃଷ୍ଟ ହୁଅନ୍ତି । ଏହା ଯୌନ ପିପାସାର ପ୍ରତିଫଳନ ହୋଇପାରେ । ନହୋଇପାରେ ମଧ୍ୟ । ବୟସ୍କମାନେ କୃତ୍ରିମ ଯୌବନର ଅଭିନେତା ଭୂମିକାରେ ଅବତରଣ ନକରି ନିଜର ବ୍ୟକ୍ତିତ୍ୱ, ନିଜର ଅସ୍ତିତ୍ୱ ଓ ସ୍ନେହ ସହାୟତାରେ ଯେ ସମାଜରେ ସମ୍ମାନିତ ଓ ଶ୍ରଦ୍ଧେୟ ହୋଇପାରିବେ, ଏହି ମର୍ଯ୍ୟାଦାର ପୂର୍ଣ୍ଣତା ପାଇବାକୁ ଆଗ୍ରହୀ ହେବା ଆବଶ୍ୟକ । ଯୌବନ ଫେରି ପାଇବାର ସମ୍ଭାବନା ମୁହଁରେ ପ୍ରାୟ ନଥାଏ ଯେତେ ସୁନ୍ଦର ହେଲେ ମଧ୍ୟ । ଅନ୍ତରର ସୌନ୍ଦର୍ଯ୍ୟ ବିନା ପୋଷାକର ଚାକଚକ୍ୟ, କଳାରଙ୍ଗ ବାଳ ସଜାଇ ବୁଲିଲେ ଯୌବନ ଫେରିଆସେନା । ବୟସ୍କ ଲୋକ ମଧ୍ୟ ପ୍ରାଣ ପ୍ରାଚୁର୍ଯ୍ୟ ଉପଭୋଗ କରିପାରେ ନିଜର ଦୃଷ୍ଟିଭଙ୍ଗୀ ମାଧ୍ୟମରେ । ଏହି ପ୍ରକ୍ରିୟାର ଶିକାର ଯେ ମହିଳାମାନେ ହୁଅନ୍ତିନାହିଁ ତାହା ମଧ୍ୟ ନୁହେଁ । ବୟସ୍କା ମହିଳାମାନେ ଯୌବନର ସ୍ୱାଦ ସେହି କୃତ୍ରିମ ପ୍ରସାଧନ ଓ ପୋଷାକ ମାଧ୍ୟମରେ ଫେରି ପାଇବାକୁ ଚାହାଁନ୍ତି ଏକଥା ମଧ୍ୟ ସତ୍ୟ । ସେ ସବୁ ଅନ୍ୟ ଅବକାଶରେ ।

ତା୧୧।୨।୧୯୯୬



# କଲ୍ୟାଣ

ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ଏଠାରେ ଜନ୍ମଭେଦ ନେଇ ସମ୍ବିଧାନ ସ୍ୱୀକୃତ ବ୍ୟବସ୍ଥାରେ 'ତଳ'ସ୍ତରର 'ତଳ'ଜାତିର ଯୁବକ ଯୁବତୀଙ୍କ ପାଇଁ ଚାକିରିରେ ସଂରକ୍ଷଣ ବ୍ୟବସ୍ଥା ଖଞ୍ଜାଯାଇଛି ବୋଲି ଦାବି କରାଯାଏ । କିନ୍ତୁ ଅନେକ ସମୟରେ ପ୍ରାର୍ଥୀ ମିଳୁନଥିବା କୁହାଯାଇ ସେ ସ୍ଥାନଗୁଡିକ ପୂରଣ କରାଯାଏ ନାହିଁ । ଏପରିକି ସ୍କୁଲ କଲେଜରେ ସ୍ଥାନ ପାଇବା ପାଇଁ ଏହି 'ତଳ ଜାତିର' ଛାତ୍ରଛାତ୍ରୀ ପଇସା ଖର୍ଚ୍ଚ ନକଲେ ପଶିବା ସମ୍ଭବ ହୁଏନା । ମୋ ନିଜ ଅନୁଭୂତିର କଥା ଗୋଟିଏ କୁହାଯାଇପାରେ । ମୋ ଗାଁର ହରିଜନ ଭୂମିହୀନ ମଜୁରିଆ ଜଣେ । ତାର ଝିଅଟି ଯୁକ୍ତ ଦୁଇ ଫେଲ ହୋଇ ଘରେ ବସିଲାଣି କେତେ ବର୍ଷ ହେଲା । ବାହା କରିବାକୁ ହରିଜନ କୁଳରେ ମଧ୍ୟ ଲୁନା ସହିତ ନଗଦ ୧୦ ହଜାର ଟଙ୍କା ଦେବାକୁ ହେବ । ଯେହେତୁ ଝିଅଟି ପାଠ ପଢିଛି ତେଣୁ ପଢୁଆ ଜ୍ୱାଇଁ ଦରକାର । ପଢୁଆ ଜ୍ୱାଇଁକୁ ଚାକିରି ମିଳିନଥିଲେ ମଧ୍ୟ ଝିଅ ତରଫରୁ ଯୌତୁକ ବାବଦ ଓ ବା'ଘର ଖର୍ଚ୍ଚ ବାବଦରେ ନିହାତି କମରେ ୩୦ ହଜାରଟଙ୍କା ଖର୍ଚ୍ଚ କରିବାକୁ ହେବ । ୩୦ ବର୍ଷ ଲାଗିଲେ ମଧ୍ୟ ସେ ଏତେ ରକମ ଯୋଗାଡ କରିବା କଷ୍ଟକର । ବଡ ଝିଅ ପଛକୁ ସାନ ଝିଅଟାଏ ବି ଅଛି । ଖାଲି ମାଟ୍ରିକ ପାସ୍ କଲେ ଶିକ୍ଷୟିତ୍ରୀ ଚାକିରି ମିଳିବ ନାହିଁ । ସରକାରୀ ନିୟମ ଅନୁସାରେ ସି.ଟି ପାସ୍ କଲେ କୌଣସି ସ୍କୁଲରେ ଝିଅଟି ପଶି ଯାଇପାରେ । ସି.ଟି. ଟ୍ରେନିଂରେ ଭର୍ତ୍ତି କରିବା ପାଇଁ ଗାଁର ଲତା ଫିରତା ଟୋକାଏ ବାପଠୁ ଶହଶହ କରି କେତେ ଥର ଟଙ୍କା ନେଲେଣି । କିଛି ହଉନାହିଁ । ଆଉ ଜଣେ କିଏ କହିଛନ୍ତି ସାତ ଶ' ଟଙ୍କା ଖର୍ଚ୍ଚ କଲେ ସ୍କୁଲ ଏସ.ଆଇ ଓ ଡି.ଆଇ.ଙ୍କୁ ସନ୍ତୁଷ୍ଟ କରିହେବ । ସି.ଟି ସ୍କୁଲରେ ସିଟ୍ ମିଳିବ । ସାତଶ ଟଙ୍କା ମଧ୍ୟ ଗଲା । ସି.ଟି. ସ୍କୁଲରେ ଭର୍ତ୍ତି ନୋହିଲା ।

ମୁଁ ଗାଁକୁ ଯାଇଥିଲି । ହରି ମଳିକ ମତେ କହିଲା ଯେ ମୁଁ ଚାହିଁଲେ ଏହି କାମଟା ହୋଇଯିବ । ମୁଁ ବା ଡି.ଆଇ., ଏସ.ଆଇ.ଙ୍କୁ କୋଉଠି ଚିହ୍ନିଛି । ମୋର ଦଉଡ ଖୁବ୍ ହେଲେ ଡି.ପି.ଆଇ.ଙ୍କ ଯାଏ । ତା' ତଳକୁ ମୁଁ ପହଞ୍ଚିବା କଷ୍ଟ ଭୁବନେଶ୍ୱରରେ । ତଥାପି ଆଶା ବାନ୍ଧି ଏଲିମେଣ୍ଟାରି ଏଡୁକେସନ ଡି.ପି.ଆଇଙ୍କୁ ଅନୁରୋଧ କଲି ଯେ ଆମ ସେ ହରିଜନ ଝିଅଟିକୁ ଗାଁ ପାଖରେ ଥିବା ଟ୍ରେନିଂ ସ୍କୁଲରେ ଭର୍ତ୍ତି କରାଇ ଦିଅନ୍ତୁ । ସେହିଁ ଭରିଲେ । କିନ୍ତୁ କାମଟା ହେଲା ନାହିଁ । ମୁଁ ଯେତେବେଳେ ଯାଏ ଝିଅର ବାପା ଆର୍ଜି ଜିଗର କରେ । ଝିଅ ଆସି ତଳେ ପଡିଯାଇ ମୁଣ୍ଡିଆ ମାରେ । ଛଳଛଳ ଆଖିରେ ଅନାଇ ନିବେଦନ କରେ । ମୁଁ ପ୍ରତିଥର ପ୍ରତିଶ୍ରୁତି ଦେଇ ଆସି ଡି.ପି.ଆଇଙ୍କୁ କୁହେ । ଏମିତି କେତେ ବର୍ଷରେ ତିନି ଜଣ ଡିପିଆଇ ଗଲେ । ତଳୁ ଉଠି ଉଚ୍ଚ ଶିକ୍ଷାର ଡିପିଆଇ ହୋଇ ଅବସର ନେଲେ । ହରିଜନ ବାଳିକାଟିର ସିଟି ଟ୍ରେନିଂରେ ପଶିବା ମୋ

ଦ୍ୱାରା ସମ୍ଭବ ହେଲା ନାହିଁ । କାରଣ ଏସଆଇ, ଡିଆଇ କୁଆଡେ ଟଙ୍କା ନେଇ ସିଟ୍ ଦେଉଛନ୍ତି । ଅଫିସ କିରାଣିମାନଙ୍କ ଜରିଆରେ ସେ କାମ ହେଉଛି ।

ମୁଁ କଟକରେ ଥିଲାବେଳେ ମୋ ଲୁଗା କାଚୁଥିଲା ନିମାଇ ସେଠୀ । ତାକ ନାମ ନିମା । ଦୁଇ ମାସ ତଳେ ନିମା ତା' ପୁଅକୁ ଧରି ମୋ ଭୁବନେଶ୍ୱର ଘରେ ପହଞ୍ଚିଲା ଦୁମ୍‌ଦୁମା ଖରାବେଳେ । କିରେ କ'ଣ ? ପୁଅକୁ ନେଇଆସିଛି । ସେ ପରୀକ୍ଷା ଦେଇଛି ଶିକ୍ଷା ବିଭାଗର କୌଣସି ଏକ ଉପବିଭାଗରେ । ସେଠି ୨୦ଟା ପୋଷ୍ଟ ହରିଜନଙ୍କ ପାଇଁ ରିଜର୍ଭ ଅଛି । ତା ପୁଅକୁ ସେଥିରୁ ଗୋଟାଏ ଚାକିରି କରାଇ ଦେବି ମୁଁ । କେମିତି ବୋଲି ପଚାରିଲି । କହିଲା ବାବୁ ମୁଁ ଜାଣିନି । ତମ ଛଡା ମୋର କେହି ନାହିଁ ଆଉ । ମୁଁ କାହା ପାଖକୁ ଆଉ ଯିବି । ପୁଅ ବିଏ ପାସ କରିଛି । ଆଉ ତ ଲୁଗା କାଚିବନି । ନିମା ସଫା ଧୋତି ପଞ୍ଜାବି ପିନ୍ଧି ଆସିଛି । ପୁଅ ଟେରିକଟ୍ ପ୍ୟାଣ୍ଟ ସାର୍ଟ । ମୁଁ କହିଲି ତୁ କଟକରେ କାହାକୁ କହିଲୁନି କାହିଁକି ? କେତେଟା ନାମ ମଧ କହିଲି । ନିମା କହିଲା ତାଙ୍କ କଥା କୁହନା ବାବୁ । ତାଙ୍କମାନଙ୍କ ପାଖରେ ପହଞ୍ଚିବା କଷ୍ଟ । ସେ ଦଶ କୋଡିଏ ହଜାର ମାଗିବେ । ମୁଁ କୁଆଡୁ ପାଇବି ଏତେ ଟଙ୍କା । ପୁଅର ନାଁଟା ଓ ରୋଲନମ୍ବର ଦେଇ ବହୁତ ଆଶା ନେଇ ନିମାଇ ଫେରିଗଲା ।

ମୁଁ ସେ ବିଭାଗର ଜଣେ ଛୋଟ ଅଫିସରଙ୍କୁ କହିଲି ଏ କଥା । ହରିଜନ ପିଲାଟି ବିଏ ପାସ କରିଛି । କୋଟାରେ ତା'କୁ ରିଜର୍ଭ ଥିବା ଚାକିରିରେ ଭର୍ତି କରିହେବ କି ? ଅଫିସର ଜଣକ ଟିକିଏ ଇତସ୍ତତଃ ହେଲେ । ପଚାରିଲି କ'ଣ ହବ କି ? ସେ କହିଲେ ଆଜ୍ଞା ଆପଣ ବିଶ୍ୱାସ କରିବେନି । ଆମ ଅଫିସରେ କିରାଣି ଚାକିରି ପାଇଁ ଜେନେରାଲରେ ପଚାଶ ଷାଠିଏ ହଜାର ଟଙ୍କା ଚାଲିଛି । ହରିଜନ ଆଦିବାସୀଙ୍କ ପାଇଁ କୋଡିଏରୁ ତିରିଶ ହଜାର । ଆଉ ଆପଣଙ୍କ ନାଁ ଶୁଣିଲେ ଟଙ୍କା ନେବା ତ ନୁହେଁ । ଚାକିରି ହେବାର ସମ୍ଭାବନା ନାହିଁ । ଆଉ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କୁ ଏକଥା କହିଲି । ସେ ଆଉ ଜଣଙ୍କ ନାମ କହିଲେ । ତାଙ୍କୁ କହନ୍ତୁ ହୋଇଯିବ । ମୁଁ ସେ ଅଫିସରଙ୍କୁ ଜାଣିନି । ତେଣୁ ସେ କଥା ହେଲାନି ।

ନିମା ଏହା ଭିତରେ ତିନିଥର ମୋ ପାଖକୁ କଟକରୁ ଆସିଲାଣି । ତା'ର ମୋ ପରି ଏଣୁଅଟି ଛଡା ଆଉ କେହିନାହିଁ । ଏଣୁଅଟି ସିଝୁ ବୁଦା ଖୋଜୁଛି । ଦ୍ୱିତୀୟ ଥର ନିମାଇ କହିଲା ବାବୁ, ଶୁଣୁଛି ସେଠି କୁଆଡେ ଦିଆନିଆ ଚାଲୁଛି । ଯଦି କହିବ ମୁଁ ଯୋଗାଡ କରିବି । ମୁଁ ତ ତମଛଡା ଅଉ କାହାକୁ ଜାଣିନି । ଆଉ ଯାହାଙ୍କ କଥା କହୁଛ ସେଗୁଡାକ ଚୋର ଡାକୁ । ତାଙ୍କୁ ପଇସା ଦେଲେ ମଦ ଖାଇ ଉଡାଇଦେବେ । ମୋ ପୁଅର ତ ଚାକିରି ହେବନି । ଟଙ୍କା ବୁଡିବ । କହିଲେ ମତେ ଛେଚିବେ । ରାଜନୀତି ଟୋକାମାନେ ଏବେ ଖାଲି ଗୁଣ୍ଡାମୀ କରୁଛନ୍ତି । ତମ ବେଳେ କଥା ଅଲଗା ଥିଲା । ତମେ ବୁଝ ମୁଁ ପାଞ୍ଚ ଦଶ ଯୋଗାଡ କରିବି । ମୁଁ ହତବାକ୍ ହୋଇ ନୀରବରେ ତା'ଆଡେ କେତେ ମିନିଟ୍ ଚାହିଁଲି ।

ସଂରକ୍ଷଣ ଯୋଗୁ ସବୁ ଚାକିରିଗୁଡା ଏହି ତଳଜାତିଆ ଲୋକଗୁଡାକ ନେଇଯାଉଛନ୍ତି । ବଡଜାତିଆ ଲୋକମାନେ ସେଥିପାଇଁ ମେରିଟ୍ ଉପରେ ଜୋର ଦେଉଛନ୍ତି । ନିମାଇ ମତେ କହୁଛି ବୁଝିବି କିଏ ଟଙ୍କା ନେବେ । ସେ ଟଙ୍କା ଯୋଗାଡ କରିବ । ପାଞ୍ଚଦଶ ଟଙ୍କା କି ପାଞ୍ଚଦଶ ହଜାର ଏ କଥାର ସ୍ପଷ୍ଟୀକରଣ

କରିବାକୁ ମୋର ମାନସିକତା ନଥିଲା । ନିମାଇ ଆକୁଳତା ନିକଟରେ ମୋ ହୃଦୟ ନଇଁ ପଡୁଥିଲା । ମୁଁ ତା'କୁ କହିଲି ତୁ କାହିଁକି ମୋ ପାଖକୁ ଆସିଛୁ ବା'ହେଲେ । ମୁଁ କ'ଣ ଏସବୁ କାରବାର କରିପାରିବି । ମୋ ନିଜର ଅସହାୟତା ନିମାଇ ଅସହାୟତା ଠାରୁ ବହୁଗୁଣ ବେଶି ବୋଲି ଅନୁଭବ କରୁଥିଲି । ମୁଁ ଚେଷ୍ଟା କରିବି ବୋଲି କହି ନିମାକୁ ବିଦା କଲି । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ପଚାରିବାକୁ ଇଚ୍ଛା ହେଉଥିଲା । ସେ କ୍ଷମତାକୁ ଆସିବା ପରେ କୋଡିଏ ଲକ୍ଷ ଲୋକଙ୍କୁ ନିଯୁକ୍ତି ଦେବେ କେତେବାର ଘୋଷଣା କରିସାରିଲା ପରେ ଏବେ ଚୁପ ପଡିଛନ୍ତି । ଏକ ଲକ୍ଷ ହଜାର କୋଟି ପୁଞ୍ଜି ବିନିଯୋଗ ହେବ ଏ ରାଜ୍ୟରେ ବୋଲି ସେ ଘୋଷଣା କରିଛନ୍ତି । ଏହି ପୁଞ୍ଜି ଲଗାଣ ଓ ଘୋଷିତ ନିଯୁକ୍ତିର ସଂଖ୍ୟା ଭିତରେ ନିମାଇ ପୁଅର ସ୍ଥାନ ଅଛି ତ ? କଲ୍ୟାଣ ବିଭାଗ ମନ୍ତ୍ରୀ ଓ ସଚିବଙ୍କ କିଛି ଉତ୍ତର ଅଛି କି ?

ତା ୨୫।୨।୯୬



# ରେଳଯାତ୍ରା

ଭ୍ରମଣ ଆମୋଦଦାୟକ । ଅନ୍ତତଃ ଆମୋଦଦାୟକ ବୋଲି ଭାବି ଆମେ ବୁଲିବାକୁ ଯାଉ । କିନ୍ତୁ ଭାରତବର୍ଷରେ ବିଦେଶୀ ହୁଅନ୍ତୁ କିମ୍ବା ସ୍ୱଦେଶୀ ହୁଅନ୍ତୁ ଭ୍ରମଣଯୋଗ୍ୟ ସ୍ଥାନମାନଙ୍କରେ ହଇରାଣରେ ପଡ଼ିବାର ସମ୍ଭାବନା କିମ୍ବା ଆଶଙ୍କା ପ୍ରଚୁର । ଲୋକେ ବୁଲିଯାଆନ୍ତି ଜୀବନକୁ ଉପଭୋଗ କରିବାକୁ । କିମ୍ବା ଯେଉଁଠାକୁ ଯାଆନ୍ତି ସେଠାରେ ଉପଭୋଗ୍ୟ କିଛି ଥିବ ବୋଲି ଚିନ୍ତାକରି । ଭାରତରେ ଭ୍ରମଣ କରିବାର ସୁଖର ମାତ୍ରା ଠାରୁ ହଇରାଣ ହରକତର ମାତ୍ରା ଯଥେଷ୍ଟ ଅଧିକ । ମୁଁ ଅଧିକ ପଇସା ଥିବା ଲୋକଙ୍କ କଥା ଭାବୁନି କିମ୍ବା କହୁନି । ଯେଉଁମାନେ ମଧ୍ୟବିତ୍ତ କିମ୍ବା ନିମ୍ନ ମଧ୍ୟବିତ୍ତ ସେମାନଙ୍କ ପାଇଁ ଦର୍ଶନୀୟ ସ୍ଥାନ କିମ୍ବା ପଦାର୍ଥ ଦେଖିବାର ସଉକ ପ୍ରବଳ ନଥିଲେ ଭ୍ରମଣ ବଡ଼ ମହଙ୍ଗା ପଡ଼େ । ମହଙ୍ଗା ଦୁଇ ଦିଗରୁ । ପ୍ରଥମଟି ଆର୍ଥିକ । ନୂଆ ଜାଗାରେ ପରିଚୟ ନଥାଇ ସବୁ ପ୍ରକାର ସେବା, ସୁବିଧା, ରହିବା, ଖାଇବା ଓ କିଣିବା ଜିନିଷ ପାଇଁ ଅଧିକ ପଇସା ଖର୍ଚ୍ଚ ହୁଏ । କେଉଁ ପଦାର୍ଥଟି ସେଠାରେ ଅପେକ୍ଷାକୃତ ଶସ୍ତାରେ ମିଳିବ ଏବଂ କେଉଁଠାରେ (ଅର୍ଥାତ୍ କେଉଁ ହୋଟେଲ, କେଉଁ ଭୋଜନାଳୟ, କେଉଁ ଦୋକାନ କିମ୍ବା ସେହି ସ୍ଥାନର କେଉଁ ଅଞ୍ଚଳରେ ) ନିଜ ପକେଟକୁ ସୁହାଇଲା ଭଳି ଖର୍ଚ୍ଚରେ ପ୍ରାପ୍ତହେବ ତାହା ଜାଣିବା କଷ୍ଟକର । ଦ୍ୱିତୀୟ ଦିଗରୁ ମହଙ୍ଗା ଅର୍ଥ ହଇରାଣ, ଶୋଷଣ ଓ ନିଛକ ଠକାମି ।

ଅନେକ ସମୟରେ ପ୍ରଳମ୍ବ ଅଶୁଦ୍ଧ ହୋଇଯାଏ । ଅର୍ଥାତ୍ ଯଦି ଆପଣ ରେଳଯାତ୍ରା କରୁଛନ୍ତି ଆପଣ ବାହାରିବା ଦିନ ଆପଣଙ୍କ ନିର୍ଦ୍ଧାରିତ ଟ୍ରେନଟି ପାଞ୍ଚ କି ଛ ଘଣ୍ଟା (କିମ୍ବା ସତର ଘଣ୍ଟା ବିଳମ୍ବ) ହୋଇପାରେ । ଏପରିକି ଗତକାଲିର ଗାଡ଼ି ଆଜି ଆସିପାରେ । ଟ୍ରେନରେ ପାଇଖାନାରେ ପାଣି ଥିବନାହିଁ । ପରିସ୍ରା ଝାଡ଼ାର ଗନ୍ଧ ଡବାର ମଝି ବର୍ଥ ପର୍ଯ୍ୟନ୍ତ ଆସୁଥିବ । ବିଳମ୍ବରେ ଯାଉଥିବାରୁ ନିର୍ଦ୍ଧାରିତ ଷ୍ଟେସନରେ ଖାଇବା ଥାଳି ଉଠିବ ନାହିଁ । ତେଣୁ ଭୋକରେ ଯେଉଁ ଷ୍ଟେସନରେ ଯେଉଁ ଖାଦ୍ୟ (ଅଖାଦ୍ୟ) ମିଳିଲା ସେଥିରେ ନିଜକୁ ସନ୍ତୁଷ୍ଟ କରିବାକୁ ପଡ଼ିବ । କାରଣ ଅସନ୍ତୁଷ୍ଟ ହେବାର କୌଣସି ସୁଯୋଗ ନାହିଁ । ଅଭିଯୋଗ କାହାକୁ କରିବେ ଚଳନ୍ତି ଗାଡ଼ିରେ ? ଅଭିଯୋଗ କଲେ କ'ଣ ସମାଧାନ କରିବାକୁ କିଏ ଅଛି ? ତେଣୁ ମାଡ଼ିଯାକି ସମ୍ଭାଳିବାକୁ ହେବ । ଆଉ ଯାତ୍ରା ବାତିଲ କରି ତ ଘରକୁ ଫେରି ଆସିବେନି ?

ଟ୍ରେନରେ ଏବେ ଖାଇବା ଖର୍ଚ୍ଚ ବହୁତ ବେଶୀ । ନିରାମିଷ ମିଲ୍ ଅନ୍ୟୁନ ୧୬ ଟଙ୍କା ! ଅଳ୍ପାହାରୀଙ୍କ ପାଇଁ ଯେତିକି ଭାତ ସେଥିରେ ଆସେ ହୁଏତ ଯଥେଷ୍ଟ । କିନ୍ତୁ ସେ ଭାତ ଅନେକ ସମୟରେ ଖାଇବା ଉପଯୋଗୀ ନୁହେଁ । ପାଣିଆ ଡାଲି । ଗୋଟାଏ ତରକାରୀ ଯେଉଁଥିରେ ଆଳୁ ଛଡ଼ା ଆଉ କିଛି ଚିହ୍ନିହୁଏ ନାହିଁ । ଆଚାର ଥାଇପାରେ ନ ଥାଇପାରେ । ଯଦି ରୁଟି, ପୁରି କିମ୍ବା ପରଟା ଦି'ଖଣ୍ଡ ଆସିବ ଭାତ

ପରିମାଣ ଅଧା ହୋଇଯିବ । କିନ୍ତୁ ସେ ଗହମଜାତ ଦ୍ରବ୍ୟ ପାଇଁ ରାସ୍ତା କୁକୁରର ଦାନ୍ତ ଦରକାର ଏବଂ ଅଧିକ ଭାଗ କଞ୍ଚା ଥିବ । ଛୋଟ ଷ୍ଟିଲ କିମ୍ବା ଅସନା ଆଲୁମିନିୟମ ଟ୍ରେରେ ଡାଲି ଓ ତରକାରୀ ଭାତ ଖୋପକୁ ବହି ଆସିଥିବ ତ ଆଚାର ଓ ଲୁଣ ଯାଇ ଡାଲିରେ ମିଶି ଯାଇଥିବ ଆଉ ନନ୍‌ଭେଜିଟେରିଆନ ଅର୍ଥାତ୍ ଆମିଷ ମିଲ୍ କଥା ନ କହିବା ଭଲ । ଚିକେନ୍ ଅର୍ଥାତ୍ କୁକୁଡ଼ା ଝୋଳ ଓ ଭାତର ଦାମ ୩୭ ଟଙ୍କା । ନିଜ ସହରର ମଧ୍ୟମ ଧରଣର ରେଷ୍ଟୋରାଁରେ ତାହାର ଦାମ ୨୦ କି ଖୁବ୍ ହେଲେ ୨୫ ଟଙ୍କା । କୁକୁଡ଼ା ଖଣ୍ଡେ ନାଲିଆ ତେଲ ଭାସୁଥିବା ମସଲା ଝୋଳରେ ଉଙ୍କି ମାରୁଥିବ । ଆପଣଙ୍କ ଭାଗରେ ଯେଉଁ କୁକୁଡ଼ା ଖଣ୍ଡିକ ପଡ଼ିଥିବ ତା'କୁ ଓଜନ କଲେ ୧୫ ଗ୍ରାମ ହୋଇପାରେ । ହାଡ଼କୁ ଛାଡ଼ିଦେଲେ ମାଂସ ସେଥିରେ କେତେ ଥିବ । ହୁଏତ ଭଲକରି ସିଝିନଥିବ । ପଇସା ଦେଲେ ବି ଆପଣ ସେ ମିଲ୍‌କୁ ପୋଛିପାଛି ଖାଇ ପାରିବେନି । ଆଗେ ଭାରତୀୟ ରେଳରେ ଦହି ଟିକେ ମିଳୁଥିଲା । ଏବେ ତାହା ମିଳିବା କଷ୍ଟକର । ଆଗେ ନିରାମିଶ ମିଲ୍‌ରେ ଗୋଟାଏ ମିଠା (ଲଡୁ କିମ୍ବା ବରଫି) ମିଳୁଥିଲା । ବହୁତ ଦିନରୁ ମିଠା ଉଠିଗଲାଣି । ଯଦି କିଏ ମିଠା ଚାହିଁବ ତେବେ ହୁଏତ ସାଦା ମିଲ୍‌ର ଦାମ ୨୫ ଟଙ୍କା ହୋଇଯାଇପାରେ । ଖାଇସାରି ଆପଣ ପିଇବା ପାଣିର ବ୍ୟବସ୍ଥା କରିବେ । କେଉଁଠି ହୁଏତ ପ୍ଲାଷ୍ଟିକ ଥଳିରେ ପାଣି ମିଳିପାରେ । କିନ୍ତୁ ତାହା ଶୁଦ୍ଧ କି ନାହିଁ କିଏ ଜାଣିଛି । ଏହି ପ୍ରକାର ମିଲ୍ ଦୁଇଥର ଖାଇଲା ପରେ ଯଦି ପେଟ ଖରାପ ହେବ ସେଥିପାଇଁ ଘରୁ ବାହାରିବା ପୂର୍ବରୁ ଡାକ୍ତରଙ୍କୁ ପଚାରି କିଛି ଇମର୍ଜେନ୍ସି ଔଷଧ ସାଙ୍ଗରେ ଧରିବା ଦରକାର । ଭାରତୀୟ ରେଳରେ ସାଧାରଣ ଆବଶ୍ୟକତା ପାଇଁ ଗାର୍ଡଙ୍କ ପାଖରେ ଔଷଧର ବ୍ୟବସ୍ଥା ନାହିଁ । ସକାଳ ଭୋଜନ ଅର୍ଥାତ୍ ବ୍ରେକଫାଷ୍ଟରେ ଆଳୁଚକଟାର ପେଟୁଆ ଦିଟା ଭଲ ଭଜା ହୋଇନଥିବ, ଯାହାକୁ କଟଲେଟ୍ ବୋଲି କୁହାଯାଏ ଏବଂ ଦୁଇଟି ଛୋଟ ପାଉଁରୁଟି ସ୍ଲାଇସ୍‌ର ଦାମ ୧୧ ଟଙ୍କା । ଚା' (ପଟ୍) ଛୋଟ ଥର୍ମସରେ ଆସିବ ଛୋଟ କପ୍‌ରେ ଗୋଟିଏ କପ୍ କିମ୍ବା ପତଳା ପ୍ଲାଷ୍ଟିକ ଛୋଟ ଗ୍ଲାସରେ ଗଅଁଠେ ହେବ ତା'ର ଦାମ ୪ ଟଙ୍କା (ଅଳ୍ପ କେତେକ ଟ୍ରେନରେ ୩ ଟଙ୍କା ଏବେ) ରେଡିମେଡ୍ ମିଳିବ । ଥଣ୍ଡା ହୋଇପାରେ । ଚିନି କମ୍ ବେଶୀ ହୋଇପାରେ । ଦୁଧ ପରିମାଣ କମ୍ କିମ୍ବା ବେଶୀ ହୋଇପାରେ । ମୋ ପରି ଡାଏବେଟିସ୍ ଥିବା ଲୋକର ବଡ଼ ଅସୁବିଧା । ବିନା ଚିନି କିମ୍ବା ଚିନି ଅଲଗା ଆଣିବାର ବରାଦ କଲେ ସେପରି ଚା ପାଇବା ସବୁବେଳେ ସମ୍ଭବ ହୁଏନାହିଁ ।

ଟ୍ରେନରେ ଏବଂ ଷ୍ଟେସନରେ ପ୍ରତ୍ୟେକ ଜିନିଷର ଦାମ ବେଶୀ । ପାନ, ସିଗାରେଟ, ଥଣ୍ଡାପାନୀୟ, ପାଚିଲା କଦଳୀ ଓ ଅନ୍ୟାନ୍ୟ ଫଳର ଦାମ ଷ୍ଟେସନ ବାହାରେ ଯେଉଁ ଦରରେ ମିଳେ ଟ୍ରେନରେ କିମ୍ବା ପ୍ଲାଟଫର୍ମରେ ତା'ର ଦାମ ଅନ୍ତତଃ ଦେଢ଼ଗୁଣ କିମ୍ବା ଡବଲ । ଏହା ଭାରତୀୟ ରେଳବାଇ ଦ୍ୱାରା ଅନୁମୋଦିତ ଏକଚାଟିଆ ବ୍ୟବସାୟ । ପାଞ୍ଚଟି ଶୁଖିଲା ପୁରି ଓ ଚରକାଏ ପାଣିଆ ଆଳୁ ତରକାରିର ଦାମ ୧୨ ଟଙ୍କା । କିନ୍ତୁ କେତେକ ଷ୍ଟେସନରେ ବେଳେବେଳେ ଗରମ ଛଣା ହେଉଥିବା ପୁରି ମିଳିଯାଏ । ଆପଣ ଯାଉଥିବା ଡବାଟି ଯଦି ବହୁତ ଆଗରେ କିମ୍ବା ବହୁତ ପଛରେ ଥାଏ, ତେବେ ସୀମିତ ସମୟରେ ଦଉଡ଼ା ଦଉଡ଼ି କରିବାକୁ ପଡେ । ପୁଣି ଗରମ ପୁରି ଯେଉଁଠି ଛଣା ହେଉଛି ସେଠାରେ କ୍ଷୁଧିତ ମଣିଷଙ୍କର ଭିଡ଼ । ଆପଣ ଅନ୍ୟମାନଙ୍କୁ ଠେଲି ହାତ ଲମ୍ବାଇ ସେ ପୁରି ତରକାରି ହାସଲ କରିବା କଷ୍ଟସାଧ୍ୟ । ପୁଣି ଆପଣଙ୍କ

ଡବାଟି ସେଠାରୁ ବହୁଦୂର । ଗାଡ଼ିଟି ଛାଡ଼ିଲେ ଆପଣ ବେଳୁବ ।

ରେଳ ଡବାଗୁଡ଼ିକ ଯାତ୍ରା ବାଟରେ ଝାଡୁ କରାଯାଏ ନାହିଁ । ଯଦିଓ ବଡ଼ ଷ୍ଟେସନମାନଙ୍କରେ ଏବଂ କେତେକ ନାମଜାଦା ଟ୍ରେନରେ ମଧ୍ୟ ଝାଡୁଦାର ଦରମା ନେଇ ରହିଛନ୍ତି । ଟ୍ରେନ ଡବା ଝାଡୁମାରି ପେଟ ପୋଷିବାକୁ କେତେକ ସାନ ପିଲା ଅଛନ୍ତି । ସେମାନେ ଟ୍ରେନ ଝାଡୁ ମାରି ଯାତ୍ରୀଙ୍କ ଠାରୁ ୧୦ ପଇସା, ୨୦ ପଇସା କି ୨୫ ପଇସା ନେଇ ମଝିରେ ମଝିରେ ଡବା ସଫା କରନ୍ତି । ସେମାନେ ନଥିଲେ ଗନ୍ତବ୍ୟରେ ପହଞ୍ଚିଲା ବେଳକୁ ପ୍ରତ୍ୟେକ ଡବାର ଚଟାଣରେ ଅଳିଆ ଗଦା ହୁଅନ୍ତା । ଶୀତତାପ ନିୟନ୍ତ୍ରିତ ଡବାରେ ଅପେକ୍ଷାକୃତ ଟିକିଏ ସୁବିଧା ଥାଏ ସଫା ସୁତୁରା ଦିଗରେ । କିନ୍ତୁ ଦ୍ୱିତୀୟ ଶ୍ରେଣୀ ଡବାରେ ସିଗାରେଟ, ବିଡ଼ି, ଠୁଙ୍ଗା, ପ୍ଲାଷ୍ଟିକ ଜରି, କଦଳୀ ଚୋପା, ଚିନାବାଦାମ ଚୋପା ଏବଂ ଆଉ ଯାହା କିଛି ପାସେଞ୍ଜରମାନେ ଖାଆନ୍ତି ତାହାର ଏକ ଇଞ୍ଚ ବହଳର ଅରମା ଗଦାହୁଏ । ଆମ ଦେଶ ଲୋକ ଅଧିକାଂଶ ଡବା ବାହାରକୁ ପକାଇ ଦେବାରେ ଅଭ୍ୟସ୍ତ ନୁହନ୍ତି । କ'ଣ କରାଯିବ ଏ ଦେଶର ଲୋକଙ୍କୁ ସଫା ସୁତୁରା ସଂସ୍କୃତିରେ ଭର୍ତ୍ତି କରିବାକୁ ? ପାଇଖାନାରେ ସେହିପରି ପରିସ୍ରା କରି ପାଣି ଢାଳିବାର ଅଭ୍ୟାସ ନାହିଁ । ଝାଡ଼ା ଫେରିସାରି ଝାଡ଼ାକୁ ଉପରୁ ପାଣି ଢାଳି ସଫା କରନ୍ତିନି । ଯେଉଁଠି ହାତ ଧୁଅନ୍ତି ସେଠାରେ ମଧ୍ୟ କାଗଜ, ସିଗାରେଟର ଶେଷ ଅଂଶ, ଟୁଥପେଷ୍ଟର ଡବା, ସାବୁନର ଉପର କାଗଜ ଆଦି ପକାଇ ଟ୍ୟାପ ତଳ କଣାଟି ବନ୍ଦ କରିଦିଅନ୍ତି । ଏହି ପ୍ରକାର ଲୋକଙ୍କ ସହିତ ସହଯାତ୍ରୀ ହୋଇ ଶେଷ ପର୍ଯ୍ୟନ୍ତ ଯିବାକୁ ପଡେ ।

ଶେଷରେ ଗାଡ଼ିଟି ଏତେ ଡେରିରେ ଆପଣଙ୍କ ଗନ୍ତବ୍ୟରେ ପହଞ୍ଚେ ଯେ ଅର୍ଦ୍ଧରାତ୍ରି କିମ୍ବା ଆହୁରି ଡେରି ହୋଇଯାଏ । ଷ୍ଟେସନରେ ନିଦ୍ରାଳୁ ହୋଇ ସକାଳ ପର୍ଯ୍ୟନ୍ତ ଡୋଳାଇବା ଛଡ଼ା ସହର ଭିତରକୁ ଯିବାର ସାହସ ସମସ୍ତଙ୍କର ହୁଏନାହିଁ । ଏହା ଭାରତରେ ରେଳଯାତ୍ରାର ଏକ ଛୋଟ ଝଲକମାତ୍ର ।

ତା ୨୪।୩।୧୯୯୬



# ନିପଟ ମୂର୍ଖ

ଟେଲିଭିଜନଟିକୁ ଇଂରାଜୀରେ ଉପହାସ କରି ଇଡିଅଟ୍ ବାକ୍ସ (Idiot Box) କୁହାଯାଏ । ଏହାର ତାତ୍ପର୍ଯ୍ୟ କ'ଣ ? କାହିଁକି ଏବଂ କିଏ ଏପରି ନାମକରଣ କଲା ତାହା ଗବେଷଣାସାପେକ୍ଷ । ଯଦି କେହି ପାଠକ ଏ ବିଷୟରେ ସବିଶେଷ ତଥ୍ୟ ଜାଣିଥାଆନ୍ତି ମତେ ଜଣାଇଲେ ଉପକୃତ ହେବି । ମୁଁ ଯେତେ ଅସୁମାରି କଥା ପୃଥିବୀର ଜାଣିନାହିଁ ସେଗୁଡ଼ିକ ମଧ୍ୟରେ ଏହା ଗୋଟିଏ ।

ଏ କଥାଟି କାହିଁକି ଆରମ୍ଭ ହେଲା କି ? ମୋର ଜଣେ ଶୁଭେଚ୍ଛୁ ବନ୍ଧୁ ଦିନେ କଥାଛଳରେ ମତେ ପରାମର୍ଶ ଦେଲେ ଯେ ମୁଁ ବଡ଼ ନିରସ (ପ୍ରକୃତରେ ସେ କର୍କଶ ଅର୍ଥରେ କହୁଥିଲେ) ଶୁଷ୍କ ଜୀବନଯାପନ କରୁଛି । ଏତେ ସିରିଅସ ସବୁ କଥାରେ ହେଲେ ଏହା ମନ ଉପରେ ଏବଂ ମୋ ପରି ଡାଏବେଟିସ ଓ ରକ୍ତଚାପ ରୋଗୀ ଦେହ ଉପରେ ମଧ୍ୟ ଷ୍ଟ୍ରେନ ଓ ଷ୍ଟ୍ରେସ ପଡୁଛି । ମୋ ଡାକ୍ତର ମଧ୍ୟ ବାରମ୍ବାର କହନ୍ତି କେବଳ ଡାଏଟ କଣ୍ଟ୍ରୋଲ ନୁହେଁ ମେଣ୍ଟାଲ ଷ୍ଟ୍ରେନ ମଧ୍ୟ କମାଇବାକୁ ହେବ । ସେମିତି ଦେଖିବାକୁ ଗଲେ ମୋ ଜାଣତରେ ମୋର କୌଣସି ମାନସିକ ଚାପ କିମ୍ବା ଚିନ୍ତାଗ୍ରସ୍ତ ଜୀବନ କିଛି ନାହିଁ । ତଥାପି ବ୍ଲଡ଼ ସୁଗାର ନର୍ମାଲ ଠାରୁ ଉପରେ ରହୁଛି । ତେଣୁ ମୋ ବନ୍ଧୁଙ୍କର ପରାମର୍ଶ ଯେ ମୁଁ ଅବସର ବିନୋଦନ କରିବା ଦରକାର । ମନୋରଞ୍ଜନ ଅର୍ଥାତ୍ ଏଣ୍ଟରଟେନ୍‌ମେଣ୍ଟ ପାଇଁ କିଛି ସମୟ କାଢ଼ିବା ଦରକାର । କିଛି ଭ୍ରମଣ ଅର୍ଥାତ୍ ଟ୍ରାଭଲ କରିବା ଉଚିତ । ମନଟା ହାଲକା ରଖିବା ଉଚିତ । ତେଣୁ ମନସ୍ଥ କଲି ଦିନେ ଘରେ ତ ଟି.ଭି.ଟା ଅଛି, ଟି.ଭି. ଆଗରେ ବସି ବିଭିନ୍ନ ଚାନେଲରେ ଆସୁଥିବା ହାଲକା ପ୍ରୋଗ୍ରାମଗୁଡ଼ା ଦେଖିବି । ପ୍ରାୟ ୧୫ ବର୍ଷରୁ ଅଧିକ ହେବ ସିନେମା ହଲ ଯାଇନି । ଭାବିଥିଲି ବାଣ୍ଡିଟ୍ କୁଇନ୍‌ଟା ହଲରେ ଯାଇ ଦେଖିବି । ଫିଲ୍ମଟା ଆସିଲା । ଚାଲି ବି ଗଲା । ସମୟ ହେଲାନି । ଆଉ ଗୋଟାଏ କ'ଣ ଫିଲ୍ମ ମଧ୍ୟ ବର୍ଷେ ତଳେ ଭାବିଥିଲି ସିନେମା ହଲରେ ଯାଇ ଦେଖିବି । ଅନେକ ଲୋକ ପ୍ରଶଂସା କରୁଥିଲେ । କିନ୍ତୁ ହେଲାନି । ଏଇ ତ ଜୀବନ ! ମୁଁ ଅନୁଭବ କରିପାରେନା ଯେ ମୋର କିଛି ଏହିପରି ଏଣ୍ଟରଟେନ୍‌ମେଣ୍ଟ ଦରକାର । ସିରିଅସ୍ ମାଇଣ୍ଡ ନେଇ ତ କେବେ ଦରକାର ପଡ଼ିନି । ଉପଭୋଗ କରିବାର କୌଣସି ଅଭାବବୋଧ ତ ଆସିନାହିଁ । ତେଣୁ ଭାବିଲି ଆଚ୍ଛା ଟି.ଭି. ଦେଖାଯାଉ ।

ଆମ ଟି.ଭି.ରେ ଦୂରଦର୍ଶନ ୧, ଦୂରଦର୍ଶନ-୨, ଷ୍ଟାର ଟି.ଭି., ଷ୍ଟାର ପ୍ଲସ, ପ୍ରାଇମ ସ୍ପୋର୍ଟ୍ସ, ଜି.ଟି.ଭି.ର ସବୁ ପ୍ରକାର କାର୍ଯ୍ୟକ୍ରମ, ଏ.ଟି.ଏନ. ଆଦି ଅଛି । ଦିନେ ତେଣୁ ଯାଇ ସନ୍ଧ୍ୟାବେଳେ ଜୀବନଟାକୁ ହାଲକା କରିବାକୁ ଡ୍ରଇଂ ରୁମ୍‌ରେ ବସିଗଲି । ଅବଶ୍ୟ ଏହି କୋଠରୀର ନାମକରଣ କିଏ ଡ୍ରଇଂରୁମ୍

କାହିଁକି କରିଛି ମୁଁ ଜାଣିନି । ଅନେକ ଦୃଷ୍ଟିରୁ ମୁଁ ନିପଟ ମଫସଲି । ମଫସଲି ରହିବାରେ ମୋର ବିଶେଷ କିଛି ଅସୁବିଧା ହୋଇନି ଜୀବନରେ । ବରଂ ହାଇଫାଇ ସୋସାଇଟିରୁ ଦୂରରେ ରହିବାରେ ମୋର ଅନେକ ସୁବିଧା ହୋଇଛି । ତାହା ବର୍ଣ୍ଣନା କରିବା ଜାଗା ଇଏ ନୁହେଁ । ମୁଁ ଭାବେ ଆମ ଦୂରଦର୍ଶନର କାର୍ଯ୍ୟକ୍ରମଗୁଡ଼ାକ ମୋ ପାଇଁ ଭଲ । କାରଣ ଅପେକ୍ଷାକୃତ ଅନ୍ୟ ପ୍ରୋଗ୍ରାମ ଠାରୁ ହେଙ୍ଗେଡାମି ଏଥିରେ କମ୍ । ଆଗେ ମୁଁ ସମ୍ବାଦ ସମୟଟାକୁ ବ୍ୟବହାର କରୁଥିଲି । ସେତେବେଳକୁ ଡି.ଡି.-୧ କି ଡି.ଡି-୨ ଆସିନଥିଲା । ମେଟ୍ରୋ ପ୍ରୋଗ୍ରାମ ଏହି ଛୋଟ ସହରଗୁଡ଼ାକୁ ଆସୁନଥିଲା । ଆମ କେ.ପି. ସିଂହଦେଓ ମନ୍ତ୍ରୀ ହେଲାପରେ ସର୍ବଭାରତୀୟ ଏବଂ ରାଜ୍ୟସ୍ତରୀୟ କାର୍ଯ୍ୟକ୍ରମରେ ବହୁ ନୂଆ ନୂଆ କଥା ହୋଇଛି । ପ୍ରସାରଣର ପ୍ରସାର ଅନେକ ଦୃଷ୍ଟିରୁ ବ୍ୟାପକତା ଲାଭ କରିଛି । ଷ୍ଟାର ଟି.ଭି. ଓ ଜି. ଟି.ଭି. ସହିତ ପ୍ରତିଯୋଗିତା କରିବାକୁ ଦୂରଦର୍ଶନ ସମର୍ଥ ହୋଇଛି ।

ସେଦିନ ଟି.ଭି. ସାମ୍ନାରେ ବସିଲା ପରେ କ'ଣ ଗୋଟାଏ ଧାରାବାହିକ ଦେଖୁଥିଲି । ପିଲାଦିନର ଗାଁରେ ବାଇସ୍କୋପ କଥା ମନେ ପଡୁଥିଲା । ସେ ଆଜିକା ପିଲାଙ୍କ ପାଇଁ ସ୍ୱପ୍ନ । ଗୋଟାଏ ଟିଣ ବାକ୍ସ ଭିତରେ ସେ ଦୃଶ୍ୟଗୁଡ଼ାକ ଥାଏ । ବାଇସ୍କୋପବାଲା ପଇସାଏ ଅଧଲାଏ (ଟଙ୍କାକ ୬୪ ପଇସା । ପଇସାର ଅଧା ହେଲା ଅଧଲା ଏବଂ ତିନିଭାଗରୁ ଭାଗେ ହେଲା ପାହୁଲା) ନେଇ ସେ ଟିଣବାକ୍ସରେ ଥିବା ଗୋଲ କଣାରେ ଥିବା କାଚବାଟେ ଦୃଶ୍ୟ ଦେଖାଏ । ବାକ୍ସ ଉପରପଟେ ଗୋଟାଏ ଛୋଟ ହ୍ୟାଣ୍ଡଲକୁ ଲୋକଟା ଘୂରାଏ । ଏହି ରାମ ଦେଖ, ସୀତା ଦେଖ, ହନୁମାନ ଦେଖ କହି ଡାକ ମାରୁଥାଏ ଏବଂ ଆମେ ତାକୁ ଦେଖି ଖୁସି ହୋଇଯାଉ । ଅଳ୍ପ ସମୟରେ ସରିଗଲେ ମଧ ମନଟା ଆନନ୍ଦରେ ଭରିଯାଏ । ସେ ବାଇସ୍କୋପ ଦେଖିବାରେ ଯେଉଁ ଅପାର ଆନନ୍ଦ ଆଉ କ'ଣ ଜୀବନରେ ଆସିବ ? ଆଜିକା ପିଲା ବାଇସ୍କୋପ୍ ଦେଖିନାହାନ୍ତି । ଦେଖିଲେ ମୁହଁ ମୋଡ଼ିବେ ଅବଶ୍ୟ । ସେମାନେ ପିଲା ବେଳରୁ ଯାହା ସବୁ ଦେଖିଲେଣି ସେ ବାଇସ୍କୋପଟା କ'ଣ ତାଙ୍କ ପାଇଁ ! ହଁ ଧାରାବାହିକ ଦେଖୁଥିଲି ଟେଲିଭିଜନରେ । ଏତେ ଶବ୍ଦ ହେଉଥାଏ ଯେ ମୋର ଈଷତ କାଲ କାନଟା ବି ତାବ୍‌ଦା । ଶବ୍ଦର ଜୋରଟା କମାଇଦେଲେ ଅନ୍ୟମାନଙ୍କ ପାଇଁ ଉପଭୋଗ୍ୟ ହେବନାହିଁ । ସମସ୍ତ ଦର୍ଶକ ତ ରସ ପାଇବା କଥା । କିନ୍ତୁ ପ୍ରତି ଦୁଇ ମିନିଟରେ ବିଜ୍ଞାପନର ସୁଅ ଛୁଟୁଥାଏ । ଯେଉଁମାନେ ତାଙ୍କ ଜିନିଷର ବିଜ୍ଞାପନ ଚକାଚକ ନାରୀ ଓ ପୁରୁଷଙ୍କୁ ନେଇ ଦୂରଦର୍ଶନରେ ଦେଖିବାକୁ ଦେଉଛନ୍ତି ତାଙ୍କ ପଇସାରେ ଘରେ ବସି ଆମେ ମାଗଣାରେ ଧାରାବାହିକ ସବୁ ଦେଖୁଛୁ । ଅନେକ ସମୟରେ ଧାରାବାହିକ ଠାରୁ ବିଜ୍ଞାପନଗୁଡ଼ା ଅଧିକ ମନୋମୁଗ୍ଧକର ବୋଲି ଜଣାପଡ଼େ । ସିରିଅସ୍ ମନ ନେଇ ସେ ଧାରାବାହିକ ସବୁ ଦେଖିବା ଠାରୁ ଯଦି ଖାଲି ଧାରାବାହିକ ଢାଞ୍ଚାରେ କେବଳ ବିଜ୍ଞାପନଗୁଡ଼ାକ ଦେଖାଯାନ୍ତା, ତେବେ ମନ ବେଶୀ ହାଲକା ହୁଅନ୍ତା ବୋଧେ । ସବୁଠୁ ବେଶୀ ବୋରିଂ ଏବଂ ବିରକ୍ତିକର ହେଲା ଆସନ୍ତା ଶନିବାର ଦିନ କ'ଣ ଫିଚର ଫିଲ୍ମ ପ୍ରଦର୍ଶିତ ହେବ ତା'ର ବିଜ୍ଞାପନ । ସେ ଫିଚର ଫିଲ୍ମର କେତେକ ଅଂଶ ବାରମ୍ବାର ଦେଖାଯାଉଥାଏ । ଦୁଇଟି ଧାରାବାହିକ ଦେଖିବା ଭିତରେ ଅନ୍ୟାନ୍ୟ ବିଜ୍ଞାପନ ସହିତ ଶନିବାରକୁ ଥିବା ଫିଚର ଫିଲ୍ମର ସେହି କଟା କଟା ଅଂଶ

କେତେଥର ଦେଖାଗଲା ମୁଁ ଗଣି ପାରିଲିନି । ଫିଚର ଫିଲ୍ମର ଏହି ବିଜ୍ଞାପନର ଦୁଇଟି ଦିଗ ରହିଛି । ଧାରାବାହିକ ଏହି ବିଜ୍ଞାପନ ଶନିବାର ପର୍ଯ୍ୟନ୍ତ ପ୍ରତିଦିନ ଦେଖିବାକୁ ମିଳିବ । ହୁଏତ ଟି.ଭି.ର ନିଶାଗ୍ରସ୍ତ ଆସକ୍ତ ଦର୍ଶକ ସେଦିନ ପାଇଁ ସପ୍ତାହକ ଯାକ ସଜବାଜ ହୋଇ ରହିବେ । କିନ୍ତୁ ଅସଲ କଥା ଏହି ଫିଲ୍ମ ଦେଖାଇବାକୁ ଯେଉଁ ବିଜ୍ଞାପନଦାତାମାନେ ଅମାପ ପଇସା ଖର୍ଚ୍ଚ କରିବେ ସେମାନଙ୍କୁ ମଧ୍ୟ ଆକର୍ଷିତ କରିବା ହେଲା ପ୍ରଧାନ ଲକ୍ଷ୍ୟ । ଯେଉଁମାନେ ଦୂରଦର୍ଶନର (କିମ୍ବା ଅନ୍ୟ ଚାନେଲ) କାର୍ଯ୍ୟକ୍ରମଗୁଡ଼ାକ ମନିଟର କରୁଛନ୍ତି ଯଦି ସେମାନେ କିମ୍ବା ସେମାନଙ୍କର ପରିବାରବର୍ଗ ଘରେ ବସି ବସି ଏଗୁଡ଼ାକ ଦେଖୁଥିବେ ସେମାନେ କ'ଣ ବିରକ୍ତ ହେଉନଥିବେ ? ଶୁଣିଥିଲି ଏହି ବିଜ୍ଞାପନ ପାଇଁ ଅନ୍ତତଃ ୧୦ ସେକେଣ୍ଡକୁ ମାତ୍ର ଅଶି ହଜାର ଟଙ୍କା ବିଜ୍ଞାପନଦାତାଙ୍କୁ ଦେବାକୁ ପଡେ । ପ୍ରତ୍ୟେକ ବିଜ୍ଞାପନ ଗୋଟାଏ ଗୋଟାଏ ଧାରାବାହିକରେ ପାଞ୍ଚ ସାତଥର ଅନ୍ତତଃ ଦେଖିବାକୁ ମିଳେ । ତେବେ ବିଜ୍ଞାପନଦାତା ଦିନକୁ କେତେ ଲକ୍ଷ ଟଙ୍କା ଖର୍ଚ୍ଚ କରୁଛନ୍ତି । ଏ ଟଙ୍କା ତ ସେ ଜିନିଷ କିଣିବାବାଲାକୁ ନିଶ୍ଚୟ ଦେବାକୁ ପଡୁଛି । ଆମେ ଏହି ମାଗଣା ମନୋରଞ୍ଜନ କରୁଛୁ । ଆଖି ଓ କାନ ସହିତ ମନଟିକୁ ମଧ୍ୟ କ୍ଷତିଗ୍ରସ୍ତ କରୁଛୁ ।

ଇଡିଅଟ୍ ବାକ୍ସଟିକୁ ବ୍ୟବହାର କରି ବ୍ୟବସାୟୀ, ଶିଳ୍ପପତି, ଦୂରଦର୍ଶନ ଓ ଅନ୍ୟାନ୍ୟ ଟି.ଭି. ଚାନେଲର ମାଲିକମାନେ, ପ୍ରୋଗ୍ରାମ ପ୍ରଯୋଜକମାନେ, ନଟନଟୀ, ନିର୍ଦ୍ଦେଶକ ଓ ଅନ୍ୟମାନେ କେତେ ପଇସା ଆମଠାରୁ ରୋଜଗାର କରୁଛନ୍ତି ମୁଁ ଏହିସବୁ ଭାବୁଥିଲି ଗୁରୁତ୍ୱର ସହିତ । ଅବସର ବିନୋଦନ, ମନୋରଞ୍ଜନ ଏବଂ ମନକୁ ହାଲକା କରିବାର ଯେଉଁ ଚେଷ୍ଟା ମୁଁ କରୁଥିଲି ଅଜାଣତରେ ଏସବୁ ମୋ ମନ ଉପରେ ପ୍ରଚଣ୍ଡ ଷ୍ଟ୍ରେନ ସୃଷ୍ଟି କରୁଥିଲା ବୋଲି ଉପଲବ୍ଧି କଲାବେଳକୁ ମୋର ନିର୍ବୋଧତା ମୁଁ ବୁଝିପାରିଲି । ଯଥାଶୀଘ୍ର ସେଠାରୁ ଉଠିଯିବା ଛଡ଼ା ମୋର ବିକଳ୍ପ ନଥିଲା ।

୮।୭।୪।୧୯୯୬



# ଛାଡ଼ପତ୍ର

'ଛାଡ଼ପତ୍ର' ଶବ୍ଦଟିର ଉଚ୍ଚାରଣ କଲେ ବୁଝାଯାଏ ପତିପତ୍ନୀଙ୍କ ମଧ୍ୟରେ ଝଗଡ଼ାର ଶେଷ ପରିଣତି । ପତି-ପତ୍ନୀ ଯେ ଛାଡ଼ପତ୍ରର ଆଶ୍ରୟ ନେବାକୁ ପରସ୍ପରକୁ ଆବୋରି ବସିଥାନ୍ତି, ତାହା ନୁହେଁ । ବିବାହ ପୂର୍ବରୁ ଯେଉଁମାନେ ପରସ୍ପରକୁ ଭଲ ପାଇଥାନ୍ତି, ସେମାନେ ପ୍ରେମପତ୍ର ଲେଖି ଲେଖି ଥକି ପଡ଼ିଥାନ୍ତି । ବିବାହ ପରେ ପ୍ରେମପତ୍ର କାଳକ୍ରମେ ପାଠପଢ଼ିଲା ବେଳର ସାପ୍ତାହିକ ପାଠ୍ୟକ୍ରମ ରୁଟିନ୍ ପରି ହୋଇଯାଏ । ପିଲାଛୁଆ ହେଲାପରେ ପତ୍ରଗୁଡ଼ିକ ସାଂସାରିକ ବିଳାପର ହାଟସଉଦା ଖାତା ପରି ହୋଇଯାଏ । ପତ୍ର ଲିଖନ ପାଇଁ ବାଧତା ନଥିଲେ ସ୍ୱତଃସ୍ଫୁର୍ତ୍ତ ପତ୍ର ଲେଖିବା ପାଇଁ ପତି ଓ ପତ୍ନୀଙ୍କ ମନରେ ସରାଗ ନଥାଏ । ଜୀବନଟା ଘସରା ହୋଇଯାଇ ଖାପଛଡ଼ା ହୋଇଗଲା ପରେ ଆକର୍ଷଣ ଦିହସୁହା ହୋଇଯାଏ । ଘରସଂସାର ନେଇ ଝଗଡ଼ା ହୁଏ । ରୁଷାରୁଷି ଚାଲେ । ଭାରତୀୟ ଜୀବନର ବୈବାହିକ ସଂସ୍କୃତି ଏପରି ଯେ ଝଗଡ଼ାଝାଟି, ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଭାରତ-ପାକିସ୍ତାନ ଯୁଦ୍ଧ ସ୍ତରକୁ ଯାଉଥିଲେ ମଧ୍ୟ ଶାନ୍ତି ଚୁକ୍ତି କିମ୍ବା ସନ୍ଧିପତ୍ର ସ୍ୱାକ୍ଷରିତ ହୁଏନାହିଁ । ଅର୍ଥାତ୍ ଅଘୋଷିତ ଯୁଦ୍ଧ ଚାଲିଥାଏ । ଲଢ଼େଇ କେତେବେଳେ ବନ୍ଦ ହୁଏ ଏବଂ ହାସ୍ୟରସର ଗୋଟାଏ ଗୋଟାଏ ଢୁଆ ମଧ୍ୟ ଆସୁଥାଏ । କିନ୍ତୁ ହଠାତ୍ ବୋମାମାଡ଼ ଓ କମାଣ ଗର୍ଜନ ଘଟିଯାଏ । ମନେହୁଏ ଯେ ଏ ଗାଡ଼ି ଆଉ ଟାଣି ହେବନାହିଁ । କିନ୍ତୁ ବାସ୍ତବରେ ଗାଡ଼ି କେଁ କଟର କରି ଚାଲିଥାଏ । ଏହି ପ୍ରକାର ଏକ ଜୀବନ ଅଭ୍ୟାସରେ ପଡ଼ିଯାଏ । ତାହାରି ଆଡୁ ବିବାହ ବନ୍ଧନ ଛିଡ଼ାଇଦେବା କଥା ଉଠେନା ।

କିନ୍ତୁ ଏସବୁ ସହିତ ଯଦି ଆର୍ଥିକ ଅବସ୍ଥା ଅତି ସ୍ୱଚ୍ଛଳ ଥାଏ, ତେବେ ବନ୍ଧନଟି କେତେକ ପରିସ୍ଥିତିରେ ଭାଙ୍ଗିବା ଅବସ୍ଥାକୁ ଆସିଯାଏ । ଯଦି ସ୍ତ୍ରୀଙ୍କର ଶିକ୍ଷାଗତ ଯୋଗ୍ୟତା ଏବଂ ଚାକିରି କରି ସ୍ୱାଧୀନ ଆୟ କରିବାର ସାମର୍ଥ୍ୟ ଥାଏ, ତେବେ ସ୍ୱାମୀମାନଙ୍କର ହୀନମନ୍ୟତା (Inferiority Complex) କିଛିଟା ଜନ୍ମେ । କାରଣ ପୁରୁଷଟିର ଅହଂକାର ରୋଜଗାର । ରୋଜଗାର ବ୍ୟତୀତ ଘର ଭିତରେ ଅଧିକାଂଶ ସ୍ୱାମୀ କୌଣସି କାମ କରିବାକୁ ପ୍ରସ୍ତୁତ ହୁଅନ୍ତି ନାହିଁ । ତେଣୁ ରୋଜଗାର କରିବା ସହିତ ସନ୍ତାନ ଲାଳନପାଳନ, ରୋଷେଇବାସ, ବଜାର ସଉଦାର ଦାୟିତ୍ୱ ଏବଂ ଘର ଚଳାଇବାର ଦାୟିତ୍ୱ ପୂରାପୂରି ପତ୍ନୀଙ୍କ ଉପରେ ଛାଡ଼ି ଦିଆଯାଏ । ଅବଶ୍ୟ ଏହା ସହରାଞ୍ଚଳର ଆଧୁନିକ ଦମ୍ପତିଙ୍କ ପାଇଁ ପ୍ରଯୁଜ୍ୟ । କିନ୍ତୁ ଗାଁ ଗହଳର ପତ୍ନୀମାନେ ତ ଏବେ ମଧ୍ୟ ସୂର୍ଯ୍ୟକିରଣ ପାଇବାରୁ ବଞ୍ଚିତ । ସହରୀ ପତି-ପତ୍ନୀଙ୍କ ମଧ୍ୟରେ ଫଟାଫଟି ପିଟାପିଟି ସମ୍ପର୍କ ଯେତେବେଳେ ବଢ଼ିଯାଏ, ପ୍ରଥମେ ଅଲଗା ରହିବା ବ୍ୟବସ୍ଥା ହୁଏ । ପୁଣି ଆଇନଗତ ବ୍ୟବଧାନ (Judicial Separation) ପାଇଁ କଚେରୀରେ ଦରଖାସ୍ତ ଦିଆଯାଏ । ଆପୋଷ ଛାଡ଼ପତ୍ର ନହେଲେ ପିଲାଙ୍କ ପାଇଁ ଝଗଡ଼ା, ପିଲାଙ୍କ ପାଠପଢ଼ା ଏବଂ ଭରଣପୋଷଣ ପାଇଁ ଖର୍ଚ୍ଚ ଦାବି ଇତ୍ୟାଦିରେ ତିକ୍ତତା ବଢ଼ିଯାଏ । ଶେଷରେ ଏକ ଅପରକୁ ଛାଡ଼ିବା ପାଇଁ ଯେଉଁ ଲେଖାପଢ଼ା ବିଚାରାଳୟ ମାଧ୍ୟମରେ ହୁଏ, ତାହା ଛାଡ଼ପତ୍ର

ଆଖ୍ୟା ପାଏ । ଏହି ଲେଖାପଢ଼ା ଛାଡ଼ପତ୍ରର ଯଥେଷ୍ଟ ପୂର୍ବରୁ ମନ ଓ ଦେହଛାଡ଼ ହୋଇଯାଇଥାଏ । ଆଇନର ନିରସ ଗଣ୍ଡି ଭିତରେ କେତେଗୁଡ଼ା ଠେଲାପେଲା ହୋଇ ଶେଷରେ ଅଲଗା ହେବାକୁ ପଡେ । କିନ୍ତୁ ଏପରି ବହୁ ଜୀବନ ଅଛି, ଯେଉଁଠି ଗୋଟାଏ ଛାତ ତଳେ ପତି-ପତ୍ନୀ ରହି ମଧ ଛଡ଼ାଛଡ଼ି ହୋଇ ରହନ୍ତି । ଦେହରେ ଏବଂ ମନରେ । ବାହାରକୁ ଆନୁଷ୍ଠାନିକ ଭାବରେ ଛାଡ଼ମାଡ଼ର ଘୋଷଣା କରାଯାଏନା । କିନ୍ତୁ ମନରେ ଦେହରେ ଦୂରତ୍ୱ ବହୁତ । ଏପରିକି ଦେହଛଡ଼ା ନହୋଇ ମଧ ମନରେ ଛାଡ଼ ବହୁତ ଅଧିକ ହୋଇଯାଇଥାଏ ।

ସବୁଠାରୁ ଅଧିକ ଝିଙ୍ଗଟ ଉପୁଜେ ଯଦି ପତି ଓ ପତ୍ନୀଙ୍କ ମଧ୍ୟରୁ ଉଭୟ କିମ୍ବା କେହି ଜଣେ ଅନ୍ୟ ସ୍ତ୍ରୀ କିମ୍ବା ପୁରୁଷଙ୍କ ଆକର୍ଷଣରେ ପଡ଼ିଯାଆନ୍ତି । ଏହି ପ୍ରକାର ଆଧୁନିକ, ପାଠପଢୁଆ ଏବଂ ରୋଜଗାର କରୁଥିବା ପତି-ପତ୍ନୀଙ୍କ ମଧ୍ୟରେ ସହାବସ୍ଥାନର ଗୁରୁଭାର ନିୟମିତ ତିକ୍ତତା ନୀରବ ଯୁଦ୍ଧରୁ ବିସ୍ଫୋରକ ପରିସ୍ଥିତିରେ ପହଞ୍ଚିଯାଏ । ଲୋକଲଜ୍ଜା, ସନ୍ତାନବାଧ୍ୟତା ଏବଂ ପାରିବାରିକ ସମ୍ଭ୍ରମ ଦୃଷ୍ଟିରୁ କେତେକ ସମୟ ପାଇଁ ଚପାଚପି ହୋଇ ଘଟଣାଟି ଆଢୁଆଳରେ ରହିଥାଏ । ଯଦିଓ ବନ୍ଧୁବାନ୍ଧବ ଏବଂ ପଡୋଶୀଙ୍କ ମଧ୍ୟରୁ ଅନେକ ଚୁପ୍‌ଚାପ୍ ଏ କଥା ଜାଣିବାକୁ ପାଆନ୍ତି । ଦେହ ମନର ଆକର୍ଷଣ ପରସ୍ପର ଠାରୁ ଦୂରେଇ ଯାଇ ଅନ୍ୟ ସ୍ଥାନରେ ଲେପି ହୋଇଗଲେ ପୁଣି ସ୍ଥିତାବସ୍ଥା ଫେରାଇ ଆଣିବା ସହଜ ହୁଏନାହିଁ । ଯେଉଁଠି ଏହି ପ୍ରକାର ପରିସ୍ଥିତିର ମରାମତ ହୋଇଯାଏ, ଆପାତତଃ ଶାନ୍ତି ବିରାଜିଲେ ମଧ ମନରେ ଖଟକା ରହିଯାଏ ଯାହା ଲିଭିବା କଷ୍ଟକର । ଜୀବନଟା ଗୋଟାଏ ରେଳ ଧାରଣାରେ ଗଢ଼ିଲା ପରି ଗଡ଼ିଚାଲେ ।

ଏ ତ ଗଲା ଚିରାଚରିତ ଛାଡ଼ପତ୍ରର ପୁରୁଣା କଥା । ଏହା ବାହାରେ ସମାଜର ଓ ଜୀବନର ବିଭିନ୍ନ ପ୍ରାନ୍ତରେ ଏପରି ଅନେକ ଜିନିଷ ଘଟେ, ଯାହାକୁ ଛାଡ଼ପତ୍ରର ଆଖ୍ୟା ଦେଲେ ବିଶେଷ କିଛି ଭୁଲ ହେବନାହିଁ । ଏଥିରେ ରାଜନୈତିକ ଜୀବନରେ ବହୁଳ ଭାବରେ ଘଟୁଥିବା ଘଟଣାଗୁଡ଼ିକ ଅନ୍ତର୍ଭୁକ୍ତ କରାଯାଇପାରେ । ଜଣେ ନେତା କୌଣସି କାରଣରୁ (ଅଧିକାଂଶ କ୍ଷେତ୍ରରେ ଦେଶର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କିମ୍ବା ନୀତି ଆଦର୍ଶର ଖିଲାପ ଘଟିବାରୁ) ଗୋଟିଏ ଦଳ ଛାଡ଼ି ଅନ୍ୟ ଦଳରେ ଯୋଗଦେବା କିମ୍ବା ଗୋଟିଏ ଦଳରୁ ଭାଙ୍ଗିଯାଇ ଗୋଟିଏ ଦଳ ଗଢ଼ିବା ଛାଡ଼ପତ୍ର ବୋଲି କୁହାଯାଇପାରେ । ସେହିପରି 'ଦଳବିରୋଧୀ' କାର୍ଯ୍ୟକଳାପ ଯୋଗୁ ସଭ୍ୟ ଓ ନେତାମାନଙ୍କୁ ସସ୍‌ପେଣ୍ଡ ଓ ବହିଷ୍କାର କରାଯିବାକୁ ମଧ 'ଛାଡ଼ପତ୍ର' କହିଲେ କିଛି ଭୁଲ ହେବନାହିଁ । କେତେକ ରାଜନୈତିକ ନେତା ଏହି ଦୃଷ୍ଟିକୋଣରୁ ବହୁବାର ବିବାହ ଏବଂ ବହୁବାର ଛାଡ଼ପତ୍ର ଦେଉଥିବାର ଦୃଷ୍ଟାନ୍ତ କିଛି କମ୍ ନୁହେଁ । ନେତା ଓ ନେତାଙ୍କ ମଧ୍ୟରେ, ଦଳ ଓ ନେତାଙ୍କ ମଧ୍ୟରେ 'ବିବାହ ବନ୍ଧନ' ଓ 'ଛାଡ଼ପତ୍ର'ର ଅଭିନୟ ସବୁ ସମୟରେ ଦେଖିବାକୁ ମିଳୁଛି । ଜଣେ କଠୋର ସମାଜବାଦୀ କିମ୍ବା ମାର୍କସବାଦୀ ନେତା ନିଜର 'ଆଦର୍ଶ' ଛାଡ଼ି ବିପରୀତ ରାଜନୈତିକ ଦର୍ଶନରେ ଉଦ୍‌ବୁଦ୍ଧ ହୋଇ ସ୍ଥାନ ପରିବର୍ତ୍ତନ କରିପାରୁଛନ୍ତି ଅତି ସହଜରେ । ଯେଉଁମାନେ ଅତି ଧର୍ମନିରପେକ୍ଷତାରେ ଦୀକ୍ଷିତ ଭାବରେ ନାମ ଅର୍ଜନ କରିଛନ୍ତି, ସେମାନେ ହଠାତ୍ ଏକ ଆଳ ଦେଖାଇ କଟର ସାମ୍ପ୍ରଦାୟିକ ଦଳ ମଧ୍ୟରେ ଛାତି ଫୁଲାଇ ଯୋଗ ଦିଅନ୍ତି । ଏ ପ୍ରକାର ଛାଡ଼ପତ୍ରର ଦୃଷ୍ଟାନ୍ତ ଶହ ଶହ ରହିଛି ।

ଗଛଗୁଡ଼ିକ ପ୍ରତିବର୍ଷ ବସନ୍ତ ଋତୁରେ ପତ୍ରଗୁଡ଼ିକ ଛାଡ଼ନ୍ତି । ଗଛ ଆଉ ପତ୍ର ଭିତରେ ଯେଉଁ ଅଭେଦ ପ୍ରୀତି । ପତ୍ର ବିନା ଗଛର ସୌନ୍ଦର୍ଯ୍ୟ କ'ଣ ? କିନ୍ତୁ କଅଁଳିଆ ପତ୍ର କଲରା ହୋଇ ସବୁଜ ହୁଏ । ସବୁଜ ପତ୍ର

ଅନେକ ସମୟରେ ଶୁଖିଯାଇ ପାଉଁଶିଆ କି ବାଦାମୀ କି ସାମାନ୍ୟ କଳା ହୋଇଯାଏ । ଗଛ ଆଉ ପତ୍ର ମଧ୍ୟରେ ଛାଡ଼ପତ୍ରର ଏହି ନିୟମିତ ବିଚ୍ଛେଦ ନାଟକ ବର୍ଷ ବର୍ଷ ଧରି ଘଟି ଚାଲିଥାଏ । ଆମେ ଗଛ ଆଉ ପତ୍ରର ଏହି ମିଳନ ଓ ବିଚ୍ଛେଦ ସମ୍ପର୍କରେ କେବେ ଭାବୁ ?

ଏହି ଧାରାରେ ମଣିଷ ଜୀବିକାର ପଛାକୁ ଦିନେ ଅବସର ନିଏ । ପ୍ରତ୍ୟେକ ମଣିଷର ଜୀବିକାର ନିଯୁକ୍ତି କିମ୍ବା ନିଯୋଜନରୁ ବିଦାୟ ନେବାର ସମୟ ଆସେ । ପ୍ରତ୍ୟେକ ଲୋକର ଉପାର୍ଜନର ଉପାଦାନ ସହିତ ଯାହା ସମ୍ପର୍କ, ତାହା ନଥିଲେ ତାହାର ବୈବାହିକ ସମ୍ପର୍କ, ପାରିବାରିକ ସମ୍ପର୍କର ସ୍ଥିତି କ'ଣ ହୋଇଥାନ୍ତା ? ସେହିପରି ଚାକିରିରେ କୌଣସି ଖିଲାପ ଘଟିଲେ ସସ୍‌ପେନ୍‌ସନ କି ଡିସ୍‌ମିସାଲ ମଧ୍ୟ ହୁଏ । ବୈବାହିକ ଜୀବନର ଛାଡ଼ପତ୍ର ଯେତିକି ତିକ୍ତ, ଏହି ପ୍ରକାର ବରଖାସ୍ତ ପ୍ରକ୍ରିୟା କ'ଣ କମ୍ ଦୁଃଖଦାୟକ ? ଏହାକୁ ଯଦି ଜୀବିକାର ଛାଡ଼ପତ୍ର କୁହାଯାଏ, କ'ଣ ବିଶେଷ ଭୁଲ ହେବ ? ଯେଉଁମାନେ ପାଠ ପଢ଼ନ୍ତି, ସେମାନଙ୍କୁ ଦିନେ ସ୍କୁଲ, କଲେଜ କି ବିଶ୍ୱବିଦ୍ୟାଳୟ ଛାଡ଼ିବାକୁ ପଡ଼େ । ଶିକ୍ଷାୟତନ, ଶିକ୍ଷା ଓ ଛାତ୍ର ଏବଂ ତାହା ସହିତ ଶିକ୍ଷକ, ଏମାନଙ୍କ ଠାରୁ ମଧ୍ୟ ବିଦାୟ ନେବାକୁ ସମୟ ଆସେ । ଏଥିରେ ତିକ୍ତତା ନଥାଇପାରେ । କିନ୍ତୁ ସବୁଦିନ ପାଇଁ ଯେଉଁଠାରେ ମଣିଷ 'ମଣିଷ' ହେବାର ସୁଯୋଗ ପାଇଲା, ତାହା ଛାଡ଼ିବାକୁ କ'ଣ ମନରେ ଭାବପ୍ରବଣତାର କୌଣସି ଉଦାସୀ ଭାବ ଆସେନା ? କ୍ଷମତାରେ ଥିବା ଲୋକେ ଯେତେବେଳେ ଗାଦୀ ଛାଡ଼ିବାର ସମୟ ଆସେ, ଦାମ୍ପତ୍ୟ ଛାଡ଼ପତ୍ରରୁ କେତେଗୁଣ ଅଧିକ ଯନ୍ତ୍ରଣା ପାଆନ୍ତି, ତାହା କେବଳ ସେହିମାନେ ହିଁ କହିପାରିବେ । କ୍ଷମତା ହିଁ ସେମାନଙ୍କ ପତି ଓ ପତ୍ନୀ । ସେମାନଙ୍କ ଠାରୁ ପତି କିମ୍ବା ପତ୍ନୀଙ୍କୁ ଛଡ଼ାଇ ନିଆଯାଏ । କି କଷ୍ଟ !



# ଢୋଲ

ଢୋଲଟି ଭାରତୀୟ ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ପ୍ରିୟ ପଦାର୍ଥ । ଓଡିଶାର ସାମଗ୍ରିକ ଜୀବନରେ ଢୋଲ ଏକ ଅପରିହାର୍ଯ୍ୟ ଅଙ୍ଗ । ବହୁ ପୁରୁଣା କାଳରୁ ପ୍ରାୟ ସମସ୍ତ ଶୁଭ କାର୍ଯ୍ୟରେ ଢୋଲର ଆବଶ୍ୟକତା ରହିଛି । ଅବଶ୍ୟ ଏହାକୁ କେହି ସମ୍ମାନ ଦିଅନ୍ତି ନାହିଁ ।

ପୂର୍ବେ ଯେତେବେଳେ ବ୍ୟାଣ୍ଡପାର୍ଟିର ପ୍ରଚଳନ ହୋଇନଥିଲା ଢୋଲ, ନାଗରାସ ତେଲିଙ୍ଗିବାଜା ସହିତ ମହୁରୀ ହିଁ ବିବାହ କିମ୍ବା ମଙ୍ଗଳ ଉତ୍ସବରେ ଶୁଭସୂଚକ ଥିଲା । ବ୍ୟାଣ୍ଡ ପାର୍ଟିରେ କ୍ରମବର୍ଦ୍ଧମାନ ସଂଗୀତ ବାଦ୍ୟଯନ୍ତ୍ରର ପ୍ରଚଳନ ଫଳରେ ଏହିସବୁ ବାଦ୍ୟଯନ୍ତ୍ର ଏବେ ପଛକୁ ପଡିଗଲାଣି । ଏପରିକି ଗାଁ ମାନଙ୍କରେ ମଧ୍ୟ ଢୋଲ ବଦଳରେ ବ୍ୟାଣ୍ଡ ପାର୍ଟି ସ୍ଥାନ ମାଡି ବସିଲାଣି । କେଉଁଠି କେଉଁଠି ପୁରୁଣା ଚଳଣି ସବୁ ରହିଛି ଭିତର ଗ୍ରାମାଞ୍ଚଳରେ, ଯେଉଁଠି ଏବେ ବି ଦଶହରା, ପୁନିଆ, ଦୋଳ ଏବଂ ଅନ୍ୟାନ୍ୟ ଉତ୍ସବମାନଙ୍କରେ ଢୋଲର ପ୍ରଚଣ୍ଡ ତାଳ ସହିତ ଲୋକେ ଆନନ୍ଦ ମତୁଆଲା ହୋଇପଡୁଛନ୍ତି । ଦଶହରା ଓ ରଜ ଉତ୍ସବରେ କିତିକିତି ଓ ବାଗୁଡି ଖେଳର ପ୍ରତିଦ୍ବନ୍ଦ୍ବିତା ସମୟରେ ଢୋଲ, ଖେଳାଳିଙ୍କୁ ଅଧିକ ଶକ୍ତି ଓ ଉନ୍ମାଦନା ଯୋଗାଉଥିଲା । ଏବେ ବାଗୁଡି ଖେଳ 'କବାଡି' ନାମ ଧାରଣ କରି ସରକାରୀ ସ୍ୱୀକୃତି ପାଇଲେ ବି ତାହା ସହିତ ଢୋଲର ସମତାଳ ପାଇଁ ସାଂସ୍କୃତିକ କି କ୍ରୀଡା ବିଭାଗ କୌଣସି ପଦକ୍ଷେପ ନେଇନାହାନ୍ତି । ପୁଣି ଗାଁରେ ଲାଠିଖେଳ, ଖଣ୍ଡାଖେଳ, ମୁଦ୍‌ଗର ଖେଳ, ଛାତିରେ ପଥର ରଖିବା କିମ୍ବା ଶଗଡ ଗାଡି ଇତ୍ୟାଦି ଚଢାଇବା ବୀର ଖେଳ ପ୍ରଦର୍ଶନ ବେଳେ ଢୋଲର ନିଶ୍ଚିତ ଆବଶ୍ୟକତା ରହୁଥିଲା । ଏବେ ସେ ସବୁ ବୀର ଖେଳ କମି ଆସିଲାଣି । ତେଣୁ ଲାଠି ଓ ବନାଟି ସହିତ ଢୋଲର ସଂପର୍କ ଦୂରେଇ ଆସିଲାଣି । ଓଡିଶାର ଗ୍ରାମାଞ୍ଚଳରେ ବୀରଭୂମି ଓ ବୀରଖେଳ ଯେଉଁଠି ଏବେ ମଧ୍ୟ ରହିଛି, ସେଠାରେ ଢୋଲର ମର୍ଯ୍ୟାଦା ଏବେବି ଅକ୍ଷୁର୍ଣ୍ଣ ରହିଛି । ଗାଁର ନିମ୍ନ ମଧ୍ୟବିତ୍ତ ଓ ନିମ୍ନ ଶ୍ରେଣୀର ବିବାହ ଶୋଭାଯାତ୍ରାରେ ଢୋଲର ବ୍ୟବହାର ରହିଛି । ଆଉ ଗୋଟିଏ ଗୋଟିଏ ସ୍ଥାନରେ ଏବେ ବି ଢୋଲବାଦ୍ୟ ସହିତ ରାଜନୈତିକ ନେତାମାନଙ୍କୁ ସଭାସମିତି ପୂର୍ବରୁ ପାଛୋଟି ନେବାର ପ୍ରଚଳନ ବନ୍ଦ ହୋଇନାହିଁ । ତେଣୁ ଢୋଲର ମାହାତ୍ମ୍ୟ ପୂରା ଲୋପ ହୋଇନାହିଁ । କିନ୍ତୁ ଏହି ଅପରିହାର୍ଯ୍ୟ ଜିନିଷଟିକୁ ହୁଏତ ଶେଷରେ କେବଳ ଓଡିଶାର ମନ୍ଦିର ଗାତ୍ରରେ ମାତ୍ର ଦେଖିବାକୁ ମିଳିବ ପରପୁରୁଷମାନଙ୍କ ପାଇଁ । କାରଣ ଏହା କ୍ଷିପ୍ର ଗତିରେ ମୃତ୍ୟୁ ଆଡକୁ ଧାଉଁଛି । ତାହା ରକ୍ଷା କରିବାକୁ କ'ଣ କରାଯାଇପାରେ ତାହା ସମସ୍ତେ ଭାବିବା ଉଚିତ ।

କାଳକ୍ରମେ ଢୋଲ ଶାରୀରିକ ଦୃଷ୍ଟିରୁ ମରିଯାଉଥିଲେ ମଧ୍ୟ ଜଗତରେ ଏବେ ବେଶ ଭାବ ଆସ୍ଥାନ

ମାଡିବସିଲାଣି । ଢୋଲର ଭାବାର୍ଥ ଏବେ ଜନଜୀବନର ଶୀର୍ଷ ସ୍ଥାନରେ ପହଞ୍ଚି ସାରିଲାଣି । 'ଢୋଲପିଟା' କାମ ଏବେ ସବୁ କ୍ଷେତ୍ରରେ ଆଦରଣୀୟ ସାମଗ୍ରୀ ହୋଇଗଲାଣି । ଥରେଓଡିଶାର ଖ୍ୟାତନାମା ଆଇନଜୀବୀ ଓ ପୂର୍ବତନ ଆଡଭୋକେଟ ଜେନେରାଲ ଗୋବିନ୍ଦ ଦାସ ତାଙ୍କର ଲିଖିତ ଏକ ପୁସ୍ତକ ଉନ୍ମୋଚନ ଉତ୍ସବ ନିଜ ତରଫରୁ ପାଳନ କରିଥିଲେ । ସେ ତାଙ୍କର ସୀମିତ ବନ୍ଧୁବଳୟ ମଧ୍ୟରେ କେତେକଙ୍କୁ ନିମନ୍ତ୍ରଣ କରିଥିଲେ । ମୋର ଯାହା ମନେ ପଡୁଛି ଭଲ ଜଳଖିଆ(ଯାହାକୁ ଏବେ High Tea ବୋଲି ବଡବଡିଆମାନେ ନାମକରଣ କରିଛନ୍ତି) ଖାଇବାକୁ ଦେଇ ପୁସ୍ତକଟିର ଉନ୍ମୋଚନ ଏକ ମନୋଜ୍ଞ ପରିବେଶରେ କରାଯାଇଥିଲା । ଗୋବିନ୍ଦ ବାବୁ ତାଙ୍କ ନିମନ୍ତ୍ରଣ ପତ୍ରରେ ''ନିଜ ଢୋଲ ନିଜେ ପିଟ'' ବୋଲି ଉଲ୍ଲେଖ କରି ନିମନ୍ତ୍ରିତମାନଙ୍କୁ ଏକ ହାସ୍ୟୋଦ୍ଦୀପକ ଅନୁଭୂତି ଦେଇଥିଲେ । ଗୋବିନ୍ଦ ଦାସ ମାତ୍ର ଅଳ୍ପ କେତୋଟି ଉପନ୍ୟାସ ଲେଖିଛନ୍ତି । କିନ୍ତୁ ପ୍ରତ୍ୟେକଟି ଓଡିଆ ସାହିତ୍ୟରେ ଏକ ନୂତନ ଆଙ୍ଗିକ ସୃଷ୍ଟି କରିଛି ବୋଲି ମନେହୁଏ । ତଥାପି ସେ ସ୍ୱୀକାର କରିଥିଲେ ନିଜେ ନିଜକୁ ପ୍ରମୋଟ(Promote) ନ କଲେ ଅନ୍ୟ କେହି ଆଜିକାଲି ପ୍ରତିଭାପୂଜା ପାଇଁ ଆଗ୍ରହୀ ନୁହନ୍ତି । ତାହାର କାରଣ ଏବେ ପ୍ରତି କ୍ଷେତ୍ରରେ ପ୍ରତ୍ୟେକ ବୋଧହୁଏ ଭାବୁଛନ୍ତି ସେ ନିଜେ ଏକ ପ୍ରତିଭା । ଏତେ 'ପ୍ରତିଭା' ଚାରିଆଡେ ସୃଷ୍ଟି ହୋଇଗଲାଣି ଯେ ପ୍ରତିଭାହୀନ ଲୋକଙ୍କ ଆଉ ଦେଖାନାହିଁ । ସେଥିପାଇଁ ପ୍ରତିଭାପୂଜା ପାଇଁ '' ଆପଣା ଢୋଲ ଆପେ ପିଟ'' ନ୍ୟାୟରେ ଲୋକେ 'ସମ୍ମାନ', 'ପୁରସ୍କାର', 'ଆୱାର୍ଡ' ଇତ୍ୟାଦି ପାଇଁ ଯୋଗାଡ କରୁଛନ୍ତି । ଏଥିପାଇଁ ବିଭିନ୍ନ 'ଟେକ୍‌ନୋଲୋଜି'ର ପ୍ରୟୋଗ ହୋଇଛି । ଆଇ.ଏ.ଏସ. କବି ଲେଖକଙ୍କ ପାଇଁ ଏହା ବିଶେଷ ସମସ୍ୟା ନୁହେଁ । ସେମାନେ ବିଭିନ୍ନ ଅନୁକମ୍ପା କିମ୍ବା ଫେଭର(Favour) ଦେଇ କିମ୍ବା ଦେଖାଇ ବିଭିନ୍ନ ଲୋକଙ୍କୁ ଅନୁଗୃହୀତ କିମ୍ବା ଉପକୃତ କରାଇପାରିବେ । ଅନେକ ଲୋକ ଏପରି ଅନୁଗ୍ରହ ହାସଲ କରିବା ଲାଗି ମଧ୍ୟ ସେମାନଙ୍କର 'ପ୍ରତିଭାପୂଜା' ପାଇଁ ଯୋଗାଡ କରିଦେଉଛନ୍ତି । ଅନେକ ଓଡିଆ ଲେଖକ ସେମାନଙ୍କର ଇଂରାଜୀରେ ଲିଖିତ କିମ୍ବା ଅନୁଦିତ ପୁସ୍ତକ ଦିଲ୍ଲୀର ନାମଜାଦା ପ୍ରକାଶନ ସଂସ୍ଥାମାନଙ୍କୁ ପୂରା ପ୍ରକାଶନ ଖର୍ଚ୍ଚ ଯୋଗାଇ ଦେଇ ପ୍ରକାଶ କରାଇ ନେଉଛନ୍ତି । ସେ ବହିସବୁ ଓଡିଶାରେ ସରକାରୀ ଓ ବେସରକାରୀ ପୁସ୍ତକ ପ୍ରକାଶନ-ବିକ୍ରେତା ସଂସ୍ଥା ମାଧ୍ୟମରେ ବିକ୍ରି କରାଇବାରେ ମଧ୍ୟ ସଫଳ ହେଉଛନ୍ତି । ପ୍ରକାଶନ ପାଇଁ ଆବଶ୍ୟକ ଅର୍ଥ କେନ୍ଦ୍ରୀୟ ସଂସ୍ଥାମାନଙ୍କ ଠାରୁ ଆଣିବାରେ ଏହି ପ୍ରକାରର ଲେଖକଙ୍କ ପାଇଁ ଅସୁବିଧା ହେଉନାହିଁ । ନିଜକୁ ସମ୍ବର୍ଦ୍ଧିତ କରିବା ପାଇଁ ଅନେକ ପ୍ରଭାବଶାଳୀ ନିଜର 'ଢୋଲପିଟା'ସ୍ତାବକ ମାନଙ୍କୁ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେଇ ଆପଣାର 'ଜୟନ୍ତୀ ଉତ୍ସବ' ବଡ ଧୁମଧାମରେ ପାଳନ କରାଉଛନ୍ତି । ଏହି ପ୍ରକାର ଉତ୍ସବକୁ ଉପହାସ କରିବା ପାଇଁ ଅନେକ ବର୍ଷ ତଳେ କଟକର ଶ୍ରୀରାମଚନ୍ଦ୍ର ଭବନ ଠାରେ ସ୍ୱର୍ଗତଃ କବି ଲେଖକ ମୁରାରୀମୋହନ ଜେନା, ଅଗ୍ନିବର୍ଷୀ କବି ରବି ସିଂହ, ସାମ୍ବାଦିକ ନଗେନ ବେଉରିଆ ଓ ସାହିତ୍ୟିକ ରବି ମହାପାତ୍ର ଏକ 'ଆତ୍ମସମ୍ବର୍ଦ୍ଧନା' ଉତ୍ସବର ଆୟୋଜନ କରି ଅନେକ ସାହିତ୍ୟିକ ଓ ଆଗ୍ରହୀ ପାଠକମାନଙ୍କୁ ନିମନ୍ତ୍ରଣ କରିଥିଲେ ।

ମୃତ୍ୟୁପରେ କେହି କାହେଁ ତାଙ୍କ କଥା ମନେ ପକାଇବେ ନାହିଁ(ଠିକ୍) ବିଚାର କରି ଅର୍ଥ ସଂଗ୍ରହ କରି

ନିଜ ନାମରେ 'ଫାଉଣ୍ଡେସନ' ସୃଷ୍ଟି କରି ବକ୍ତୃତାମାଳାର ଆୟୋଜନ କରୁଛନ୍ତି । ଯେଉଁ ମହାମାନବମାନେ ଓଡିଶାର ରାଜନୈତିକ, ଭୌଗୋଳିକ, ସାଂସ୍କୃତିକ ଓ ସାହିତ୍ୟ ଜଗତକୁ ଅତୀତରେ ସମୃଦ୍ଧ କରିଯାଇଛନ୍ତି, ସେମାନଙ୍କର ସ୍ମୃତିରକ୍ଷା ପାଇଁ ସାମାଜିକ ଜୀବନରେ କିଏ ତାହା କରୁଛି ! ଆମର ପ୍ରତିଭାଶାଳୀ ଲୋକମାନେ ଭବିଷ୍ୟତରେ ତାଙ୍କୁ କେହି ମନେରଖିବେ କି ନାହିଁ, ସେ ବିଷୟରେ ସଚେତନ କିମ୍ବା ଆଗ୍ରହୀ ନଥିଲେ । ଆଜିର 'ପ୍ରତିଭାଶାଳୀ' ଲୋକେ ନିଜର ପ୍ରତିଭା ପୂଜା ପାଇଁ ଜୀବଦ୍ଦଶାରେ ସଫଳ ଉଦ୍ୟମ ଆରମ୍ଭ କରିଯାଉଛନ୍ତି ଏବଂ ମୃତ୍ୟୁ ପୂର୍ବରୁ ହୁଏତ କୌଣସି ସଂସ୍ଥା ସୃଷ୍ଟି କରିଯିବେ, ଯାହାଫଳରେ ସେମାନେ 'ଅମର' ରହିବାର ଦାୟିତ୍ୱ କିଛି ଢୋଲପିଟା ଲୋକଙ୍କୁ ସେ ଅର୍ପଣ କରିଦେଇଯିବେ । ଓଡିଶାରେ ପୁଣି ଜାତିଆଣ ବିଚାରରେ ମଧ୍ୟ କିଛି ଢୋଲପିଟା ହୁଏ । ପ୍ରତିଭାଦୀପ୍ତ ଲୋକଟି କେଉଁ ଜାତିର,ସେହି ଅନୁସାରେ ପ୍ରତିଭା ପୂଜକମାନେ ବାହାରନ୍ତି । ଅଥଚ 'ଓଡିଆ' ଜାତିର କିଏ କେଉଁ ବାଟରେ ଧ୍ୱଜା ଟେକିଯାଇଛି, ତାହାର ମୂଲ୍ୟାୟନ କରିବାର ଢୋଲ ଧରିବାକୁ ଖୁବ୍ କମ୍ ଲୋକ ବାହାରୁଛନ୍ତି । ଢୋଲ ଭିତରେ ମୂଷା କିନ୍ତୁ ଏବେ ବହୁତ । ଯେକୌଣସି କାମଟିଏ ଓଡିଶାରେ କରିବାକୁ ଗଲେ ପ୍ରଥମେ ଭାବିବାକୁ ହେବ ଯେ, କାହାକୁ ସାଙ୍ଗରେ ନେଇ ସେ କାମଟି କରିବାକୁ ହେବ । କାରଣ ଭଲ କାମଟିଏ ସଚ୍ଚୋଟ ଭାବରେ କରିବାକୁ ଗଲେ ଉପଯୁକ୍ତ ସହଯୋଗୀର ଅଭାବ ନିଶ୍ଚୟ ରହିବ । କିନ୍ତୁ ଅମୁକ ଲୋକଟି କାହିଁକି ଏହି କାମଟି କରି ନାମ ଅର୍ଜନ କରିବ, ତାହା ନ କରାଇଦେବା ପାଇଁ ଅନେକ ଲୋକ ବାହାରିବେ । ସେ କାମଟି ସ୍କୁଲ ହେଉ କି କଲେଜ ହେଉ, ମନ୍ଦିର ହେଉ କି ଭଲ ଯାତ୍ରାପାର୍ଟି ହେଉ, ବାଧା ଅନେକ । ପୁଣି ଯେଉଁମାନଙ୍କୁ ନେଇ ଆରମ୍ଭ କରିବ, ଯଦି ସଫଳତା ମିଳିଲା, ତେବେ ପ୍ରଥମେ ଢୋଲ ଭିତରୁ 'ମୂଷା' ବାହାରିବେ ପ୍ରତିଷ୍ଠାତାଙ୍କୁ ସେଠାରୁ ହଟାଇବା ପାଇଁ । ମୂଷାଟିଏ ଢୋଲ ଭିତରେ ପଶି ଚମଡାକୁ କାଟିଦେଲେ ଆଉ ସେଥିରୁ କାର୍ଯ୍ୟ ବାହାରିବାର କୌଣସି ସୁଯୋଗ ନାହିଁ । ଏବେ ଢୋଲ ଭିତରେ ମୂଷା ପ୍ରତ୍ୟେକ କ୍ଷେତ୍ରରେ । ସବୁ ଦଳରେ ଏବେ ଭିନ୍ନମତାବଲମ୍ବୀ ଯାହାକୁ 'ଡିସିଡେଣ୍ଟ' କୁହାଯାଉଛି । ଢୋଲର ଅନେକ ଆହୁରି କାହାଣୀ ଅଛି । ଆଜି ଏତିକି ଢୋଲ ମାହାତ୍ମ୍ୟ ।



# ଚିକିତ୍ସା

ଚିକିତ୍ସା ଶବ୍ଦର ଅଭିଧାନ ଅର୍ଥ 'ରୋଗର ପ୍ରତିବିଧାନ' ହୋଇପାରେ । କିନ୍ତୁ ଚିକିତ୍ସା ସହିତ ଅନେକ ଲୋକ, ଅନେକ ବିଷୟ, ଅନେକ ଅର୍ଥ ଇତ୍ୟାଦିର ସଂପର୍କ ରହିଛି । ଚିକିତ୍ସା ଜଣେ ବ୍ୟକ୍ତିର ଅସୁସ୍ଥତା, ଅସୁସ୍ଥତା ପାଇଁ ଡାକ୍ତର, ଡାକ୍ତରଙ୍କର ରୋଗ ନିର୍ଣ୍ଣୟ, ରୋଗ ନିର୍ଣ୍ଣୟ ପାଇଁ ପରୀକ୍ଷା, ପରୀକ୍ଷାର ବିଭିନ୍ନ ପ୍ରଣାଳୀ, ଔଷଧ, ପଥ୍ୟ, ସେବା, ଆବଶ୍ୟକ ହେଲେ ହାସପାତାଳ ଏବଂ ସେଠାରେ ଇଂଜେକ୍ସନ, ନର୍ସ, ବେହେରା, ସେବା, ସୁଶ୍ରୁଷା ଆଦି ବହୁ କଥା ସହିତ ସଂପର୍କିତ । ରୋଗଗ୍ରସ୍ତ ହେଲେ ଏବଂ ସାମାନ୍ୟ ଗୁରୁତର ଅସୁସ୍ଥତା ହେବାର ଖବର ମିଳିଲେ ବନ୍ଧୁବାନ୍ଧବ, ଜ୍ଞାତି-କୁଟୁମ୍ବ, ସାମାଜିକ ବନ୍ଧୁ, ଚିହ୍ନା ପରିଚୟ ଘରକୁ କିମ୍ବା ହାସପାତାଳକୁ ଦେଖିବାକୁ ଧାଆଁନ୍ତି । ସଂପର୍କ ଯେତିକି ଘନିଷ୍ଠ ସେହି ଅନୁସାରେ ବାରମ୍ବାର ଯିବାର ବାଧ୍ୟତା ଥାଏ । ଏଥିରେ କେତେକଙ୍କ ପାଇଁ ଆନ୍ତରିକତା ଥାଏ । କିନ୍ତୁ ଅନେକଙ୍କ ପାଇଁ ସାମାଜିକ କର୍ତ୍ତବ୍ୟ କିମ୍ବା ଲୌକିକତା । ଯାହା ବି ହେଉ ରୋଗୀକୁ ଆଶ୍ୱାସନା ହୁଏତ ମିଳେ । କିଏ ଆସିଲେ ସେ କଥା ମନେ ରଖିବାକୁ ପଡ଼େ । ଦେଖିବାକୁ ଯିବା ଅର୍ଥ କିଛି ହାତରେ ନେଇଯିବା କଥା । ବିଶେଷକରି ଫଳ । ଏବେ ହର୍ଲିକ୍ସ ଓ ସେହି ଜାତୀୟ ଜିନିଷ କିଛି ନେବାର ରିଓ୍ୱାଜ ହେଲାଣି । ସେ ଜିନିଷଗୁଡା ଯେତେ ଦର ହେଲାଣି କେବଳ ଅର୍ଥଶ୍ରାଦ୍ଧ । ଅନେକ ସମୟରେ ଏତେ ଫଳ ଓ ହର୍ଲିକ୍ସ ବୋତଲ ଆସି ଗଦା ହୁଏ ଯେ, ତାହା ରୋଗୀ ଘରର ଲୋକେ ଖାଇ ବାଣ୍ଟିବା ସାର ହୁଏ । କେହି କେହି ବୁଦ୍ଧିମାନ ଲୋକ ହର୍ଲିକ୍ସ ଓ ସେହି ଜାତୀୟ ଜିନିଷଗୁଡ଼ିକ ଚିହ୍ନା ଦୋକାନୀକୁ ଦେଇ ସେହି ମୂଲ୍ୟର ଆବଶ୍ୟକ ଜିନିଷ ପ୍ରତିବଦଳରେ ନେଇ ଆସନ୍ତି । ଦେଖିବା ପାଇଁ ଲୋକାରଣ୍ୟ ଅନେକ ସମୟରେ ରୋଗୀ ପାଇଁ ଆଶ୍ୱାସନା ପରିବର୍ତ୍ତେ କ୍ଷତିକାରକ ହୁଏ ।

ଏବେ ପୁଣି ଫେରିବା ଚିକିତ୍ସାକୁ । ଡାକ୍ତର ଆଲୋପାଥ, ହୋମିଓପାଥ କିମ୍ବା କବିରାଜ ହୋଇପାରନ୍ତି । ଗତ ଦେଢ଼ଶହ ବର୍ଷ ମଧ୍ୟରେ ଆମେ କ୍ରମେ କବିରାଜି ଛାଡ଼ି ହୋମିଓପାଥି ଆଡ଼କୁ ମନ ନ ଦେଇ ଆଲୋପାଥି ଆଡ଼କୁ ବହୁତ ବେଶୀ ଢ଼ଳିଛୁ । ବୈଜ୍ଞାନିକ ପଦ୍ଧତି, ପରୀକ୍ଷା, ଆଧୁନିକ ଯନ୍ତ୍ରପାତି, ଗବେଷଣାରୁ ନୂତନ ଔଷଧ ଆଦିର ପ୍ରସ୍ତୁତି ଯୋଗୁଁ ଅନ୍ୟ ଚିକିତ୍ସା ପଦ୍ଧତିକୁ ବହୁ ଆଲୋପାଥିକ ପଛରେ ପକାଇ ଦେଇଛି । ବିଶେଷକରି ଶଲ୍ୟ ଚିକିତ୍ସା ଆଧୁନିକ ଯାନ୍ତ୍ରିକ ସାହାଯ୍ୟ ଓ ସର୍ଜନଙ୍କ କୁଶଳୀ ହାତ ଫଳରେ ଅନେକ କ୍ଷେତ୍ରରେ ରୋଗର ଆଶୁ ଉପଶମରେ ସହାୟକ ହେଉଛି । ଅନେକ ରୋଗରେ ଶଲ୍ୟ ଚିକିତ୍ସାର ସାହାଯ୍ୟ ନ ନେଇ କେବଳ ଔଷଧ ସେବନ ଦ୍ୱାରା ହୋମିଓପ୍ୟାଥି କିମ୍ବା କବିରାଜ ଚିକିତ୍ସାରେ

ଆରୋଗ୍ୟର ଉଜ୍ଜ୍ୱଳ ସମ୍ଭାବନା ଥିଲେ ମଧ୍ୟ ରୋଗୀ ସେଥିରେ ବିଶ୍ୱାସ କିମ୍ବା ସମୟ ଦେଇ ଧୈର୍ଯ୍ୟ ରଖିବାକୁ ପ୍ରସ୍ତୁତ ନୁହେଁ ।

ଅନ୍ୟ ଏକ ଦିଗକୁ ଦୃଷ୍ଟି ଫେରାଇଲେ ସରକାରଙ୍କ ନିଜ ତଥ୍ୟରୁ ଜଣାପଡୁଛି ଯେ, ଭାରତର ଶତକଡ଼ା ୮୭ ଭାଗ ଲୋକଙ୍କର କୌଣସି ପ୍ରକାର ଚିକିତ୍ସା ବ୍ୟବସ୍ଥା ଭିତରକୁ ପହଁଞ୍ଚୁ ନାହିଁ । ଅର୍ଥାତ ଯେତେ ଯାହା ଡାକ୍ତରଖାନା, ଡାକ୍ତର, ଡାକ୍ତରୀରୁ ଜୀବିକା, ନର୍ସିଂହୋମ୍, କ୍ଲିନିକ୍ ଇତ୍ୟାଦି ଚାଲିଛି, ତାହା ଭାରତର ୧୩ ଭାଗ ଲୋକଙ୍କୁ ନେଇ; ୧୩ ଭାଗ ଲୋକଙ୍କ ପାଇଁ । ଏହି ୧୩ ଭାଗଙ୍କ ମଧ୍ୟରେ ଚିକିତ୍ସିତ ହେଉଛନ୍ତି , କୋଟିପତି ଧନିକ ଶ୍ରେଣୀର ଲୋକେ; ମଧ୍ୟବିତ୍ତ ଓ ନିର୍ଧନ ଲୋକେ । ଏମାନଙ୍କ ଛଡ଼ା ଚିକିତ୍ସାର ଛତାତଳେ ଆଶ୍ରୟ ପାଇବାର ହକଦାର ହେବା କିମ୍ବା ସୁଯୋଗ ପାଇବାର ସୁଯୋଗ ଅନ୍ୟମାନଙ୍କ ପାଇଁ ଆସି ନାହିଁ । ଟୁଟକା ଔଷଧ ଯଦି କିଏ ଜାଣିଛି, ତାହା ଉପରେ ଅଧିକାଂଶ ନିର୍ଭର କରନ୍ତି କିମ୍ବା ନିରାଶ୍ରୟ ଭାବରେ ଭଗବାନଙ୍କ ଉପରେ ଛାଡ଼ି ଦିଅନ୍ତି । ମଣିଷର (ପ୍ରତ୍ୟେକ ପ୍ରାଣୀର ଓ ବୃକ୍ଷଲତାର ମଧ୍ୟ) ସ୍ୱାଭାବିକ ସ୍ୱୟଂକ୍ରିୟ ଏକ ବିଚିତ୍ର ଜୀବନୀ ଶକ୍ତି ରହିଛି, ଯାହାଫଳରେ ଶରୀରରେ ରୋଗ ପ୍ରତିରୋଧକାରୀ ଶକ୍ତି ଯେ କୌଣସି ରୋଗର ଜୀବାଣୁ, ଭୂତାଣୁ କିମ୍ବା ଅସ୍ୱାଭାବିକ ପରିସ୍ଥିତିରୁ ଜାତ ରୋଗକୁ କ୍ରମେ ଅନ୍ତର୍ନିହିତ ଲଢ଼େଇ ଫଳରେ ପରାଜିତ କରେ । ଅଧିକାଂଶ ରୋଗ କିଛି ଦିନ ସହ୍ୟକଲା ପରେ ଭଲ ହୋଇଯାଏ । ଅର୍ଥାତ ଶରୀରର ସ୍ୱୟଂକ୍ରିୟ ଚିକିତ୍ସକ ଆରୋଗ୍ୟ ଆଣେ । ତାହା ନହୋଇଥିଲେ କୌଣସି ପ୍ରକାର ଚିକିତ୍ସା ବ୍ୟବସ୍ଥାର ସୁଯୋଗ ନଥିବା ଶତକଡ଼ା ୮୭ ଭାଗ ଲୋକଙ୍କ ମଧ୍ୟରୁ ଅଧିକାଂଶ ରୋଗାକ୍ରାନ୍ତ ହେଲେ ହିଁ ମରି ଯାଆନ୍ତେ ।

ଏଥିରୁ ମନ ବଳାଉଛି ଏକ ଅପ୍ରିୟ ଦିଗକୁ ଯିବା ପାଇଁ । ସରକାରୀ ଚିକିତ୍ସା ବ୍ୟବସ୍ଥା ଭାରତବର୍ଷରେ ଯେଉଁ ଅବସ୍ଥାରେ ଅଛି, ତାହା ନାମକୁମାତ୍ର ମାଗଣା । ହସ୍ପିଟାଲମାନଙ୍କରେ ଶତକଡ଼ା ୨୦ଭାଗ ଡାକ୍ତର ସେମାନଙ୍କର ବୃତ୍ତିରେ ମାନବିକତାକୁ ସାଂଗରେ ରଖି କାମ କରୁଛନ୍ତି । ଏହି ମାତ୍ରାରେ କିଛିଟା କମ ବେଶୀ ଥାଇପାରେ । କିନ୍ତୁ ମୁଖ୍ୟତଃ ସରକାରୀ ଡାକ୍ତର ନିଜର ବୃତ୍ତିର ମାନବିକ, ସାମାଜିକ, ନୀତିଗତ, କର୍ତ୍ତବ୍ୟଗତ, ଆଇନଗତ ଓ ଉଦ୍ଦେଶିତ ଦିଗ ସଂପର୍କରେ ସଚେତନ ନୁହନ୍ତି । ଗରିବ ରୋଗୀଟି ପ୍ରତି ଜଣେ ଡାକ୍ତରର ଐଶ୍ୱରୀକ ଦାୟିତ୍ୱ ସଂପାଦନ କରିବାର ଅଛି, ତାହା ଅଧିକାଂଶ ଡାକ୍ତର ଭାବନ୍ତି ନାହିଁ । ବୃତ୍ତିର ଜୀବିକା ନିର୍ବାହ ଯଦି କେବଳ ଉଦ୍ଦେଶ୍ୟ ହୁଏ, ତେବେ ଯଦି ଏ ଜାବିକା ପାଇଁ କଂସେଇ କାମ କରୁଛି, ତାହା ସହିତ କ'ଣ ଜଣେ ଡାକ୍ତର ପ୍ରତିଯୋଗିତା କରିବ ? କଂସେଇକୁ ତ ଦରମା, ପ୍ରମୋସନ, ଘରୋଇ ଚିକିତ୍ସା ଓ ପେନ୍ସନ୍‌ର ସୁବିଧା ଦିଆଯାଉ ନାହିଁ । ଡାକ୍ତରର (ସେହି ନ୍ୟାୟରେ ନର୍ସ, ବେହେରା ଓ ଟେକ୍‌ନିସିଆନ୍) ଦାୟିତ୍ୱ ପରା ମଣିଷର ଜୀବନ ରକ୍ଷା ଓ ସୁରକ୍ଷା କରିବା । ପୁଣି ଦରମା, ଭତ୍ତା ଆଦିରେ ସ୍ୱାସ୍ଥ୍ୟ ବିଭାଗର ବଜେଟ୍ ସରି ଯାଉଛି । ସେଥିପାଇଁ ଔଷଧ, ତୁଳା ଓ ବ୍ୟାଣ୍ଡେଜ ପାଇଁ ମଧ୍ୟ ବିଶେଷ ବଳକା ରହୁନାହିଁ । ସରକାରୀ ଡାକ୍ତରଖାନାରେ ଡାକ୍ତରମାନେ ଖଟିଆରେ ରୋଗୀକୁ ଚିକିତ୍ସା ଦେବା ପାଇଁ ଅଲଗା ପଇସା ନେବାର ବିଧି ଏବେ ଅଲିଖିତ ନିୟମ ହୋଇଗଲାଣି । ହସ୍ପିଟାଲ ଔଷଧ

ଡାକ୍ତରୀ ଔଷଧ ଦୋକନକୁ ଯାଏ ବିକ୍ରି ହେବା ପାଇଁ । ସାମ୍ପଲଗୁଡ଼ିକ ଅନେକ କ୍ଷେତ୍ରରେ ମଧ୍ୟ ଦୋକାନକୁ ଯାଏ । ନର୍ସମାନେ ରୋଗୀର ଆଟେଣ୍ଡାଣ୍ଟ ହେବା ପରିବର୍ତ୍ତେ ଏବେ ରୁଟିନ୍ କାମ ପାଇଁ ପାରିତୋଷିକ ଆଶା କଲେଣି । ବେହେରା କିମ୍ବା ସୁଇପରଙ୍କ ଅତ୍ୟାଚାର ସୀମା ଟପିଗଲାଣି । ସରକାରୀ ହସ୍ପିଟାଲରେ ମଧ୍ୟ ରୋଗୀକୁ ବିଶେଷ କରି ଗରିବ ରୋଗୀକୁ ନାମଜାଦା ରୋଗୀଠାରୁ ଅଧିକ ଖର୍ଚ୍ଚ କରିବାକୁ ପଡୁଛି । ନଚେତ ମରିବା କମ୍ବା ଡିସ୍‌ଚାର୍ଜ ହେବା ଭିତରେ ଗୋଟାଏକୁ ବାଛିବାକୁ ହେବ ।

ନୂଆ ଅର୍ଥନୈତିକ ସଂସ୍କାର ଫଳରେ ଏବେ ରୋଗୀକୁ ନିଜର ଚିକିତ୍ସା ବାବଦରେ ସମସ୍ତ ଖର୍ଚ୍ଚ କରିବାକୁ ପଡ଼ିବ । ଚିକିତ୍ସା କ୍ରମେ ଡାଲିଚାଉଳ ଦୋକାନ କିମ୍ବା ମନୋହରୀ ଦୋକାନ ପରି ବ୍ୟବସାୟରେ ପରିଣତ ହେବାକୁ ଯାଉଛି । କିନ୍ତୁ ଯେଉଁମାନଙ୍କର ଆୟର କୌଣସି ବ୍ୟବସ୍ଥା ନାହିଁ କିମ୍ବା ସରକାରୀ ଚାକିରିଆ କିମ୍ବା ବଡ଼ ବେସରକାରୀ କମ୍ପାନୀ ଚାକିରିଆଙ୍କ ପରି ଚିକିତ୍ସା ସୁବିଧା କିମ୍ବା ରି-ଇମ୍ବର୍ସମେଣ୍ଟର ବ୍ୟବସ୍ଥା ନାହିଁ ସେମାନଙ୍କର ଟିକସଦାତା ଓ ନାଗରିକ ଭାବରେ ସୁବିଧା ସୁଯୋଗ ଚିକିତ୍ସା କ୍ଷେତ୍ରରେ କ'ଣ ?





## ପ୍ରଦ୍ୟୁମ୍ନ ବଳ

ଜନ୍ମ: ୮ ନଭେମ୍ବର ୧୯୩୨

ମୃତ୍ୟୁ: ୨୧ ଡିସେମ୍ବର ୧୯୯୯

ଓଡ଼ିଶାର ରାଜନୀତି, ସାମ୍ବାଦିକତା ଓ ସମାଜସେବା କ୍ଷେତ୍ରରେ ଏକ ଅତୁଳନୀୟ, ଅଦ୍ୱିତୀୟ ବ୍ୟକ୍ତିତ୍ୱ । ଏଇ ସମସ୍ତ କ୍ଷେତ୍ରରେ ତାଙ୍କର ସାକାରାତ୍ମକ ସ୍ପର୍ଶ ଆଗାମୀ ପିଢ଼ିକୁ ଯେ ନିଶ୍ଚିତ ରୂପେ ପ୍ରେରଣା ଯୋଗାଇବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବିଶେଷଭାବେ ରାଜ୍ୟ ରାଜନୀତିର ଷାଠିଏ ଓ ସତୁରୀ ଦଶକରେ ଯୁବ ଆନ୍ଦୋଳନକୁ ତାଙ୍କର ଅବଦାନ, ସେଥିରେ ତାଙ୍କର ଭୂମିକା ଓ ଅଙ୍ଗୀକାରବଦ୍ଧତା ରାଜ୍ୟ ରାଜନୀତିକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ସମାଜସେବା କାର୍ଯ୍ୟରେ କୈଶୋରରୁ ହିଁ ଅନୁପ୍ରାଣିତ ହୋଇଥିଲେ ପ୍ରଦ୍ୟୁମ୍ନ । କିନ୍ତୁ ବ୍ୟାପକ ଭାବେ ବୃହତ୍ତର ସମାଜସେବା ପାଇଁ ରାଜନୀତିରେ ଯୋଗଦେବାକୁ ମନସ୍ଥ କରି ୧୯୬୩ରେ କଂଗ୍ରେସ ଦଳରେ ଯୋଗ ଦେଲେ । ୧୯୬୭ ମସିହାରେ ରାଜ୍ୟ ଯୁବ କଂଗ୍ରେସ ସଭାପତି ମନୋନୀତ ହୋଇ ରାଜ୍ୟ କଂଗ୍ରେସ ରାଜନୀତିରେ ଚହଳ ପକାଇଦେଲେ ଏବଂ ୧୯୮୦ ମସିହା ପର୍ଯ୍ୟନ୍ତ ସେ ସକ୍ରିୟ ରାଜନୀତିରେ ଥିଲେ । କିନ୍ତୁ ରାଜନୀତିର ମାରପେଞ୍ଚରେ ବୀତସ୍ପୃହ ହୋଇ ସେଥିରୁ ଦୂରେଇ ଯାଇ ସାମ୍ବାଦିକତା ଜୀବନ ଆରମ୍ଭ କଲେ ଓ ଦୈନିକ 'ପ୍ରଗତିବାଦୀ'ରେ ବଳିଷ୍ଠ, ନିର୍ଭୀକ ଲେଖନୀ ଚାଳନା ଜରିଆରେ ଆରମ୍ଭ କଲେ ସମାଜର ସମସ୍ତ ଅନ୍ୟାୟ, ଅନୀତି ବିରୁଦ୍ଧରେ ଯୁଦ୍ଧ ଯାତ୍ରା ।

ପ୍ରବଞ୍ଚନା ଓ ଛଳନାରେ ସେ ବିଶ୍ୱାସ କରୁନଥିଲେ । ଆମ ସମାଜର ମନୁବାଦୀ ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସମସ୍ତ ବଞ୍ଚିତ, ନିଷ୍ପେଷିତମାନଙ୍କୁ ନ୍ୟାୟ ଦେବା ପାଇଁ ଚିର ସଂଗ୍ରାମରେ ସେ ବିଶ୍ୱାସ ରଖୁଥିଲେ ଏବଂ ଜୀବନର ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ମଧ୍ୟ ସେଥିରୁ ସେ କ୍ଷାନ୍ତ ହୋଇନଥିଲେ ।

ସେ ଏକ ପ୍ରବାଦପୁରୁଷ । ସେ ଏକ ବିଚାରଧାରା, ଯାହାର ମୃତ୍ୟୁ ନାହିଁ ।